ଏକମାତ୍ର ମହୋପକାରୀ

# ମହାଭ୍ରମ ଓ ଆତ୍ମୋନ୍ନତି

ଜଗତେ ସ.ସ୍ତ କାର୍ଯ୍ୟ ଛୁଟୁ ମୋହମୟ ।
ଦେହୀ ଉପଯୁକ୍ତ-ଦେହ ଦେହୀ-କାର୍ଯ୍ୟ ନିଶ୍ଚୟ ।
ଜଗତେ ଯା ହେଉଅଛି ପ୍ରାପ୍ୟ ସବୁ ଅଟେ ସତ୍ୟ ।
କାଷ୍ଠୀବାଟନି ବୃଥା ଭ୍ରମି ନୁହ କଳ୍ପିବାଲ ।



ଶ୍ରୀ ଚିନ୍ତାମଣି ପ୍ରହରାଜ

ମୁଦ୍ରାକର-ପଥିଗାମୀଙ୍କଦ୍ୱାରା ଲିଖିତ ଓ ପ୍ରକାଶିତ

ପ୍ରଥମ ସଂସ୍କରଣ—୧୯୪୦

# ଭୂମିକା

କୃଷିକର୍ମାଦି ଓ ଗୋ-ପାଳନାଦି ବ୍ୟତୀତ ଜଗତରେ ଯେ ସମସ୍ତ କାର୍ଯ୍ୟ ହେଉଅଛି ତାହା କେବଳ ଟଙ୍କା ସକାଶେ । ଶୁଣାଅଛି ଜଗତରେ ସର୍ବାଧିକ ଧନଶାଳୀ-ଦେଶ ଆମେରିକାବାସୀ ଜଣେ ଅତ୍ୟଧିକ ଧନୀ ନିଜର ଧନ-ଭଣ୍ଡାରରେ ପଶି ସର୍ବଶେଷ ସ୍ୱୟଂକ୍ରିୟ ଯନ୍ତ୍ର-କଳଟି ହେତୁ ବାହାର ନ ପାରି, କ୍ଷୁତ୍‌ପିପାସାତୁର ହୋଇ ମୃତ୍ୟୁ ପୂର୍ବରୁ ଲେଖିଥିଲେ,—ବର୍ତ୍ତମାନ କେହି ମୋତେ ଖଣ୍ଡେ ରୁଟି ଓ ମିଲାଏ ପାଣି ଦେଲେ ମୋ ସମସ୍ତ ସମ୍ପତ୍ତିରୁ ଅର୍ଦ୍ଧେ ତାଙ୍କୁ ଦିଅନ୍ତି । ଅତଃ ସ୍ୱର୍ଣ୍ଣ-ରୌପ୍ୟ ପ୍ରଭୃତି ଧାତୁଦ୍ରବ୍ୟରେ ନଶ୍ୱର ଦେହୋପଯୋଗୀ ଶ୍ରେୟ ଥିଲେହେଁ ଖାଦ୍ୟାନ୍ନଯୁକ୍ତ ସର୍ବ ପ୍ରଧାନ । ଅନ୍ୟାନ୍ୟ ବସ୍ତୁ ଆନୁଷଙ୍ଗିକ, ...ଯ ବା ବ୍ୟର୍ଥ । କେବଳ ଟଙ୍କା ସୁନା ପୂର୍ଣ୍ଣ ଭଣ୍ଡାର ରହିଲେ କେହି ...ପାରିବେ କି ? ତାହା ବିନିମୟରେ ଯେ ଖାଦ୍ୟ ଆସେ ତାହା ପ୍ରଧାନ । ରାଜଚିହ୍ନଯୁକ୍ତ ଥିବା ଖଣ୍ଡେ ତୁଚ୍ଛ କାଗଜ ବା ନୋଟ୍‌ରେ ସେ ଶକ୍ତି ଅଛି । ସର୍ବପ୍ରଧାନ ଖାଦ୍ୟ ଦେହ-ଯନ୍ତ୍ରରେ ଆଉ ହିନକୁ ଅତି ଆବର୍ଜନା ମଳାଦିରେ ପରିଣତ; ଦୂର୍ ଦୂର୍ ଦୂରେ ନିକାଲ୍ । ସାରଭାଗ କ୍ରମଶଃ ରସ-ରକ୍ତ-ମାଂସ-ମେଦ-ଅସ୍ଥି-ମଜ୍ଜା-ରେତରେ ପରିଣତ । ଦେହର ସର୍ବସାର ରେତ ଅତି ଉତ୍ସାହିସହି ବ୍ୟର୍ଥରେ ନିକାଲ୍ । ସର୍ବ ସନ୍ଧାଧନ-ସ୍ନେହ ମହୋପକାରୀଙ୍କ ଯେ ଦେହରେ ଯେ ଥିବାରୁ ଅତି ଜୀର୍ଣ୍ଣଶୀର୍ଣ୍ଣ ହୋଇ ମଧ ସେ ଦେହ ମିଳାଏ ନାହିଁ; କିନ୍ତୁ ସେ ବାହାରି-ଗଲେ ହୃଷ୍ଟପୁଷ୍ଟ ଥାଇ ମଧ ତତ୍‌କ୍ଷଣାତ୍ ମିଳାଇଯାଏ,—ସେ ଦେହ-ଦ୍ୱାରା ସମ୍ପଯୁକ୍ତ କାର୍ଯ୍ୟ ଏବଂ ଦେହୀର ବା ଜୀବାତ୍ମାର କିଛି ମାତ୍ର କାର୍ଯ୍ୟ ନ ହେବା ଭ୍ରମ ନୁହେଁ କି ? ଏହି ଉଭୟ ବା ଦେହ ଓ ଦେହୀର ନିର୍ଯ୍ୟାସ ଏବଂ ମହତ୍ ଶ୍ରେୟ ବର୍ଣ୍ଣିତ ହେଉଅଛି ଏହି **"ମହାଭ୍ରମ ଓ ଆତ୍ମୋନ୍ନତି"** ପୁସ୍ତକରେ ।

ବର୍ତ୍ତମାନ କାଳଗତିର ପ୍ରବଳତାରେ କି ରାଜନୀତି, କି ସମାଜ-ପ୍ରଭୃତି ଶୃଙ୍ଖଳା କେବଳ ନଶ୍ୱର କ୍ଲେଦମୟ ସ୍ଥୂଳ-ଶରୀର ସକାଶେ ଥିବାରୁ ଅଧିକାଂଶ ଲୋକେ ମହାମାୟାର ମୋହମ ତ କୁହୁକରେ

ଏପରି ଛନ୍ଦ ହୋଇ ଆବଦ୍ଧ ହୋଇଛନ୍ତି ଯେ, ଲୌକିକ ବା ରାଜନୀତି ପ୍ରଭାବରୁ ଅନନ୍ତକାଳରୁ ଅନନ୍ତକାଳସ୍ଥାୟୀ ଇହ-ପର ଶାନ୍ତିପ୍ରଦ ଅତି ଉପାଦେୟ ସଦୁପଦେଶାତ୍ମକ ଭାରତୀୟ ସନାତନ ଧର୍ମଶାସ୍ତ୍ର ତତ୍ତ୍ୱ ଏବଂ ତଦୁକ୍ତ କ୍ରିୟାକଳାପର ବିରୋଧୀ ହୋଇ ଉଠିଛନ୍ତି । ଏହି ପୁସ୍ତକଲିଖିତ ଭ୍ରମସବୁକୁ ବୁଝିପାରିଲେହେଁ ସଦ୍‌ବିବେକଦ୍ୱାରା ସତ୍‌ପଥାବଲମ୍ବନ କରିବା ସମ୍ଭବ ନୁହେ, କିନ୍ତୁ ଅସାଧ୍ୟ ନୁହେ । ସମସ୍ତେ ନିରୁତ୍ସାହ ହେବାରୁ ସତ୍ସାହସଶୂନ୍ୟ ଏବଂ ଅବିଦ୍ୟାବିଦ୍ଧ । ଏହି ପୁସ୍ତକ ନିର୍ଦ୍ଦିଷ୍ଟ ଭ୍ରମ ନିର୍ଣ୍ଣୟରେ ଅକ୍ଷମ ହେଲେ ସବିଶେଷ ବିଶିଷ୍ଟ ବିଜ୍ଞ ବ୍ୟକ୍ତିଙ୍କ ସହ ଆଲୋଚନା କରି ତାହା ନିରୂପଣ କରିବା ସମୁଚିତ ।

ଯେପରି ବାଳକ-ବାଳିକାମାନେ ଧୂଳିରେ ନାନାପ୍ରକାର ଚିତ୍ର-ବିଚିତ୍ର ଘର କରି ସାଂସାରିକ ପ୍ରଚଳିତ-କ୍ରିୟାକଳାପ ଓ ସମ୍ବନ୍ଧ-କଳ୍ପନାଦିରେ ମୋହିତ ହୋଇ ମନ-ବଚନ-କର୍ତ୍ତବ୍ୟସହ କ୍ରୀଡ଼ା କରୁଥାନ୍ତି, କେହି ବିଘ୍ନ କଲେ ରାଗିଯାଇ ବଳ ପ୍ରୟୋଗ କରିଥାଆନ୍ତି ଅର୍ଥାତ୍ କାନ୍ଦନ୍ତି, "ବାଳାନାଂ ରୋଦନଂ ବଳଂ"; କିନ୍ତୁ ବୟସ୍କ ଲୋକମାନେ କଣ ଭାବନ୍ତି ? ଆଉ ନିଶା ବା ବିଷକୁ ପ୍ରଥମତଃ ସାମାନ୍ୟାଂଶରେ ସେବନ କରୁ କରୁ କ୍ରମେ ଅଭ୍ୟାସ ବଶରେ ଲୋକେ ପ୍ରତ୍ୟହ ଯେତେ ଖାଉଛନ୍ତି, ଅନ୍ୟ ବ୍ୟକ୍ତି ତେତେ ଖାଇ-ଦେଲେ ତତ୍‌କ୍ଷଣାତ୍ ମରିଯିବ; କିନ୍ତୁ ନିଶା ବା ବିଷାଭ୍ୟାସୀ ତାହା ନ ଖାଇଲେ ମରିଯିବ । ସେହିପରି ଦୁର୍ବିଷହ-ବିଷୋପମ ବୈଷୟିକ-କାର୍ଯ୍ୟରେ ଆମ୍ଭେମାନେ ଏପରି ମୋହିତ ହୋଇଥାଉଁ ଯେ, ତହିଁରୁ ବିରତ ହୋଇ ସତ୍ସାହସଦ୍ୱାରା ସତ୍ପଥରେ ଚାଲିବା ଅସମ୍ଭବ ହେଉଛି । ସାଂସାରିକ ସମସ୍ତ ଲୌକିକ କାର୍ଯ୍ୟ ସାଧନ କରି ମଧ୍ୟ ସତ୍ପଥରେ ସ୍ୱଚ୍ଛନ୍ଦରେ ଚାଲି ହେବ । କେବଳ ବିବେକବଳ ଓ ସତ୍ସାହସ ଦରକାର । ପ୍ରତିକାର ଯଥା,— ନିଶା ଓ ବିଷାଭ୍ୟାସୀ ବୁଦ୍ଧିମାନ୍ ବ୍ୟକ୍ତି ନିଶା ଓ ବିଷାଭ୍ୟାସ ବୃଦ୍ଧି ଅନୁପାତରେ କ୍ରମଶଃ କମାଇ କରି ବିଲ୍‌କୁଲ୍ ଛାଡ଼ି ଦେଇପାରିବା ପରି ଆଉ ସାମାନ୍ୟାଭ୍ୟାସୀ ସାହସ ପୂର୍ବକ ହଠାତ୍ ଛାଡ଼ି ଦେଇ କିଛି ସହି ବା ସମୁଚିତ ପ୍ରତିକ୍ରିୟାଦ୍ୱାରା ନିରୁଜ ଓ ପ୍ରକୃତ ମନୁଷ୍ୟ ପଦବାଚ୍ୟ ହୋଇଥାଏ । ଏହା ମଧ୍ୟ ଦେଖା ଅଛି ।

ବହୁକାଳ ପୂର୍ବେ ଜଣେ ସିଦ୍ଧ-ପୁରୁଷଙ୍କ ସଦାଳାପରେ କାଳର ବିପରୀତ ଗତି ଓ ସନାତନ ଧର୍ମାନ୍ତର୍ଗତ ସାମ୍ପ୍ରଦାୟିକ ମତ ନେଇ ପ୍ରଶ୍ନ କରନ୍ତେ—ସେ କହିଲେ, ବର୍ତ୍ତମାନ ଅପେକ୍ଷା ଆହୁରି ଅଧିକ କୁ-କ୍ରିୟା ଓ ଧର୍ମ ବିଭ୍ରାଟ ଏବଂ ଅତି ଉତ୍କଟ ବିପ୍ଳବ ଘଟିବ । ଖାଣ୍ଟି ସନାତନୀ-ବଂଶ-ସମ୍ଭୂତମାନଙ୍କଠାରେ ସନାତନଧର୍ମ କେତେକାଂଶରେ ରହିବ ମାତ୍ର । ସାଧ୍ୟାନୁସାରେ ପ୍ରଚାର କର । ତତଃ ସଭା ସମିତିରେ ବକ୍ତୃତା ଦେବା ଶକ୍ତି ନ ଥିବା ହେତୁ **'ଗୁରୁଶିଷ୍ୟ ତତ୍ତ୍ୱ ସଂହିତା'** ଲେଖି ପ୍ରଚାର କରିଥିଲି । କାଳଗତି ବିଭ୍ରାଟ ଦେଖି **'ନିବେଦନ'** ପୁସ୍ତକ ପ୍ରଚାରଦ୍ୱାରା ସାଧାରଣ ବ୍ୟତିକ୍ରମ ଓ ଭୌତିକ-ପ୍ରତିକାର ପ୍ରଭୃତି କେତେକ ଦେଖାଇଥିଲି । ପ୍ରଚଳିତ ଅନୁପଯୁକ୍ତ ଶାସନ, ଚିକିତ୍ସା ଓ ଜ୍ୟୋତିଷ ମତର ଅନାଦର କାରଣ ଏବଂ ସନାତନୀ ବଂଶୀୟଙ୍କର ବ୍ୟତିକ୍ରମାଚରଣାବଲୋକନଦ୍ୱାରା ବ୍ୟଥିତ ହୋଇ ଏହି **'ମହାଭ୍ରମ ଓ ଆତ୍ମୋନ୍ନତି'** ନାମକ ସନ୍ଦର୍ଭ ବର୍ତ୍ତମାନ ଲେଖୁଅଛି । ମନେ କରେଁ ଯେଉଁମାନେ ସନାତନ-ଧର୍ମଭ୍ରଷ୍ଟ ବା କୁଖାଦ୍ୟାଦିଦ୍ୱାରା ବିଚଳିତ କିମ୍ବା ନିଷିଦ୍ଧାଚରଣଦ୍ୱାରା ପତିତ ନୋହି ପରଂପରାଗତ ସଂପ୍ରଥାବଲମ୍ବୀ ଓ ସନାତନୀ ରକ୍ତ-ସମ୍ଭୂତ, ସେମାନେ ଯଥାଶକ୍ତି ଆଦର, ଆଚରଣ ଏବଂ ପ୍ରଚାର ଓ ସାଧ୍ୟାନୁସାରେ ସାଧନ କରିବେହିଁ କରିବେ ।

ବର୍ତ୍ତମାନ କେତେକ ଆର୍ଯ୍ୟବଂଶଧର ସନାତନ-ଧର୍ମଶାସ୍ତ୍ର ଓ ତଦୁକ୍ତ ବିଧି ଏବଂ ପରଂପରା ପ୍ରଚଳିତ-କ୍ରିୟା କଳାପକୁ ପ୍ରମାଣ ସ୍ୱରୂପ ମାନିବାକୁ କୁଣ୍ଠିତ; କିନ୍ତୁ ହିନ୍ଦୁଧର୍ମ ସେହି ଶାସ୍ତ୍ରମତ ଉପରେ ପ୍ରତିଷ୍ଠିତ ବା ସନ୍ତାନିତ । ଯେଉଁମାନେ ସେ ସବୁକୁ ପ୍ରମାଣ ସ୍ୱରୂପ ନ ମାନନ୍ତି, ସେମାନେ ହିନ୍ଦୁ ନୁହନ୍ତି ବା ସେମାନଙ୍କର ନିଜକୁ ହିନ୍ଦୁ ବୋଲି ପରିଚୟ ଦେବା ଅନୁଚିତ ।

"ଯଃ ଶାସ୍ତ୍ର ବିଧିମୁତ୍ସୃଜ୍ୟ ବର୍ତ୍ତତେ କାମଚାରତଃ ।
ନ ସ ସିଦ୍ଧିମବାପ୍ନୋତି ନ ସୁଖଂ ନ ପରାଂ ଗତିଂ ।" ୨୩ ଅଃ ୧୬ ଗୀ:
"ତସ୍ମାଚ୍ଛାସ୍ତ୍ରଂ ପ୍ରମାଣଂ ତେ କାର୍ଯ୍ୟାକାର୍ଯ୍ୟ ବ୍ୟବସ୍ଥିତୌ ।
ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମକର୍ତ୍ତୁମିହାର୍ହସି ।" ୨୪ ।

ଏହି ପୁସ୍ତକ ସମ୍ବନ୍ଧରେ କେତେକ ବ୍ୟକ୍ତି ଅନୁକୂଳ ମତ ବ୍ୟକ୍ତ କରନ୍ତି ଯେ, ଏସବୁ ବିଷୟ ଅତି ମହତ୍; କିନ୍ତୁ ବର୍ତ୍ତମାନ କାଳର ଗତି ବିପରୀତ-ହିଁଗଲୁ; ସୁତରାଂ ଏହାର ପ୍ରଚାର ଓ ସମୁଚିତ ଫଳଲାଭରେ ସନ୍ଦେହ। ଆଚ୍ଛା, ବର୍ତ୍ତମାନ କାଳ-ଗତିର ଉପଯୁକ୍ତ ମତ ନେଇ ଲେଖିବାର ମର୍ମ, ସ୍ରୋତରେ ତଳକୁ ଭାସି ଯାଉଥିବା ଲୋକକୁ ଆହୁରି ତଳକୁ ପେଲିଦେବା ନୁହେଁ କି? କିନ୍ତୁ କେତେକ ବିଶିଷ୍ଟ ବ୍ୟକ୍ତି କହନ୍ତି, 'ଏ ପୁସ୍ତକର ମର୍ମ ତଳକୁ ଭସି ଯାଉଥିବା ସଦ୍‌ବଂଶଜମାନଙ୍କୁ ଟେକି ଉପରକୁ ଧକ୍କା ଦେଇ କୂଳ ଦେଖାଇଦେବା ପରି।' ସେ ଯାହା ହେଉ କାମୋଦ୍ରେକ ହୋଇଥିବା ବାଳକ ଏବଂ ସମସ୍ତ ଇନ୍ଦ୍ରିୟଶକ୍ତି ରହିତ ଭ୍ରମାନ୍ତଃକରଣ ଅତି ବୃଦ୍ଧମାନେ ରୂପଲାବଣ୍ୟ-ସମ୍ପନ୍ନା ଶୃଙ୍ଗାର-ରସୋତ୍ସୁକା, ହାବ-ଭାବ-ସମନ୍ୱିତା, ପ୍ରେମମୟୀ ସୁରସିକା ଯୁବତୀର ଗୁଣ ଓ ମାହାତ୍ମ୍ୟରେ ଯେପରି ମୁଗ୍ଧ ହୋଇ ନ ପାରନ୍ତି, ସେହିପରି ଭ୍ରଷ୍ଟାଚାରୀ, ଅମେଧ-ସେବୀ, ପରିବାଦିତାହୀନ, ବିପଥଗାମୀ, ଈଶ୍ୱର-ବିମୁଖ, ନରକୋନ୍ମୁଖ, ମକ୍ଷିକୋପମବ୍ୟକ୍ତିମାନଙ୍କ ମନ ଏଥି ନିର୍ଦ୍ଦିଷ୍ଟ ସୁମହତ୍ ବିଷୟରେ ପ୍ରବେଶ ବା ଆନନ୍ଦିତ ହୋଇ ନ ପାରେ। କିନ୍ତୁ ସନାତନୀ ରକ୍ତଗତ ସଦ୍‌ବଂଶଜ, ଧର୍ମନିଷ୍ଠ, ସଦ୍‌ବିବେକୀମାନେ ସୁରସିକ ଯୁବକୋପମ ପ୍ରୀତ ହେବେହିଁ ହେବେ।

କୃତଜ୍ଞତା ସହିତ ସ୍ୱୀକାର କରୁଅଛୁ କି, ଏହି ପୁସ୍ତକ-ନିର୍ଦ୍ଦିଷ୍ଟ କେତେକାଂଶକୁ ବହୁ ସଂଖ୍ୟକ ବ୍ୟକ୍ତି ଶୁଣି ଆନନ୍ଦିତ ହୋଇଥିଲେହେଁ ଅଧିକାଂଶ ବିଷୟକୁ ପଣ୍ଡିତ ଶ୍ରୀଯୁକ୍ତ ଅନିରୁଦ୍ଧ ଷଡ଼ଙ୍ଗୀ, ଚୌଧୁରୀ ଶ୍ରୀଯୁକ୍ତ ଜୟରାମ ଦାଶ, ବୈଦ୍ୟରତ୍ନ ଶ୍ରୀଯୁକ୍ତ ବାଲୁଙ୍କେଶ୍ୱର ଆଚାର୍ଯ୍ୟ, ଓକିଲ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମିଶ୍ର, ସୁଲେଖକ ଶ୍ରୀଯୁକ୍ତ ଶଶିଭୂଷଣ ରାୟ ଆଉ ସମସ୍ତ ସଜ୍ଜନଙ୍କୁ ସଦ୍ଧର୍ମନିରତ ଓକିଲ ରାୟ ବାହାଦୁର ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ କୈସର-ଇ-ହିନ୍ଦ, ସାହିତ୍ୟ-ଭୂଷଣ; କଟକ କଲେଜର ଦେବଭାଷାଧ୍ୟାପକ ବିଦ୍ୟାଶାସ୍ତ୍ରଙ୍କ ରାୟ ସାହେବ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ପଣ୍ଡିତ ଶ୍ରୀ ଅତୁଳ ମିଶ୍ର, କବିରାଜ ଶ୍ରୀ ହରିକୃଷ୍ଣ ଦାଶ ଆମୂଳଚୂଳ ପଠନଦ୍ୱାରା କିଛି ପରିବର୍ତ୍ତନ ନ କଲେହେଁ ଅତି ଆନନ୍ଦିତ ହୋଇ ପ୍ରଶଂସାସୂଚକ ମନ୍ତବ୍ୟ ପ୍ରକାଶ କରିଛନ୍ତି। ଏ ଗ୍ରନ୍ଥର ଉପାଦେୟତା

ବିଷୟରେ ରାୟ ବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ, ରାୟ ସାହେବ ଅର୍ତ୍ତବଲ୍ଲଭ ମହାନ୍ତି, ଶ୍ରୀଯୁକ୍ତ ବାବୁ ଶଶିଭୂଷଣ ରାୟ, ଶ୍ରୀଯୁକ୍ତ ବାବୁ ବ୍ରଜସୁନ୍ଦର ଦାସ ଏମ୍. ଏଲ୍. ଏ, ପଣ୍ଡିତ ଶ୍ରୀଯୁକ୍ତ ଲିଙ୍ଗରାଜ ମିଶ୍ର ଏମ୍. ଏ. ଲିଖିତ ପ୍ରଶଂସିତ ମନ୍ତବ୍ୟ ଦେଇଛନ୍ତି ।

ଶ୍ରୀମାନ୍ ହରମୋହନ ଦତ୍ତ ଓ ଶ୍ରୀମାନ୍ ଉଦୟନାଥ ଷଡ଼ଙ୍ଗୀ ନାନା ପ୍ରକାର ଉତ୍ସାହଜନକ ସାହାଯ୍ୟ ଦେଇ କୃତଜ୍ଞତାଭାଜନ ହୋଇଅଛନ୍ତି ।

ଏହି ପୁସ୍ତକ-ପ୍ରଦର୍ଶିତ ଭ୍ରମ-ବିଷୟକୁ ଉତ୍ତମରୂପେ ଆଲୋଚନା-ଦ୍ୱାରା ସାଧାରଣରେ ପ୍ରଚାର ଏବ ସଦୁପଦେଶମାନ ସତ୍ସାହସ, ନିର୍ଭୟ ଓ ଦୃଢ଼ ବିଶ୍ୱାସବଳରେ କ୍ରମେ କ୍ରମେ ସାଧନ କଲେ ଲୋକ ନିଜର ଇହ-ପରକାଳ, ପାରିବାରିକ, ସାମାଜିକ, ଦୈଶିକ, ପ୍ରାଦେଶିକ ଉନ୍ନତି ଆଦି ଏବଂ ପୁନଶ୍ଚ ହେତୁ ପିତୃଗଣଙ୍କର ଉଦ୍ଧାରକ ଏବଂ ନିଜେ ତ୍ରିତାପରୁ ମୁକ୍ତ ହୋଇପାରିବ । ମୂଳ ହେଉଛି ଶାସନ-ଶୃଙ୍ଖଳା ଓ ସତ୍ସାହସ । ଆମ୍ଭେମାନେ ବ୍ୟତିକ୍ରମାତ୍ମକ ସାଂସାରିକ ସମସ୍ତ କାର୍ଯ୍ୟକୁ ଯେପରି ଶୃଙ୍ଖଳାରେ ନିର୍ବାହ କରୁଥାଉଁ ବୋଲି ମନେ କରୁଥାଉଁ, ତାହା ସବୁ ମହାତ୍ମା ଜ୍ଞାନୀଙ୍କ ପକ୍ଷରେ ଉପଯୁକ୍ତ ଧୂଳିଖେଳ ଓ ନିନ୍ଦା-ବିଷ-ଜର୍ଜରିତ ହେବା ପରି । ଆମ୍ଭମାନଙ୍କ ପକ୍ଷରେ ଉତ୍ସାହ-ଜନକ ପଶାଖେଳ ଯାହା, ସୃଷ୍ଟିକର୍ତ୍ତାଙ୍କ ପକ୍ଷରେ ଆମ୍ଭମାନଙ୍କ ପାରିବାରିକ ଗୃହସ୍ଥାଶ୍ରମ କାର୍ଯ୍ୟ ବରାବର ତାହା । (ପଶାଖେଳ ଓ ଭବଲୀଳା ପୁସ୍ତକ ଦ୍ରଷ୍ଟବ୍ୟ) । ଉକ୍ତ ପୁସ୍ତକ ଲିଖିତ ସମସ୍ତ ଭ୍ରମ-ବିଷୟକୁ ଅଧିକାଂଶ ବା ସମସ୍ତେ ଅନୁଭବ କରୁଥିଲେହେଁ ଅନୁଶୀଳନଦ୍ୱାରା ଯଦି ସଂଶୋଧନ ନ କରି ସତ୍ପଥଗାମୀ ନ ହୁଅନ୍ତି, ତେବେ ତାଙ୍କୁ 'ଗୃହ୍ନୁଁ ଗୃହ୍ନୁଁ ଗୃହ୍ନିଂ ଜଳକା' ନ କହି କ'ଣ କୁହାଯିବ ?

ଏହି ପୁସ୍ତକରୁ ସବିଶେଷ କାରଣ ବଶତଃ ଯତ୍ସାମାନ୍ୟ ସାମାନ୍ୟ ମୂଲ୍ୟରେ ବିକ୍ରି କରିବାର ମନସ୍ଥ କଲେହେଁ ବ୍ୟକ୍ତିବିଶେଷଙ୍କୁ ଆଉ ସମସ୍ତ ବିନା ମୂଲ୍ୟରେ ବିତରଣ କରାହେବ । ଗ୍ରହୀତାମାନେ ଏଥି ଲିଖିତ ବିଷୟସବୁକୁ ମନୋଯୋଗସହ ପଠନଦ୍ୱାରା ଉପାଦେୟ ମନେ କରି

ଅନେକ ଅନୁଭବଦ୍ୱାରା ଏହାର ପ୍ରଣୟର ଓ ସଦ୍‌ବିଷୟର କର୍ତ୍ତବ୍ୟାଦି ଯଦି ଆଚରଣ କରନ୍ତି, ତେବେ କୃତାର୍ଥ ହେବି । ଯାହାଙ୍କର ମନୋନୀତ ନ ହେବ ସେ ଫେରାଇ ଦେଲେ ଅନ୍ୟ କୌଣସି ବିଶିଷ୍ଟ ବ୍ୟକ୍ତି ସେ ପୁସ୍ତକଖଣ୍ଡି ପାଇପାରିବେ । ନଚେତ୍ ସେ ଧର୍ମତଃ ସାହାଯ୍ୟକାରୀଙ୍କଠାରେ ଧାରୁଆ ହେବେ ।

କେତେକ ବିଶିଷ୍ଟ ସିଦ୍ଧ-ପୁରୁଷ ଏବଂ ମହାମହିମାମୂଳ ସଦ୍‌ଗୁରୁଙ୍କ ଉପଦେଶ ଓ କେତେକ ସତ୍‌ଶାସ୍ତ୍ର ମତାନୁଯାୟୀ ଏହି ପୁସ୍ତକର ସମସ୍ତ ବିଷୟକୁ ମୁଁ ନିମିତ୍ତମାତ୍ର ହୋଇ ଲେଖିଅଛି । ଏହି ପୁସ୍ତକାନ୍ତର୍ଗତ କୌଣସି ବିଷୟ ଅସଙ୍ଗତ, ଅଶାସ୍ତ୍ରୀୟ ବା ନିଜ ପକ୍ଷରେ କିମ୍ବା ଜଗତ ପକ୍ଷରେ ଅନିଷ୍ଟକର ବୋଲି ଯଦି କୌଣସି ବିଶିଷ୍ଟ ବ୍ୟକ୍ତି ମନେ କରନ୍ତି, ମତେ ତାହା ଜଣାଇଲେ ମୁଁ ତାହାର ସମୁଚିତ ଶାସ୍ତ୍ରୀୟ ଓ ପ୍ରତ୍ୟକ୍ଷ ପ୍ରମାଣ ଦେଇ ନ ପାରିଲେ ପରିବର୍ତ୍ତନ ବା ତ୍ୟକ୍ତ କରି ଉପକୃତ ହେବି । ଯଥୋକ୍ତ ବିଷୟ ସୁବୋଧ ହେବା ସକାଶେ କେତେକର ନିର୍ଯ୍ୟାସ ଦ୍ୱିରୁକ୍ତି ହେଲେହେଁ ସବିଶେଷ ଆବଶ୍ୟକ ଥିବା ହେତୁ ନିର୍ଦ୍ଦିଷ୍ଟ ହୋଇଛି । ଲିପି ଓ ଭାଷାଦୋଷ କ୍ଷମଣୀୟ । ବିଜ୍ଞବରେଷୁ ନିବେଦନମିତି । ବିଶେଷତଃ ଯେ ପରଂପରା-ପ୍ରଚଳିତ ଶାସ୍ତ୍ରୋକ୍ତିଗତ ଓ ପ୍ରତ୍ୟକ୍ଷ-ପ୍ରମାଣ-ବିରୋଧୀ ବା ବୈତଣ୍ଡିକ, ତାଙ୍କ ପ୍ରତି ମୁଁ ନିରୁତ୍ତର ।

ଏହି ପୁସ୍ତକର ପ୍ରକାଶାର୍ଥ ଉତ୍କଳର କେତେକ ମହାନୁଭବ ଉଦାରମନା ଦାତା ସାଧ୍ୟାନୁଯାୟୀ ଅର୍ଥ ସାହାଯ୍ୟ କରିଛନ୍ତି ଓ କେତେକ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତ ହୋଇଅଛନ୍ତି । ସେମାନଙ୍କ ନାମ ଏହି ପୁସ୍ତକର ଯଥା ସ୍ଥାନରେ ପ୍ରକାଶ କରିବାର ବାସନା ରହିଲା । ଏଠାରେ ପରମପିତା ଭଗବାନଙ୍କଠାରେ ଏତିକି ମାତ୍ର ପ୍ରାର୍ଥନା ଯେ, ସେମାନଙ୍କର ନୈତିକ ଉନ୍ନତି ଉତ୍ତରୋତ୍ତର ବୃଦ୍ଧି ହେଉ ।

| | |
|---|---|
| ବଲରାମଶାସନ<br>ପୋ: ନିଆଳୀ । ଜି । କଟକ<br>ହା: ସା: ଲିଙ୍ଗାଦେଉଳ—କଟକ | ନିବେଦକ<br>ଶ୍ରୀ ଚନ୍ଦ୍ରାମଣି ପ୍ରହରାଜ<br>ମୁକୁଲପଥୀ ଶର୍ମା |

# 'ଗ୍ରନ୍ଥପ୍ରବେଶ'



କଟକ ଜିଲ୍ଲାର ଜଗତ୍‌ସିଂହପୁର ଥାନାର ବଲରାଶାସନ ନିବାସୀ ପଣ୍ଡିତ ଶ୍ରୀ ଚନ୍ଦ୍ରମଣି ପ୍ରହରାଜ ଆଜକୁ ୪୦ବର୍ଷ ପୂର୍ବେ କଟକ ପ୍ରିଣ୍ଟିଙ୍ଗକମ୍ପାନୀଙ୍କଦ୍ୱାରା ସ୍ୱର୍ଗୀୟ ରାୟବାହାଦୁର ଗୌରୀଶଙ୍କର ରାୟଙ୍କ ପୃଷ୍ଠପୋଷକଭାବରେ ପ୍ରତିଷ୍ଠିତ ପୁରାଣପ୍ରକାଶକ କମ୍ପାନୀର ଜଣେ ପ୍ରଧାନ ସହକର୍ମୀ ଥିଲେ ଓ ପ୍ରାୟ ୨୫ବର୍ଷ କାଳ ସେ ଉକ୍ତ କର୍ମରେ ଲାଗି ଆଜକୁ ୧୫ବର୍ଷ ହେବ ସେ ଏଠାରୁ ବିଦାୟ ଗ୍ରହଣ କରି ଗ୍ରାମରେ ଥାଆନ୍ତି ଓ ମଧ୍ୟରେ ମଧ୍ୟରେ କଟକ ଆସନ୍ତି । ବର୍ତ୍ତମାନ ତାଙ୍କର ବୟସ ୭୦ ବର୍ଷରୁ ଊର୍ଦ୍ଧ୍ୱ; କିନ୍ତୁ ସେ ଆଜିକାଲି ସାଧନ, ଭଜନ, ଅଧ୍ୟୟନ, ଲିଖନ ଆଦି ଧର୍ମ କର୍ମରେ ବ୍ୟାପୃତ ରହିଥାଆନ୍ତି । ଆଜିକାଲି କାଳର ଗତି ଓ ପାଶ୍ଚାତ୍ୟ ସଭ୍ୟତାର ଫଳରେ ସନାତନ ହିନ୍ଦୁ ସମାଜରେ ସବୁ ଶାଖାରେ ଘୋର ପରିବର୍ତ୍ତନ ଘଟୁଅଛି ଓ ବୈଷୟିକ ଅଭିବୃଦ୍ଧିକୁ ଲକ୍ଷ୍ୟ କରି ଭାରତବାସୀମାନେ ଆର୍ଯ୍ୟଜାତିର ପ୍ରାଚୀନ ଆଧ୍ୟାତ୍ମିକ ସାଧନକୁ ପଛକୁ ପକାଇ ଦେଉଅଛନ୍ତି । ଭାରତବର୍ଷର ଅନ୍ୟ ଅଞ୍ଚଳ କଥା ଦୂରେ ଥାଉ, ଆମ ଓଡ଼ିଶାର ସମାଜରେ ଆଜିକାଲି ଯେଉଁ ସବୁ ବିପ୍ଳବ ଓ ପରିବର୍ତ୍ତନସବୁ ଦେଖା ଯାଉଅଛି, ସେମାନଙ୍କ ସହିତ ୫୦ବର୍ଷ ପୂର୍ବର କଥାକୁ ତୁଳନା କଲେ, ଏ ପରିବର୍ତ୍ତନର ବିଶାଳତ୍ୱ ଅନୁଭୂତ ହେବ । ଅତଏବ ୭୦ବର୍ଷ ପୂର୍ବେ ଯେ ଜନ୍ମଗ୍ରହଣ କରି ସେକାଳର ଆବହାଓ୍ୱାରେ ବଢ଼ିଥିଲେ, ଆଜିର ଅବସ୍ଥା ତାଙ୍କ ମନରେ ଘୋର ଆଘାତ କରୁଅଛି । ଏହା ଭାବିବାର ବିଷୟ ଅଟେ ।
କି ରାଜନୀତି, କି ସମାଜନୀତି, କି ଶିକ୍ଷା, କି ସାଧନ, କି ଧର୍ମ, ସବୁ

କ୍ଷେତ୍ରରେ ପରିଲକ୍ଷିତ ଅବସ୍ଥା, ପ୍ରାଚୀନ ପରିସ୍ଥିତି ତୁଳନାରେ ଭଲ ଆଡ଼କୁ ଗତି କରୁଅଛି, କି ମନ୍ଦ ଆଡ଼କୁ ଗତି କରୁଅଛି,—ଏହା ଚିନ୍ତା କରି ଗୋଟିଏ ସ୍ଥିର ମୀମାଂସାରେ ଉପନୀତ ହେବା ସହଜ କଥା ନୁହେଁ । ଯେଉଁ ପାଶ୍ଚାତ୍ୟ ବିଷୟାନୁରାଗୀ ସଭ୍ୟତା (Materialist civilisation) ଓ ମନୋବୃତ୍ତିଦ୍ୱାରା ଆଜି ଜଗତ ଆଲୋଡ଼ିତ ଓ ଉଦ୍‌ବେଳିତ ହେଉଅଛି, ସେ ସଭ୍ୟତା ଜଗତକୁ ଗୋଟିଏ ମହାଶଙ୍କାମୟ ଓ ଅଶଙ୍କା-ସୂଚକ ପରିସ୍ଥିତି ଆଡ଼କୁ ଟାଣି ନେଉଅଛି । ଏହା ଆସିଆ, ଇଉରୋପ, ଆମେରିକା ଆଦିରେ ବହୁ ଚିନ୍ତାଶୀଳ ମନୀଷୀମାନେ ଅନୁଧ୍ୟାନ କରି ଅସ୍ଥିର ହୋଇ ପଡ଼ିଅଛନ୍ତି । ଯେଉଁ ଜନସ୍ରୋତ ନଗରାଭିମୁଖୀ ହେଉଥିଲା, ବର୍ତ୍ତମାନ ତାହା ପୁଣି ଗ୍ରାମାଭିମୁଖୀ ହେବାକୁ ବସିଲାଣି । ବୈଷୟିକ ବିଭବଆଡ଼ୁ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ଦୃଷ୍ଟି ଆଧ୍ୟାତ୍ମିକ ବିଭବଆଡ଼କୁ ଫେରିବାକୁ ବସିଲାଣି । ଚିନ୍ତାଶୀଳ ବ୍ୟକ୍ତିଗଣଙ୍କ ଚିନ୍ତା-ସ୍ରୋତ ପୁଣି ପ୍ରାଚୀନ ଆର୍ଯ୍ୟ ଋଷିମାନଙ୍କ ପ୍ରଦର୍ଶିତ ମାର୍ଗଆଡ଼କୁ ଧାଇଁଲାଣି । ଏହା ନ ହେଲେ ଜଗତର ପତନ ଅନିବାର୍ଯ୍ୟ, ସଭ୍ୟତାର ଧ୍ୱଂସ ଅବଶ୍ୟମ୍ଭାବୀ, ସଂସାରର ପ୍ରଳୟ ଅପରିହାର୍ଯ୍ୟ,—ଏହା ବହୁ ପାଶ୍ଚାତ୍ୟ ଭାବୁକ ସ୍ଥିର କଲେଣି; ଫଳରେ ମଧ୍ୟ ତାହା ବର୍ତ୍ତମାନ ଦେଖାଗଲାଣି ।

ଏପରି ଅବସ୍ଥାରେ ଆଜିକାଲି ଆମ ଓଡ଼ିଶାରେ ଲବ୍ଧପ୍ରତିଷ୍ଠ ଜଣେ ପ୍ରାଚୀନ ପଦ୍ଧତିରେ ବର୍ଦ୍ଧିତ ବୃଦ୍ଧଙ୍କ ମନରେ କି ଛାୟାପାତ କରୁଅଛି, ତାଙ୍କ ଭାବରାଜ୍ୟରେ କି ପ୍ରତିକ୍ରିୟାର ସୃଷ୍ଟି କରୁଅଛି, ତାଙ୍କ ବିବେକରେ କି ପ୍ରତିଘାତ କରୁଅଛି, ତାଙ୍କ ବିଚାରଶକ୍ତିକୁ କେଉଁ କେନ୍ଦ୍ରାଭିମୁଖୀ କରୁଅଛି, ଏହା ଜାଣିବା ଅନ୍ତତଃ ନବ୍ୟଶିକ୍ଷା ଓ ସଭ୍ୟତାନୁରାଗିଗଣଙ୍କ ପକ୍ଷରେ ଆବଶ୍ୟକ ।

ପଣ୍ଡିତ ଶ୍ରୀ ଚିନ୍ତାମଣି ପ୍ରହରାଜ ୧୯ ବର୍ଷ ପୂର୍ବେ 'ନିବେଦନ' ନାମକ ଖଣ୍ଡିଏ ପୁସ୍ତକ ନିଜ ବ୍ୟୟରେ ମୁଦ୍ରିତ କରି ଓଡ଼ିଶାର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ବାଣ୍ଟିଥିଲେ । ମୁଁ ସେ ପୁସ୍ତକଖଣ୍ଡି ଏକା ବୈଠକରେ ପଢ଼ିଥିଲି । ପଣ୍ଡିତ ମହାଶୟଙ୍କ ଧନଶକ୍ତି, ଆଧୁନିକ ସମାଜରେ ପରିସ୍ଥିତି ଓ ଅଧିକାର ପ୍ରତି ଦୃଷ୍ଟି କଲେ ତାଙ୍କ

ଚେଷ୍ଟାଦ୍ୱାରା ଆଧୁନିକ ଯୁଗରେ ପରିଲକ୍ଷିତ ପ୍ରଗତିର ସ୍ରୋତ ଯେ ଲେଉଟିବ, ଏପରି ଆଶା କରାଯାଇ ନ ପାରେ। କିନ୍ତୁ ତାଙ୍କଦ୍ୱାରା ଲିଖିତ ବିଷୟମାନ ନବ୍ୟମାନଙ୍କ ମନୋରାଜ୍ୟରେ ଗୋଟିଏ ଗୁରୁତର ଚିନ୍ତାସ୍ରୋତ ବୁହାଇବ,—ଏଥିରେ ସନ୍ଦେହ ନାହିଁ। ସଂସ୍କୃତରେ ପ୍ରାମାଣିକ ବାକ୍ୟ ଅଛି "ନଗ୍ନେ କ୍ଷପଣକେ ଦେଶେ ରଜକଃ କିଂ କରିଷ୍ୟତି"। 'ଯେଉଁ ଦେଶରେ ସମସ୍ତେ ବସ୍ତ୍ରହୀନ, ସେ ଦେଶରେ ଧୋବା କଅଣ କରିବ ?'

ସେହିପରି, ଆମ ଦେଶରେ ନବ୍ୟ ଶିକ୍ଷିତ ଓ ସଭ୍ୟମାନଙ୍କ ଦୃଷ୍ଟି ଯେଉଁଆଡ଼କୁ ଦଉଡ଼ୁଛି, ସତୁରି ବର୍ଷାଧିକ ବୃଦ୍ଧ ପଣ୍ଡିତେ ସେହିଆଡ଼ରୁ ସେମାନଙ୍କ ଦୃଷ୍ଟିକୁ ଫେରାଇ ଆର୍ଯ୍ୟଋଷିମାନଙ୍କ ପ୍ରଦର୍ଶିତ ପନ୍ଥାକୁ ଆଣିବେ,—ଏପରି ଆଶା କରିହେବ କି ? ଦେଖାଯାଉ ଯେ, ପ୍ରାଚୀନ ଆର୍ଯ୍ୟସଭ୍ୟତାର କଷଟି ଥିଲା 'ପୁରୁଷଙ୍କ ପତିତ୍ୱ ଓ ସ୍ତ୍ରୀଙ୍କ ସତୀତ୍ୱ'; ଆଜିକାଲି ପାଶ୍ଚାତ୍ୟ ସଭ୍ୟତାର କଷଟି ହେଲା 'ପୁରୁଷଙ୍କ ଭୃତ୍ୟତ୍ୱ ଓ ପତ୍ନୀଙ୍କର ପତିତ୍ୱ'। ଏ ଦୁଇ ଆଦର୍ଶରେ ଠୋକର ଖାଇ ଆମ ଦେଶର ଆବାଲବୃଦ୍ଧବନିତା ଦୁଇ ନାବରେ ଦୁଇ ଗୋଡ଼ ପକାଇ ଭାରକେନ୍ଦ୍ର ଠିକ୍ ରଖିପାରୁ ନାହାନ୍ତି।

ଯେ ହେଉ, ପଣ୍ଡିତ ମହାଶୟ 'ମହାଭ୍ରମ' ନାମରେ ଏ ଯେଉଁ ଦ୍ୱିତୀୟ ପୁସ୍ତକ ରଚନା କରିଅଛନ୍ତି, ସେଥିରେ ଜ୍ଞାତା, ଜ୍ଞେୟ ଓ ଜ୍ଞାନ ଏ ତିନି ବିଷୟ ଏବଂ ଦେହ ଓ ଦେହୀ ଏ ଦୁଇ ବିଷୟ ପ୍ରାଚ୍ୟ ଦୃଷ୍ଟିକୋଣରୁ ଚର୍ଚ୍ଚା କରିଅଛନ୍ତି। ତାଙ୍କ ମତ ସଙ୍ଗେ ଆମ୍ଭମାନଙ୍କ ମତ ମିଳି ନ ପାରେ। ତଥାପି ତାଙ୍କ ମନ୍ତବ୍ୟଗୁଡ଼ିକ ଉପେକ୍ଷଣୀୟ ନୁହେ ଓ ସେ ଗୁଡ଼ିକ ଦୃଢ଼ଭାବରେ ପ୍ରଣିଧାନଯୋଗ୍ୟ ଏବଂ ସେମାନ ଆମ୍ଭମାନଙ୍କୁ ଚିନ୍ତାର ବହୁତର ଉପାଦାନ ଯୋଗାଇବ। ଏଥିରେ ମତଦ୍ୱୈଧ ହୋଇ ନ ପାରେ।

ପରିଶେଷରେ ବକ୍ତବ୍ୟ ଏହି କି, ବର୍ତ୍ତମାନ ସମଗ୍ର ପୃଥିବୀରେ :— ଇଉରୋପରେ, ଆସିଆରେ ଓ ଅଫ୍ରିକାରେ ଯେଉଁ ଉତ୍କଟ ଧ୍ୱଂସଲୀଳା ଓ ବିବେକହୀନ ଅତ୍ୟାଗ୍ରହମାନଙ୍କ ଅଭିନୟ ଲାଗିଅଛି, ପାଶ୍ଚାତ୍ୟ ଶିକ୍ଷାର ଓ ସଭ୍ୟତାର ଏହାହିଁ ଅନ୍ତିମ ବିପାକ ଅଟେ। ଏ ପାଶ୍ଚାତ୍ୟ

ସଭ୍ୟତା ଜଗତରେ ତିଷ୍ଠିବ ନାହିଁ ଓ ଯେଉଁମାନେ ଏହି ପାଶ୍ଚାତ୍ୟ ସଭ୍ୟତାର ଛାଞ୍ଚରେ ଭାରତର ଭବିଷ୍ୟତ ଧର୍ମ୍ମ, ଶାସନ, ସମାଜ ଓ ଶିକ୍ଷାକୁ ଗଢ଼ିବାକୁ ଯାଉଛନ୍ତି, ସେମାନଙ୍କର ପରିଶ୍ରମ ପଣ୍ଡ ହେବ— ଏଥିରେ ସନ୍ଦେହ ନାହିଁ । ଯେତେବେଳପର୍ଯ୍ୟନ୍ତ ସନାତନୀ ଆର୍ଯ୍ୟ-ସଭ୍ୟତାର ଓ ସଂସ୍କୃତିର ଆଦର୍ଶ ଭାରତବାସୀ ଗ୍ରହଣ ନ କରିବେ ସେତେକାଳ ଭାରତର ଗତି ମୁକ୍ତି ନାହିଁ । ସନାତନ ଆର୍ଯ୍ୟ-ସଭ୍ୟତା ବହୁ ସହସ୍ର ବର୍ଷର ବିପରୀତ ସଭ୍ୟତାମାନଙ୍କ ତୋଡ଼କୁ ସମ୍ଭାଳି, ଏଡ଼ି ବଞ୍ଚିଅଛି ଓ ଭାରତକୁ ବଞ୍ଚାଇ ରଖିଛି । ସେହି ସନାତନ ସଭ୍ୟତାର ଓ ସଂସ୍କୃତିର ମୂଳଭିତ୍ତି ଓ ଆଦର୍ଶ ଯୋଗୁଁ ଆର୍ଯ୍ୟ-ସଭ୍ୟତା ପୃଥିବୀର ପ୍ରାଚୀନତମ ସଭ୍ୟତାରୂପେ ତିଷ୍ଠି ପାରିଛି । ଆଜି ପାଶ୍ଚାତ୍ୟ ଚକଚକିଆ ସଭ୍ୟତାର ଭେଉରେ ଭାସମାନ ହୋଇ, ସେହି ସଭ୍ୟତାକୁ ମୂଳଦୁଆକରି 'Liberty, Equality & Fraternity' 'ସ୍ୱାଧୀନତା, ସମତା ଓ ଭ୍ରାତୃଭାବ' ବୋଲି ଯେଉଁ ତଥ୍ୟ ଉଠୁଛି ଓ "ସାର୍ବଜନୀନ ଭୋଟ ଅଧିକାର, ଅସ୍ପୃଶ୍ୟତା ନିବାରଣ, ବିଧବା ଓ ବିବର୍ଣ୍ଣ ବିବାହ, ସ୍ତ୍ରୀ ସ୍ୱାଧୀନତା ଓ ଶିକ୍ଷା, ଅଛୁଆଁଙ୍କ ମନ୍ଦିର ପ୍ରବେଶ, ନିଶା ନିବାରଣ, ହିନ୍ଦୁ ମୁସଲମାନ ମିଳନ, ଜାତି ଭେଦ ପ୍ରଥା ବିନାଶ, ବିବାହରେ ସ୍ୱାଧୀନତା, ବର୍ଣ୍ଣାଶ୍ରମ-ଧର୍ମ୍ମର ଲୋପ " ଆଦି ନାମରେ ଭାରତରେ ଯେଉଁ ସ୍ୱେଚ୍ଛାଚାରିତା, ନିୟମଭଙ୍ଗ, ଆଚାରଭ୍ରଷ୍ଟତା, ଅନୈତିକତା ପଶିଗଲାଣି, ପଶୁଛି ଓ ପଶିବ, ଏହାର ପରିଣାମ ପାଶ୍ଚାତ୍ୟଖଣ୍ଡରେ ଦେଖା ଯାଉଥିବା ଉପସ୍ଥିତ ବିପ୍ଳବ ହେବ; ଅତ୍ର ସନ୍ଦେହୋ ନାସ୍ତି । ଏ ଅବସ୍ଥାରେ ପଣ୍ଡିତ ମହାଶୟଙ୍କ 'ମହାଭ୍ରମ' ପୁସ୍ତକ କାଲୋପଯୋଗୀ ହୋଇଅଛି ବୋଲି ଚିନ୍ତାଶୀଳ ବ୍ୟକ୍ତିମାନେ ଏକ ମୁଖରେ ସ୍ୱୀକାର କରିବେ ।

ଭାଷାକୋଷାଶ୍ରମ
ଫେବୃୟାରି, ୧୯୪୦ } ଗୋପାଳଚନ୍ଦ୍ର ପ୍ରହରାଜ

ପଣ୍ଡିତ ଶ୍ରୀ ଚନ୍ଦ୍ରମଣି ପ୍ରଧାନଙ୍କ କୃତ 'ମହାଭ୍ରମ' ତଥା 'ଅସ୍ମୋନ୍ନତି'ର ପାଣ୍ଡୁଲିପି ଆମୂଳଚୂଳ ପାଠ କରି ଅତିଶୟ ପ୍ରୀତ ହେଲି । ବର୍ତ୍ତମାନ ଜଗତ ଅଧିକାଂଶରେ ଶ୍ରେୟୋଲାଭ ଉଦ୍ଦେଶ୍ୟରେ କାର୍ଯ୍ୟ କରି ଯେ ମହାଭ୍ରମରେ ପଡ଼ୁଛି, ତାହାହିଁ ଏ ଗ୍ରନ୍ଥରେ ସୁନ୍ଦର ରୂପରେ ପ୍ରତିପାଦିତ ହୋଇଅଛି । ଦେହ ଦେହୀ ସମ୍ବନ୍ଧୀୟ ଯଥାର୍ଥ ଜ୍ଞାନ ଲାଭ କରିବା ମାନବସନ୍ତାନଙ୍କ କର୍ତ୍ତବ୍ୟ । ପୁରାଣ ଶାସ୍ତ୍ରାଦି ଆଶ୍ରୟ କରି ଗ୍ରନ୍ଥକାର ମହାଶୟ ନିଜର ବିଶାଳ ଅନୁଭୂତିଜନିତ ଲୌକିକ ଉଦାହରଣ ସହିତ ବିଷୟକୁ ଅତି ସରଳଭାଷାରେ ଉପସ୍ଥାପିତ କରିଅଛନ୍ତି । ପ୍ରାଚୀନ ଆର୍ଯ୍ୟଋଷିମାନଙ୍କ ଉକ୍ତିର ସାରବତ୍ତା ଉପଲବ୍ଧି କରାଇବା ଏ ମହାଶୟଙ୍କର ପ୍ରଧାନ ଉଦ୍ଦେଶ୍ୟ ।

୨୫ । ୩ । ୪୦ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି

---

ଜ୍ଞାନହିଁ ମାନବ ଜୀବନର ଏକମାତ୍ର ପ୍ରାର୍ଥନୀୟ ବସ୍ତୁ, ଜ୍ଞାନର ଅଭାବରେ ଜୀବର କୌଣସି କ୍ରିୟା ହିଁ ନାହିଁ । ଫଳତଃ ବେଦ-ବେଦାନ୍ତାଦି ସମଗ୍ର ଶାସ୍ତ୍ର ଅଧ୍ୟୟନ କରି ମନୁଷ୍ୟ ଯେଉଁ ଜ୍ଞାନଲାଭ କରିପାରେ, ବର୍ତ୍ତମାନ କାଳର ଶିକ୍ଷାପ୍ରଣାଳୀଦ୍ୱାରା ସମସ୍ତଙ୍କ ମଧ୍ୟରେ ସେ ଜ୍ଞାନର ସମ୍ପୂର୍ଣ୍ଣ ଅଭାବ ପରିଲକ୍ଷିତ ହେବାରୁ ଗ୍ରନ୍ଥକାର ପଣ୍ଡିତ ମହାଶୟ ବହୁଦିନ ହେଲା ଐକାନ୍ତିକ ଯତ୍ନ ଓ ପରିଶ୍ରମ ସ୍ୱୀକାର କରି ଏହି 'ମହାଭ୍ରମ ଓ ଅସ୍ମୋନ୍ନତି' ପୁସ୍ତକ ଖଣ୍ଡିକ ରଚନା କରିଅଛନ୍ତି । ଏ ପୁସ୍ତକରେ ଆତ୍ମତତ୍ତ୍ୱ, ଧର୍ମତତ୍ତ୍ୱ, ଜୀବତତ୍ତ୍ୱ, ଜାତିତତ୍ତ୍ୱ, ନୀତିତତ୍ତ୍ୱ ଏବଂ ମାନବ ଧର୍ମ ପ୍ରଭୃତିର ବହୁ ଅଭିଜ୍ଞତାପୂର୍ଣ୍ଣ ଆଲୋଚନା ହୋଇଅଛି । ମାନବ ଜୀବନ ସମ୍ବନ୍ଧରେ ଯେଉଁ ଯେଉଁ ବିଷୟର ଜ୍ଞାନଲାଭର ଏକାନ୍ତ ଆବଶ୍ୟକତା ରହିଅଛି, ଏହି ପୁସ୍ତକ ଖଣ୍ଡିକ ଆଦ୍ୟୋପାନ୍ତ ପାଠ କଲେ ଅନାୟାସରେ ସେ ଜ୍ଞାନ ଉପଲବ୍ଧ ହେବ । ମାତ୍ର ପଣ୍ଡିତ ମହାଶୟଙ୍କ ପ୍ରତିଭା ଦେଖି କବିବାଣୀ ସ୍ୱତଃହିଁ ସ୍ମରଣ ହେବା ସ୍ୱାଭାବିକ :—

"ଶୁଷ୍କବନ୍ଧ୍ୟ ଯଶଃ ସଙ୍ଗେ ଅର୍ଦ୍ଧାଶନ, ପ୍ରତିଭାର ପରା ଲଲାଟ ଲିଖନ ।"

କାଳୀଗଳି—କଟକ
୧୪ । ୫ । ୧୯୪୦ } ଶ୍ରୀ ଶଶିଭୂଷଣ ରାୟ

---

ପଣ୍ଡିତ ଶ୍ରୀ ଚନ୍ଦ୍ରମଣି ପ୍ରହରାଜ ମହାଶୟଙ୍କ ରଚିତ 'ମହାଭ୍ରମ ଓ ଅମ୍ଳୋନ୍ନତି' ପୁସ୍ତକର ପାଣ୍ଡୁଲିପି ଅଧିକାଂଶ ପାଠ କଲି । ପୁସ୍ତକର ଚିନ୍ତାଧାରା ଆଧୁନିକ 'ପ୍ରଗତି'ଶୀଳ ଯୁବକମାନଙ୍କ ଚିନ୍ତାଧାରାର ବିପରୀତମୁଖୀ ହୋଇଥିଲେ ମଧ୍ୟ ଦେଶର ଭୂତ ଓ ଭବିଷ୍ୟତ ପ୍ରତି ମନୋଯୋଗ ଦେଉଥିବା ବ୍ୟକ୍ତିମାନେ ଏ ପୁସ୍ତକର ଉପାଦେୟତା ନିଶ୍ଚୟ ଉପଲବ୍ଧି କରିପାରିବେ । ଲେଖକ ଏଥି ପୂର୍ବରୁ 'ନିବେଦନ' ନାମରେ ଏହି ଧରଣର ଖଣ୍ଡିଏ କ୍ଷୁଦ୍ର ପୁସ୍ତକ ନିଜ ବ୍ୟୟରେ ପ୍ରକାଶ କରିଥିଲେ ଓ ସାଧାରଣରେ ବିତରଣ କରିଅଛନ୍ତି । ଆଶାକରେଁ ପଣ୍ଡିତ ମହାଶୟ ତାଙ୍କର ଏହି ସାଧୁଉଦ୍ୟମରେ ଯଥେଷ୍ଟ ସାହାଯ୍ୟ ଓ ସହାନୁଭୂତି ଲାଭ କରିବେ ।

ସମାଜ ଅଫିସ
୫ । ୭ । ୪୦ } ଶ୍ରୀ ଲିଙ୍ଗରାଜ ମିଶ୍ର

---

ଇହ-ପରକାଳର ବା ଦେହ-ଦେହୀଙ୍କ ଶ୍ରେୟ ସକାଶେ ସଦୁପଦେଶାତ୍ମକ 'ମହାଭ୍ରମ ଓ ଅମ୍ଳୋନ୍ନତି' ପରି ଉପାଦେୟ ପୁସ୍ତକ ଅଦ୍ୟାବଧି ଓଡ଼ିଆ ଭାଷାରେ ନ ଥିଲା । ଉପରଲିଖିତ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କ ମନ୍ତବ୍ୟ ତାହାର ଜ୍ୱଳନ୍ତ ପ୍ରମାଣ ।

ଶ୍ରୀ ବ୍ରଜସୁନ୍ଦର ଦାସ

---

# ସୂଚୀପତ୍ର ବା ଉପକ୍ରମଣିକା

---

# ମହାଭ୍ରମ ଓ ଆତ୍ମୋନ୍ନତି

## ଅବତରଣିକା

ଜଗତରେ ଅଧିକାଂଶଙ୍କର ଅନ୍ତଃକରଣକୁ ମଳମୂତ୍ର ରାକ୍ଷସୀ-ମାୟା ଏପରି ଛନ୍ଦ ଅବଦ୍ଧ କରିଛି ଯେ, ସେମାନେ ସାଂସାରିକ କାର୍ଯ୍ୟ, ପରଂପରାଗତ ସତ୍‌କ୍ରିୟା ଓ ଧର୍ମଶାସ୍ତ୍ରତତ୍ତ୍ୱ ଏବଂ ଇହପରକାଳର ଶ୍ରେୟକୁ ଅନୁମାନ ଓ ପ୍ରତ୍ୟକ୍ଷ ଅନୁଭବ କଲେହେଁ ତାହା ବିଚାର କରି କାର୍ଯ୍ୟରେ ପରିଣତ କରିବାକୁ କୁଣ୍ଠିତ ବା ବିରୁଦ୍ଧ ମାର୍ଗଗାମୀ ହେଉଛନ୍ତି; ଯେପରି କି ତା ଗନ୍ଧରେ ନାକ ଫାଟିଯାଉଛି,—ସୁତରାଂ ସତ୍‌ଶାସ୍ତ୍ର ଦେଖୁ ନାହାନ୍ତି। କେତେକ ମଧ୍ୟ ବିତଣ୍ଡା ଯୁକ୍ତିଦ୍ୱାରା ବ୍ୟର୍ଥ ବା ବିପରୀତ ମତକୁ ସମର୍ଥନ କରୁଅଛନ୍ତି। ତାହାର ଦୋଷ ପ୍ରମାଣ କରିଦେଲେ ଅନ୍ୟାନ୍ୟମାନେ ସେ ଦୋଷରେ ଦୋଷୀ ବୋଲି ଉଦାହରଣ ଦେଇ ନିନ୍ଦା କରୁଛନ୍ତି, କିନ୍ତୁ ନିଜେ ଯେ ସେ ଦୋଷରେ ଦୋଷୀ, ତାହା ଭାବିପାରୁ ନାହାନ୍ତି। ସାନ୍ନିପାତିକ ରୋଗୀ ସମୁଚିତ ଔଷଧ ପଥ୍ୟାଦି ବିପରୀତାତ୍ମକ ଶୀତଳଜଳାଦିରେ ଯେପରି ଅଗ୍ରହୀ ହୋଇଥାଏ, ବର୍ତ୍ତମାନ ସେମାନେ ଇହ-ପରଶ୍ରେୟର ସେହିପରି ବିରୋଧୀ ହୋଇଅଛନ୍ତି।

ମାନବ ପକ୍ଷରେ ଦୁଇଟି ମାତ୍ର କର୍ତ୍ତବ୍ୟ କର୍ମ, ଯଥା—ଦେହ ଓ ଦେହୀ ବା ଜୀବାତ୍ମା, ଆଉ ସବୁ ଆନୁସଙ୍ଗିକ କାର୍ଯ୍ୟ ଗୌଣପକ୍ଷ ବା ବ୍ୟର୍ଥ। ସାକ୍ଷ୍ୟ-ଲକ୍ଷ୍ୟ-ପ୍ରତ୍ୟକ୍ଷ ବା ଶାସ୍ତ୍ରୀୟ ଅନୁମାନିକ ସମକ୍ଷ ଏହି ଦ୍ୱିବିଧଦ୍ୱାରା ଦେଶକାଳ ପାତ୍ର

ନେଇ ସମସ୍ତ ବିଷୟ୍ନ ନିରୂପଣ କରାଯାଇଥାଏ । ବର୍ତ୍ତମାନ କେତେକଙ୍କ ଅନ୍ତଃକରଣ ଅତି ଉତ୍କଟ ବିଷ ନିଶାରେ ଏପରି ଭୋଳ ଯେ, ସେମାନେ ଦେହ ଓ ଦେହୀର ହିତାହିତ ଅଦୌ ଭାବୁ ନାହାନ୍ତି । ଏଥି ନିର୍ଦ୍ଦିଷ୍ଟ କୌଣସି ବିଷୟ୍ନ ଅଦ୍ଭୁତ ବା ଅନୋହତ ନୁହେ । ବିବିଧ ପ୍ରମାଣ—ନନ୍ଦନ ବନରେ ଷାରକାତୋପମ ଜଗତର ଭାରତ-ପୁଷ୍ପ-ବାଟିକାରେ ନାନାପ୍ରକାର ଉପାଦେୟ୍ନ ନାନାବିଧ ବିଷୟୋପମେୟ୍ନ ମନୋହର ଓ ତ୍ରିକାଳଶ୍ରେୟ୍ନ ସୁବାସ କୁସୁମୋପମ ସଦ୍‌ବିଷୟାଦ୍ଦ ବିଧି ପ୍ରସ୍ଫୁଟିତ ବା ଦେଦୀପ୍ୟମାନ । ତାହା ଚୟନଦ୍ୱାରା ସୁଗନ୍ଧାମୋଦିତ ନ ହୋଇ, ପାଦ୍ରିପୋକ କଖାରୁଫୁଲରେ ବାଇ ପରି ଅଧିକାଂଶ ବ୍ୟର୍ଥବିଷୟ୍ନରେ ନିମଜ୍ଜିତ । ଅତଏବ ତନ୍ମଧ୍ୟରୁ କେତେକ ସୁବାସ କୁସୁମ ଗ୍ରନ୍ଥିତ ହୋଇଅଛି । ତାହା ତତ୍ତ୍ୱଜ୍ଞ ଗୁଣଗ୍ରାହୀଙ୍କ ହୃଦୟକ୍ଷେତ୍ରରେ ଅବଶ୍ୟ ଦେଦୀପ୍ୟମାନ ହେବ । ଯେପରି ହୀରା-ନୀଳା-ମୋତି ମାଣିକ୍ୟାଦି ହାରକୁ ଗୁଞ୍ଜାଫଳ ପରଂପରା-ପରିଚିତା ଭିଲ୍ଲପତ୍ନୀମାନେ ଅନାଦର କଲେହେଁ କୁରଙ୍ଗୀଦୃଶା ରାଜପତ୍ନୀମାନେ ଅତି ସମାଦର ସହ ହୃଦୟ କ୍ଷେତ୍ରରେ ଧାରଣ କରିଥାନ୍ତି; ଯେଉଁମାନେ ସତ୍‌କ୍ରିୟାରହିତ ଏବଂ ବିପଥଗାମୀ, ସେମାନେ ଏ ସବୁ ସୁମହତ୍ ବିଷୟରେ ପଶି ନ ପାରନ୍ତି; ମାତ୍ର ତତ୍ତ୍ୱଦର୍ଶୀମାନେ ହୃଦୟଙ୍ଗମ କରିପାରିବେ ।

"ଗୁଞ୍ଜାପୁଞ୍ଜପରଂ ପରାପରିଚିତା ଭିଲ୍ଲିକନୈରୁଜ୍ଝିତଂ,
ମୁକ୍ତାଦାମ ସଦା ନ ଧାରୟତି କିଂ କଣ୍ଠେ କୁରଙ୍ଗୀଦୃଶାଂ ।"

ଅତଏବ ପୁସ୍ତକ-ନିର୍ଦ୍ଦିଷ୍ଟ ଭ୍ରମ ବିଷୟ୍ନ ସମାଲୋଚନା କରାଯାଉ । ଯେ କୌଣସି ବିଷୟ୍ନ ଅସଙ୍ଗତ ବୋଲି ପ୍ରମାଣ ହୋଇ ନ ପାରେ । ବର୍ତ୍ତମାନ ଜଗତସ୍ଥ ଅଧିକାଂଶ ବିପର୍ଯ୍ୟ-ତୋନ୍ମୁଖ ହେଲେହେଁ ସଜ୍ଜନମାନଙ୍କୁ ଅନୁରୋଧ କରେ, ଏ ସବୁ ବିଷୟକୁ ମନୋଯୋଗ ସହ ଅନୁଧାବନ କରନ୍ତୁ । ଯେ ବୈଜ୍ଞାନିକ

ଅଗତ୍ୟାରୁ କହିବ,—ମୁଁ ଅତି ଦୁର୍ଗନ୍ଧ ବିଷ୍ଠାରେ ଘାଣ୍ଟି ହୋଇ ମିଳାଇବି ପଛକେ ନିର୍ମଳ ହେବି ନାହିଁ, ତା ପ୍ରତି ନିରୁତ୍ତର । ଉକ୍ତ ପୁସ୍ତକଲକ୍ଷିତ ବିଷୟମାନ ସ୍ୱଦେଶୀ ବିଦେଶୀ ଶିକ୍ଷା ବିଶାରଦ ସତ୍‌ସାହିତ୍ୟଙ୍କଙ୍କ ପକ୍ଷରେ ତେତେ ଉପାଦେୟ ନ ହେଲେହେଁ ଅଧିକାଂଶ ସ୍ୱଦେଶୀ ଶିକ୍ଷିତଙ୍କ ପକ୍ଷରେ ଉପାଦେୟର ସମ୍ଭାବନା ।

ସ୍ଥୂଳ ଶରୀରର ରକ୍ଷା ଓ ପୁଷ୍ଟିସାଧନ ନିତାନ୍ତ ଆବଶ୍ୟକ । ସେ ସକାଶେ ଅର୍ଥବ୍ୟୟ ଓ ପରିଶ୍ରମ କରିବା ତ ସ୍ୱଭାବସିଦ୍ଧ; କିନ୍ତୁ ବ୍ୟତିକ୍ରମାତ୍ମକ କାର୍ଯ୍ୟ ଏବଂ ସର୍ବପ୍ରଧାନ କିଣ ? ଆଲୋଚନା କରାଯାଉ । ୧ମ ଦେହ ବିଭାଗ ଓ ୨ୟ ଦେହୀବିଭାଗ ।

---

## ୧ । ଦେହ ବିଭାଗ–ଚିକିତ୍ସା

ଚିକିତ୍ସା ଗୋଟିଏ କାର୍ଯ୍ୟ । ଚିକିତ୍ସକ, ବୈଦ୍ୟ ଓ ଡାକ୍ତରମାନେ ରୋଗୀମାନଙ୍କୁ ଚିକିତ୍ସା କରିଥାନ୍ତି । କର୍ମାନୁସାରେ କେତେକ ଆରୋଗ୍ୟ ହୁଅନ୍ତି, କେତେକ ହୁଅନ୍ତି ନାହିଁ । ଆଉ ମଧ୍ୟ କେତେକଙ୍କଠାରେ ଚିକିତ୍ସକ ଅମନୋଯୋଗ ବା ଅସାବଧାନରୁ ଆଉ କେତେକ ବିଷହସ୍ତା, ଅଜ୍ଞ, ଅନାଡ଼ିଙ୍କ ଦ୍ୱାରା ବିପରୀତ ଘଟିଥାଏ । ପୁଣି ଆଇନ ଏପରି ଯେ, ଅଜ୍ଞ ନାମଧାରୀ ଚିକିତ୍ସକ ଦ୍ୱାରା ରୋଗୀ ନଷ୍ଟ ହେଲେ ପ୍ରକାଶ କରିବା ଦୋଷାବହ । ସାଧାରଣ ଲୋକେ ବାଧ୍ୟ ହୋଇ ଲାଗିଥାନ୍ତି, ବହୁ ବ୍ୟୟ କରିଥାନ୍ତି ଏବଂ ଯତ୍ପରୋନାସ୍ତି ଚେଷ୍ଟାର ସୀମା ନ ଥାଏ ।

"ଅଜ୍ଞାନାଦ୍‌ବ୍ରହ୍ମଣୋ ଜାତମାକାଶଂ ବୁଦ୍‌ବୁଦୋପମଂ" ଶ୍ରୁତିଃ ।

ବ୍ରହ୍ମଙ୍କର ଅନିର୍ବଚନୀୟ ମାୟା ବା ଅଜ୍ଞାନରୁ ଜଗତ ସୃଷ୍ଟ ହୋଇଥିବାରୁ ସମସ୍ତେ 'ଅଜ୍ଞ'; ସୁତରାଂ ରୋଗର ପ୍ରତିକାର

କରିବା ବିଧେୟ । ରୋଗ, ଆୟୁର୍ବେଦ ବା ବୈଦ୍ୟଶାସ୍ତ୍ର ଏବଂ ଔଷଧ ଈଶ୍ୱରସୃଷ୍ଟ ହେଲେହେଁ ଶାସ୍ତ୍ରୋକ୍ତ ଅନୁସାରେ କରିବା ଉଚିତ ।

ସାମାନ୍ୟ ଝଡ଼ା, ଫଙ୍କ, ପତ୍ର, ଚେର, ଲତାମୁଦି, ସପ୍ରତିକାର ତଉଁରିଆ, ଅଗି ତାଳପତ୍ର ବା ଭୂର୍ଜପତ୍ର-ଚଠା, ସବିଶେଷ ମନ୍ତ୍ର ମନ୍ତ୍ରିତ ଘୃତ, ତୈଳ, ଜଳ ଏବଂ ସିଦ୍ଧପୁରୁଷ-ମାନଙ୍କର ଧୂନି ଧୂପ-ଭସ୍ମ କାମ୍ବା ଠିକିଏ ଧୂଳିରେ ଯେ ସବୁ ରୋଗ ଆରୋଗ୍ୟ ହେଉଥିଲା ମଧ୍ୟ ହେଉଛି, ତାହା ପରିବର୍ତ୍ତରେ ବର୍ତ୍ତମାନ ଶତ ଶତ ସହସ୍ର ସହସ୍ର ମୁଦ୍ରା ବ୍ୟୟ ହେଉଛି; ତେବେ ମଧ୍ୟ କେତେକଙ୍କୁ ଅଜୀବନ ଜାଗ୍ରତ ରହିବାକୁ ପଡ଼ୁଛି । ଠିକିଏ ଅପଥ୍ୟ ହେଲେ ରୋଗ ଲେଉଟି ପଡ଼ୁଛି । ବାତଜ୍ୱର ପ୍ରଭୃତି କେତେକ ଚିରରୋଗର ସପ୍ରତିକାର ଗୋଟିଏ ତଉଁରିଆ ଦେହରେ ରଖି ଯାଇଛୁ। ତା ଅପଥ୍ୟ କଲେ ମଧ୍ୟ ରୋଗ ଲେଉଟେ ନାହିଁ । ଯେଉଁ ଗୁଳ୍ମ ବା ପ୍ଳୀହା ରୋଗ ଶତ ଶତ ମୁଦ୍ରାରେ ଆରୋଗ୍ୟ ହେବା କଷ୍ଟକର ଓ ଦୁଃସାଧ୍ୟ ଏବଂ କେତେକ ଅସାଧ୍ୟ; ତାହା ବନ୍ତୁଳ କଦଳୀ ଖଜୁରିକଣ୍ଟା ପ୍ରୟୋଗ ଓ ସାମାନ୍ୟ ଚେର, କଲାବାଇଗଣରେ ଅନାୟାସସାଧ୍ୟ । ବହୁ ଅର୍ଥ ବ୍ୟୟାତ୍ମକ ବାଘ୍ର କୁକୁର, ବିଲୁଆ କାମୁଡ଼ା ବିଷ ବିନା ଅର୍ଥ ବ୍ୟୟ ମନ୍ତ୍ରଫୁଙ୍କ, ଗୋଡ଼ି ଲଟା, ସାମାନ୍ୟ ଗଛର ଠିକିଏ ପତ୍ର ଦ୍ୱାରା ଆରୋଗ୍ୟ ହେଉଛି । ବର୍ତ୍ତମାନ ସାକ୍ଷାତ କଥା, ଗୋଟିଏ ରୋଗୀକି ଦେଶୀୟ ଟୁଟ୍‌କା, କବିରାଜୀ ଚିକିତ୍ସା ଏବଂ ଡାକ୍ତର ଚିକିତ୍ସା ପରେ ଡାକ୍ତରଙ୍କ ମନ୍ତବ୍ୟ ହେଲା, "ଏହାଙ୍କୁ ଜେନେରଲ ହାସପାତାଲକୁ ନିଅ; ସେ ଅପରେସନ କରିପାରନ୍ତି; କିନ୍ତୁ ଆରୋଗ୍ୟ ସମ୍ଭାବନା କମ ।" ତାଙ୍କ କଥା ମଧ୍ୟ ସ୍ଥିର ହେଲା । ଏହି ସମୟରେ ଜଣେ ଆଗନ୍ତୁକ ସାମାନ୍ୟ ଲୋକ ଦେଖି ଠିକିଏ ତେଲ ମନ୍ତ୍ରି ଫୁଙ୍କିଦେଇ ଲଗାଇଦେବା ମାତ୍ରେ

ସେ ଅଚଳ ରୋଗୀ ତତ୍‌କ୍ଷଣାତ୍ ନିଜେ ଉଠି ବସିଲା ଓ ବର୍ତ୍ତମାନ ମଧ୍ଯ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଯାଇଛି । ଆଜି ମଧ୍ୟ ବହୁ ବ୍ୟୟଦ୍ୱାରା ନାମଯାଦା ବଡ଼ ବଡ଼ ଚିକିତ୍ସକ ଓ ଡାକ୍ତରମାନେ ଯେଉଁ ରୋଗୀ ପ୍ରତି ନିରାଶ ହୋଇ ଛାଡ଼ିଥାନ୍ତି, ତାକୁ ସାମାନ୍ୟ ଲୋକ ସାମାନ୍ୟ ଟୁଟୁକା ଓ ଅଳ୍ପାୟାସରେ ନିରୁଜ କରି ଦେବା ବହୁତ ଦେଖାଅଛି । ବିଶେଷତଃ କେତେକ ରୋଗ ଚିକିତ୍ସା ଦ୍ୱାରା ଆରୋଗ୍ୟ ହୁଏ ନାହିଁ ବରଂ ସ୍ଥଳବିଶେଷରେ ବଢ଼ିଥାଏ ଏବଂ ବିପରୀତ ଘଟେ ।

ପୂର୍ବେ ତାନ୍ତ୍ରିକ ଚିକିତ୍ସାଦ୍ୱାରା ଅତି ଦୁସାଧ୍ୟ ଓ ଅସାଧ୍ୟ ଉତ୍କଟ ରୋଗ ଅତି ସୂକ୍ଷ୍ମ ଓ ଆଶ୍ଚର୍ଯ୍ୟ ଭାବରେ ବରାବର ଆରୋଗ୍ୟ ହେଉଥିଲା । ସଦାଚାର ଓ ସତ୍‌କ୍ରିୟା ରହିତ ହେତୁ ସେ ଚିକିତ୍ସା ପ୍ରାୟ ଲୋପ କହିଲେ ଚଳେ । ବର୍ତ୍ତମାନ ଦାକ୍ଷିଣାତ୍ୟର ସ୍ଥଳବିଶେଷରେ ସାମାନ୍ୟ ଭାବରେ ଥିବା ଶୁଣାଯାଏ । ବିଶେଷତଃ ଗ୍ରହଶାନ୍ତି, ହୋମ, ଦାନ, ମନ୍ତ୍ର, ଜପ, ଅଭିଷେକ, ଦୈବାନୁଷ୍ଠାନ, ଗ୍ରହପୂଜାଦି ଦ୍ୱାରା ଅସାଧ୍ୟ ଓ ଦୁସାଧ୍ୟ ଅତି ଉତ୍କଟ ରୋଗ ଏବଂ ଅସାଧ୍ୟ କାର୍ଯ୍ୟମାନ ସୁସାଧନ ହୋଇ ପାରୁଥିଲା ଏବଂ ମୃତ୍ୟୁକୁ ମଧ୍ୟ କଚ୍ଛିଦନ ଘୁଞ୍ଚାଇ ଦିଆଯାଇ ପାରୁଥିଲା । ବର୍ତ୍ତମାନ ମଧ୍ୟ ହେଉଛି । ଏ ସବୁକୁ ଅବିଶ୍ୱାସ କରାଯାଇ ନ ପାରେ, ଯେ ହେତୁ ଅପବିତ୍ର କ୍ରିୟା ହେଲେହେଁ ନାଗାନ୍ତ ବିଦ୍ୟା ବା ଗୁଣୀ, ଗାରୁଡ଼ି, ଜଡ଼ି ମୂଳି, କୁହୁକ, ବାହୁଟି ପ୍ରଭୃତି କ୍ରିୟାଦ୍ୱାରା କେତେକ ବିଷାକ୍ତ ଓ ପ୍ରେତଗ୍ରାସାଦି ବିଷମ ଘଟନାମାନ ସୁସାଧ୍ୟ ହେଉଅଛି । ମନ୍ତ୍ରଦ୍ୱାରା ଫୁଙ୍କିଦେଲେ ମଧ୍ୟ ସର୍ପ-ଦଂଶନ-ସମ୍ବାଦ ବାହକକୁ ଗୁଡ଼ପୋଡ଼େ ମାଇଲେ ତେଣେ ବିଷ ଛାଡ଼ିଯାଏ । କୌଣସି କୌଣସି ଶସ୍ୟକ୍ଷେତ୍ରର ପୋକ ନିବାରଣପାଇଁ ଖଣ୍ଡେ ଚିଠି ଲେଖି ବାନ୍ଧିଦେଲେ ପୋକ ହୁଅନ୍ତି ନାହିଁ । ଗବାଦିଙ୍କି ବଗାଡ଼ିଦେବା, ସୁଧାର

ଦେବା, ଦୁଗ୍ଧ ଓ ସାର ହରଣ କରିବା, ବ୍ରଣ, କ୍ଷତାଦି ଧରିବା ଓ ଶୁଖାଇଦେବା, ଲୋକମାନଙ୍କୁ ବଣ-ଉଚ୍ଚାଟନ କରିବା, ହଇଜା ଲଗାଇଦେବା, ଛଡ଼ାଇଦେବା, ଏହି ସବୁ କୁକ୍ରିୟା ପ୍ରତ୍ୟକ୍ଷ ଦେଖାଯାଉଛି । ଆଉ ଦୈବକାର୍ଯ୍ୟ ଦ୍ୱାରା ବସନ୍ତ ଉପଦ୍ରବାଦି ବା ହଇଜା ବରାବର ଉପଶମ ହେଉଥିଲା । ପୂର୍ବେ କେବଳ ବସନ୍ତ ଋତୁରେ ବସନ୍ତ ଓ ଗ୍ରୀଷ୍ମ ସମୟରେ ହଇଜା ସାମୟିକ ବ୍ୟାପି ଯେତେ ସଂଖ୍ୟାରେ ଜନ ନଷ୍ଟ କରୁଥିଲା, ବର୍ତ୍ତମାନ ରୋଗ ବୋଲି ଚିକିତ୍ସା ହେବାରୁ ସବୁଦିନେ ଲଗି ରହୁଛି ଓ ତାହା ଅପେକ୍ଷା ବହୁ ସଂଖ୍ୟାରେ ଲୋକକ୍ଷୟ ଘଟୁଛି । ଏ ସବୁକୁ କେହି ଭାବୁ ନାହିଁ ।

ବସନ୍ତ, ହଇଜା, ଜ୍ୱର ପ୍ରଭୃତି ପ୍ରତ୍ୟେକର ଗୋଟିଏ ଗୋଟିଏ ଦେବୀ ଦେବାତ୍ମକ ବା ଦେବଯୋନି ବିଶେଷ ଅଧିଷ୍ଠାତ୍ରୀ ଦେବତା ବା ରୋଗପୁରୁଷ ଅଛନ୍ତି । ସେମାନଙ୍କ ଆରାଧନା, ସମୁଚିତ-ନୈବେଦ୍ୟାତ୍ମକ-ବଳୀ ବା ମୂଳମୂଳିକା ପରିବର୍ତ୍ତରେ ଟୀକା ପ୍ରଭୃତି ଦ୍ୱାରା ଯେ ବାରଣ କରାଯାଉଛି, ତାହା ହେଉଛି ନାନା ପ୍ରକାର—କି ସ୍ୱଦେଶୀ କି ବିଦେଶୀ ରୋଗ ପ୍ରବଳର ବିଶେଷ କାରଣ । ବଳିଷ୍ଠ ବ୍ୟକ୍ତିଙ୍କ ବିନୀତ ଓ ଆରାଧନା ପରିବର୍ତ୍ତେ ବାରଣ କରାଗଲେ ସମୟାନୁସାରେ ଯାହା ହୋଇପାରେ ଆଲୋଚନା କରାଯାଉ । ରୋଗ, ବସନ୍ତ, ଉପଦ୍ରବାଦି ଅଧିଷ୍ଠାତ୍ରୀ ଦେବଯୋନିଙ୍କ ହାଓ୍ୟା, ଭୟ, ସଂସର୍ଗ-ସଂକ୍ରମଣ, ଅପଥ୍ୟାଦି ଜନିତ ପୀଡ଼ା ସମୁଚିତ ପ୍ରତିକାର ଦ୍ୱାରା ଉପଶମ ହୋଇପାରେ । ସୂର୍ଯ୍ୟ-ଚନ୍ଦ୍ର ଉଦୟାସ୍ତ କାଳ ସଂଖ୍ୟାତ୍ମକ ଗ୍ରହରିଷ୍ଟ ବା ନିଶ୍ୱାସ ପ୍ରଶ୍ୱାସ ସଂଖ୍ୟାନିରୂପଣାନୁଯାୟୀ ମୃତ୍ୟୁ ନିରୂପଣ * ଥିଲେହେଁ ପ୍ରଜ୍ୱଳିତ-ପ୍ରଦୀପ ତୈଳ-ବର୍ତ୍ତିକା ସତ୍ତ୍ୱେ ବାତଘାତାଦି ଦ୍ୱାରା ନିର୍ବାଣପ୍ରାପ୍ତ ହେଲପରି ଆୟୁ ଥାଇ ମଧ୍ୟ ଉତ୍କଟ ପାପ, ଅନୁପଯୁକ୍ତ ଚିକିତ୍ସା, ଅପଥ୍ୟ ଓ

ସବିଶେଷ ଦୁର୍ଘଟନାଦିଦ୍ୱାରା ଲୋକର ଅପମୃତ୍ୟୁ ବା ଅକାଲମୃତ୍ୟୁ ଘଟିଥାଏ; କିନ୍ତୁ ସେ ଦେବଯୋନି ଯାହାକୁ ଧରନ୍ତି ତାକୁ ନିଅନ୍ତି । ସେ ସମ୍ପୃକ୍ତ ଦୈବାନୁଷ୍ଠାନାଦି ବ୍ୟତୀତ କଦାଚ ଆରୋଗ୍ୟ ହୁଏ ନାହିଁ । କେତେକ ବିଶିଷ୍ଟ ବୈଦ୍ୟ ଓ ଡାକ୍ତର ମଧ୍ୟ କହିଥାନ୍ତି,—ହଇଜା, ବସନ୍ତ, ଜ୍ୱରାଦି ରୋଗ ମାନଙ୍କର କେତେକ ପ୍ରକାର ଅସାଧ୍ୟ ରୋଗ ଅଛି, ଯେ କି ଚିକିତ୍ସାରେ କଦାପି ଆରୋଗ୍ୟ ହୁଏ ନାହିଁ । ପ୍ରକୃତରେ ସେ ହେଉଛି ଦେବଯୋନି ବା ରୋଗ-ପୁରୁଷର ଆକ୍ରମଣ । କେହି କେହି ତତ୍ତ୍ୱଦର୍ଶୀ ବୈଦ୍ୟ ପ୍ରକୃତ ରୋଗପୁରୁଷ ଆକ୍ରମଣ କରିଥିବା ରୋଗୀକି ଚିହ୍ନିପାରି କହିଥାନ୍ତି,—ଏ ରୋଗୀକି ଭଲ କରିଯାଇ ପାରେ; କିନ୍ତୁ ଏ ବଞ୍ଚିବ ନାହିଁ । ଏହାର ପ୍ରତ୍ୟକ୍ଷ ପ୍ରମାଣ ମଧ୍ୟ ମିଳିଛି ।

ବର୍ତ୍ତମାନ କାଳ ଓ ଅତୀତକାଳକୁ ଆଲୋଚନା କରିପାର । ଆଗେ ଚିକିତ୍ସା ସକାଶେ ଯେତେ ଚିକିତ୍ସକ ଏବଂ ଚିକିତ୍ସାଳୟ ଥିଲା ଓ ଯେତେ ଔଷଧ ବ୍ୟବହାର କରାଯାଉଥିଲା, ବର୍ତ୍ତମାନ ତାହାର ଶତ ଗୁଣରୁ ଅଧିକ; କିନ୍ତୁ ଶରୀର ପୂର୍ବ ଅପେକ୍ଷା ବୀର୍ଯ୍ୟପରମ୍ପରାଗତ କ୍ଷୀଣରୁ କ୍ଷୀଣତର ଆଉ ମଧ୍ୟ ଦୁଃସାଧ୍ୟ ରୋଗରେ ବିଶେଷ ଭାବରେ ଦୁଷ୍ଟ ଓ ଆକ୍ରମିତ । ଜଗତର ଧ୍ୱଂସପାଇଁ ସଦ୍‌ବିଷୟ ବିରୋଧୀ କେତେଗୁଡ଼ାଏ ଲୋକ ଆମଦାନୀ ହୋଇଛନ୍ତି ଯେ, ସେମାନେ ସାଧାରଣଙ୍କୁ ମ୍ଳେଚ୍ଛ ଏବଂ କ୍ଷୀଣ କରିବାପାଇଁ ସନାତନଧର୍ମ କ୍ରିୟାକୁ ସମୂଳେ ଧ୍ୱଂସ କରି ବିପରୀତ-ମତକୁ ଚଳାଇବା ନିମିତ୍ତ ପ୍ରାଣପ୍ରାଚୁର୍ଯ୍ୟିତ ହୋଇ ଲାଗିଛନ୍ତି । ସଦ୍‌ବର୍ଣ୍ଣ-ମାନଙ୍କର ଯଥୋପଯୁକ୍ତ ଗର୍ଭାଧାନାଦି ଅଭାବ ବା ସନ୍ଧ୍ୟାମାନ ଯାହା କି ଉପନୟନାଦି ସମୟରେ ଆଉ ଯଥାସାମୟିକ ନିତ୍ୟ-ନୈମିତ୍ତିକାଦି କର୍ମ ବିଂଶତିକ୍ରମ ହେଲେହେଁ ପ୍ରଚଳିତ ଅଛି । ସମୟକ୍ରମେ ପ୍ରକୃତ କାର୍ଯ୍ୟରେ ଅବା ପରିଣତ ହୋଇ

ପାରନ୍ତି, ବିଶେଷତଃ ଯାହାର ବ୍ୟତିକ୍ରମରୁ ଲୋକେ ପିତାଠାରୁ ପୁତ୍ର କ୍ରମଶଃ କ୍ଷୀଣ ଓ କ୍ଷୀଣତର ଏବଂ କ୍ଷୀଣତମ ଓ ମ୍ଳେଚ୍ଛ ହୋଇ ଯାଉଛନ୍ତି,—ତାକୁ ଉଠାଇ ତା ପରିବର୍ତ୍ତରେ ବିପରୀତ କ୍ରିୟାକୁ ଚଳାଇବାରେ ମଜ୍ଜିଛନ୍ତି । ଅଥଚ ସାଧାରଣଙ୍କ ଶ୍ରେୟ ବାହାନାରେ ସମସ୍ତଙ୍କୁ ଚପି ଧ୍ୱଂସ କରି ନିଜ ଶରୀର ପୁଷ୍ଟି ଓ ଇନ୍ଦ୍ରିୟଲାଳସାର ଚରିତାର୍ଥ ପାଇଁ କୁଣ୍ଠାମାତ୍ରର ସୀମା ନାହିଁ । କିନ୍ତୁ ଭାରତୀୟ ସନାତନ ଧର୍ମଶାସ୍ତ୍ରୋକ୍ତ ଜଡ଼ୋପକାରୀ କ୍ରିୟାର କେତେକ ଶ୍ରେୟ ବୁଝିପାରି ଆମେରିକା ପ୍ରଭୃତି କେତେକ ବିଦେଶୀ ବିଧର୍ମୀମାନେ ତାହା ଅନୁକରଣ କରିବାର ଶୁଣାଯାଏ । ଉପଦଂଶାଦି ଧାତୁ ସମ୍ବନ୍ଧୀୟ ରୋଗ ଆମ୍ଭ ଦେଶରେ ପୂର୍ବେ ଆଦୌ ନ ଥିଲା, ତେଣୁ ପୁରାତନ ନିଦାନଗ୍ରନ୍ଥରେ ତାହାର ଉଲ୍ଲେଖ ନାହିଁ । ଫିରିଙ୍ଗିଙ୍କଠାରୁ ସେ ରୋଗ ଆମଦାନୀ ହୋଇ-ଥିବାରୁ ପରବର୍ତ୍ତୀ 'ଭାବପ୍ରକାଶ' ପ୍ରଭୃତି ନିଦାନରେ ତାହା ଫିରଙ୍ଗ ରୋଗ ବୋଲି ଉଲ୍ଲେଖ ହୋଇଛି । ଏହାର ପ୍ରକୃତ କାରଣ ହେଉଛି, ଆମ ଦେଶୀୟ ନିୟମାତ୍ମକ ପାପ ପ୍ରବୃତ୍ତି ବା ବ୍ୟଭିଚାରଶୂନ୍ୟ ଏବଂ ସନାତନ ଧର୍ମଶାସ୍ତ୍ରୋକ୍ତ ପୂର୍ବ ପ୍ରଚଳିତ ଜଳ ମୃତ୍ତିକାଦି ଦ୍ୱାରା ସବିଧି ଶୌଚ । ( ଜଳଚକିତ୍ସା ତାହାର କନ୍ଥିତ ଅଭାଷ ମାତ୍ର ) । ବିଶେଷତଃ ଭାରତୀୟଙ୍କ ରକ୍ତ-ଶୋଷିତ ଲକ୍ଷ ଲକ୍ଷ କୋଟି କୋଟି ଟଙ୍କା ବିନିମୟରେ ଭାରତୀୟଙ୍କ ଧାତୁର ବିପରୀତାତ୍ମକ ବିଦେଶୀୟ ଡାକ୍ତରୀ ଔଷଧ ସେବନ, ତେଣୁ ନୂତନ ନୂତନ ନାନାପ୍ରକାର ବିଦେଶୀୟ ରୋଗର ସଂକ୍ରମଣ । ବିଶେଷତଃ ସତ୍‌କ୍ରିୟାରହିତ ଓ ପାପ ପ୍ରବଳତା; କିନ୍ତୁ ଏହା ମାନିବାକୁ ଅଧିକାଂଶ ଆଧୁନିକ ଶିକ୍ଷିତମାନେ କୁଣ୍ଠିତ । ଜଳ, ମୃତ୍ତିକା, ବାୟୁ ନେଇ ଦେଶ ପ୍ରଦେଶ ବା ଯେଉଁ ସ୍ଥାନରେ ଯେଉଁ ଖାଦ୍ୟ ଶସ୍ୟ ବା ମୂଳମୂଳିକାଦି ଉତ୍ପନ୍ନ, ସେ ଦେଶୀୟଙ୍କ

ପକ୍ଷରେ ତାହା ଯଥୋପଯୁକ୍ତ ଉପାଦେୟ ଓ ହିତକର; କିନ୍ତୁ ଆମ ଦେଶୀୟ କେତେକ ସ୍ୱଦେଶୀ ଔଷଧ ନାମ ଶୁଣି ଅନେକେ ବିରକ୍ତ ହୋଇ ଉଠିଥାନ୍ତି । ବିଦେଶକୁ ଟଙ୍କା ଗଣି ଡାକ୍ତରୀ ଔଷଧ ଖାଇ ଅମରତ୍ୱ ଲଭିବେ ପରା ! କିନ୍ତୁ କେହି କେହି ପ୍ରଧାନ ଡାକ୍ତର ନୀରସ୍ତ ହୋଇ ଯେଉଁ ରୋଗୀକୁ ଛାଡ଼ିଥାନ୍ତି, ତାକୁ ଦେଶୀ ବୈଦ୍ୟ ଆରୋଗ୍ୟ କରିବାର ଶୁଣିପାରି କେତେକଙ୍କର ଭାରି ରାଗିବା ଶୁଣାଅଛି । (ବିସ୍ତୃତ ବିଷୟ ନିବେଦନ ପୁସ୍ତକାନ୍ତର୍ଗତ ଚିକିତ୍ସାବିଧି ଦ୍ରଷ୍ଟବ୍ୟ)।

ଭାରତୀୟ ବିଶେଷତଃ ସନାତନଧର୍ମୀ ବଂଶୀୟଙ୍କ ପ୍ରତି ବର୍ତ୍ତମାନ ପ୍ରଚଳିତ ରାଜଶାସନ ଅନୁପଯୁକ୍ତ ହେତୁ ପୂର୍ବ ପ୍ରଚଳିତ ସମାଜବନ୍ଧନ ଓ ଧର୍ମବିଶ୍ୱାସ ବ୍ୟତିକ୍ରମରୁ ଯଥେଚ୍ଛାଚାର, ବ୍ୟଭିଚାର, ସାଧାରଣୀ-ପ୍ରଥା, ମଦ୍ୟ, ନିଷିଦ୍ଧାଶନ, ଅମ୍ଳ ଗ୍ରୀଷ୍ମପ୍ରଧାନ ଦେଶ ପ୍ରତି ଅପରଦା ପ୍ରଥା ଓ ସ୍ତ୍ରୀ ସ୍ୱାଧୀନତା ପ୍ରଭୃତି ଅତି ଅନିଷ୍ଟକର,—ଏ ପତନର କାରଣ ହୋଇପଡ଼ିଛି । ଏହି ସବୁ ବ୍ୟତିକ୍ରମରୁ ବୀର୍ଯ୍ୟର ବୀର୍ଯ୍ୟତ୍ୱହୀନ ହୋଇ ମାନବମାନେ କ୍ଷୀଣରୁ କ୍ଷୀଣତର ହେଉଛନ୍ତି । ସ୍ୱର୍ଣ୍ଣ, ରୌପ୍ୟାଦିରେ ଶରୀର ସର୍ବୋପଯୋଗୀ ବିଶେଷତ୍ୱ ଗୁଣ ଥିଲେହେଁ ସାଧାରଣ ବ୍ୟବହାର୍ଯ୍ୟ ପଦାର୍ଥ, ଯଥା—ଖାଦ୍ୟ ସଂଗ୍ରହ ସର୍ବପ୍ରଧାନ । ରାଜମୁକୁମନିହିତ ଖଣ୍ଡେ ତୁଚ୍ଛ କାଗଜ ବା ନୋଟରେ ସେ ମାହାତ୍ମ୍ୟ ଅଛି । ସେ ଯାହା ହେଉ ସର୍ବପ୍ରଧାନ ହେଉଛି ଖାଦ୍ୟାନ୍ୱେଷନ, ଯଦ୍ଦ୍ୱାରା ଶରୀର ପୁଷ୍ଟି ହୁଏ ଓ ରହେ । ଜଗତରେ ଯେ ସମସ୍ତ କାର୍ଯ୍ୟ ହେଉଛି, ତାହା ଶରୀରୀ ସକାଶେ ତ ପ୍ରାୟ କିଛି ହେଉ ନାହିଁ; କେବଳ ଶରୀରୋପ-ଯୋଗୀ ଖାଦ୍ୟ ସକାଶେ ହେଉ ନାହିଁ କି ? 'କେବଳ ପାଳ ମୋ ଉଦର, ତେଣୁ ମୁଁ ଲୋକେ ଭୟଙ୍କର ।' ଯାହା ହେଉ, ଦେହ ଯନ୍ତ୍ରରେ ସେ ଖାଦ୍ୟର ପରିଣାମ ଅସାର ଭାଗ ମଳ-ମୂତ୍ରାଦି

ହେଲେହେଁ ସାରାଂଶ କ୍ରମଶଃ ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା ଓ ସର୍ବଶ୍ରେଷ୍ଠ ସାର ରେତ । ଏ ସବୁର ସର୍ବଶ୍ରେଷ୍ଠ—ସାର ସେ ରେତ ବା 'ବୀର୍ଯ୍ୟ' ସମୁପଯୁକ୍ତ ଗର୍ଭାଧାନ ବ୍ୟତୀତ ସମ୍ପ୍ରାହାତ୍ମକ ବ୍ୟର୍ଥରେ ନିର୍ଗତ କରାଯାଏ; ତେଣୁ ବୀର୍ଯ୍ୟର ବୀର୍ଯ୍ୟତ୍ୱହୀନ ହୋଇ ଆଉ ସଦାଚାର ଓ ସତ୍କର୍ମାଚରଣର ଅବହେଳାରୁ ଶରୀର କ୍ଷୀଣରୁ କ୍ଷୀଣତର ଓ କ୍ଷୀଣତମ ହୋଇ ଓଜହୀନ ଓ ରୋଗାକ୍ରାନ୍ତ ହେବା ନିଶ୍ଚିତ । ନିକଟ ପୂର୍ବେ ନାମ ମାତ୍ରକ ଶୁଣା ନ ଥିବା ଫିରଙ୍ଗ-ରୋଗ ବା ଉପଦଂଶାଦି ବ୍ୟାପିଗଲାଣି; ଉପରୋକ୍ତ ନିଷିଦ୍ଧ ବ୍ୟବହାରରୁ ଓ ହିନ୍ଦୁପକ୍ଷେ (ପଳ=ମାଂସ 'ଶ୍ଳେଷ୍ମାମୟ' ଅର୍ଥାତ୍ ଗୋ-ମାଂସ=ଅଣ୍ଡ ସମ୍ବନ୍ଧୀୟ ମାଂସ, ଯଥା ପଲାଣ୍ଡୁ ) ପିଆଜ ବ୍ୟବହାରରୁ କୁଷ୍ଠରୋଗ ବହୁପରିମାଣରେ ବ୍ୟାପିଗଲାଣି 'ହିନ୍ଦୁ ନ ଖାଏ ପିଆଜ, ମୁସଲ୍ମାନ ନ ଖାଏ ବିଆଜ' ।

ଏବେ କୁଷ୍ଠରୋଗାନୁସନ୍ଧାନୀ ପ୍ରଧାନ ଡାକ୍ତର ଗଣନା ଦ୍ୱାରା ନିର୍ଣ୍ଣୟ କରିଅଛନ୍ତି ଯେ, ଲୋକସଂଖ୍ୟାନୁସାରେ ହିନ୍ଦୁଙ୍କ ଅପେକ୍ଷା ମୁସଲ୍ମାନଙ୍କ ମଧ୍ୟରେ ଅପେକ୍ଷାକୃତ କୁଷ୍ଠରୋଗୀ ସଂଖ୍ୟା କମ; କିନ୍ତୁ ତାହାର କାରଣ ନିର୍ଣ୍ଣୟ କରିପାରି ନାହାନ୍ତି । ପ୍ରକୃତ କଥା ଏହି ଯେ; ଗୋ-ମାଂସ ପରିଣତ ପିଆଜ ଗୋ ମାଂସସେବୀଙ୍କ ସମଖାଦ୍ୟ ସମ୍ବନ୍ଧ ହେତୁ ତେତେ ଦୋଷାବହ ନୁହେ । ବର୍ତ୍ତମାନ ହିନ୍ଦୁ ସମାଜରେ ପିଆଜ ବ୍ୟବହାରକୁ ଅନୁମାନ କଲେ ସମଯୁକ୍ରମେ ସମସ୍ତେ କୁଷ୍ଠରୋଗାକ୍ରାନ୍ତ ହେବା ଅସମ୍ଭବ ନୁହେ । ଆଧ୍ୟାତ୍ମିକ ଭାବ ତ ମୂଳପୋଛ । ବିଶେଷତଃ ଏହିପରି କେତେକ ସନାତନ ଧର୍ମଶାସ୍ତ୍ରୋକ୍ତ ବିଧି ନିଷେଧକୁ ଜନ୍ମାନ୍ତର ବିକୃତ ହିନ୍ଦୁ ବିଦେଶୀୟ ଜଡ଼ ବୈଜ୍ଞାନିକ ପାଳିତି ଅନୁସନ୍ଧାନଦ୍ୱାରା ହିନ୍ଦୁଧର୍ମଶାସ୍ତ୍ରୋକ୍ତ କେତେକ ବିଷୟର ଗୁଣ ଓ ଦୋଷ ନିର୍ଣ୍ଣୟ

କର ନିଜର ବାହାଦୁରୀ ପ୍ରଚାର କରଥାନ୍ତି । ପ୍ରଥମରେ ଯେଉଁ ହିନ୍ଦୁ ତାହାର ନିର୍ଯ୍ୟାସ ନିର୍ଣ୍ଣୟ କଲେ, ସେ ତହାର ଗୁଣ ଦୋଷ ଗୁପ୍ତ ରଖି ଧର୍ମଦ୍ରୋହୀ ବୋଲି ଲେଖିଗଲେ କାହିଁକି ? ଗୁଣ-ଦୋଷ ପ୍ରକାଶଦ୍ୱାରା ଧର୍ମବିଶ୍ୱାସ ଶିଥିଳ ହେବା ସମ୍ଭବ । ଯାହା ହେଉ ଶାସ୍ତ୍ରବିଧି ଲଙ୍ଘନ କଲେ ଇହ-ପରକାଳ ଶ୍ରେୟ ସକାଶେ ଶରୀର ସମୁଚିତ ସକ୍ଷମ ହୋଇ ନ ପାରେ । ସେ ଯାହା ହେଉ ଗବାଶୀଙ୍କ ରକ୍ତ ତୀକ୍ଷ୍ଣ ଓ ବିକୃତ, ପିଆଜର ଗୁଣ ମଧ୍ୟ ତୀକ୍ଷ୍ଣ, ତେଣୁ ତୀକ୍ଷ୍ଣରେ ତୀକ୍ଷ୍ଣ ଗୋଖାଦକଙ୍କ ପକ୍ଷେ ତେତେ ଅନିଷ୍ଟକର ନୁହେଁ; କିନ୍ତୁ ଶାନ୍ତି-ଭାବ ବିରୋଧୀ । ହିନ୍ଦୁଙ୍କ ରକ୍ତ ଶାନ୍ତ ଅତଃ ଶାନ୍ତରେ ତୀକ୍ଷ୍ଣ ମିଶି ଅନିଷ୍ଟ କରିଥାଏ । ଅତଏବ ସାବଧାନ ! ସନାତନ ଧର୍ମ-ଶାସ୍ତ୍ରୋକ୍ତ ବିଧିରେ ଚଳିଲେ କୌଣସି ରୋଗ ସକାଶେ ଔଷଧର ଆବଶ୍ୟକ ନାହିଁ ଅର୍ଥାତ୍ ରୋଗ ହେବ ନାହିଁ । ବିପରୀତାଚରଣ କଲେ ଔଷଧର ପ୍ରୟୋଜନ ନାହିଁ ଅର୍ଥାତ୍ ଇହ-ପରକାଳ ଶ୍ରେୟ ସକାଶେ ଶରୀର ସମୁଚିତ ସକ୍ଷମ ହୋଇ ନ ପାରେ ।

"ପଥ୍ୟେସତି ଗଦାର୍ତ୍ତସ୍ୟ କିମୌଷଧ ନିଷେବଣଂ
ପଥ୍ୟେଽସତି ଗଦାର୍ତ୍ତସ୍ୟ କିମୌଷଧ ନିଷେବଣଂ ॥"

ଉପରୋକ୍ତ ସମସ୍ତ ନିଷିଦ୍ଧ କାର୍ଯ୍ୟ ପାପ-କ୍ରିୟା ବୋଲି ନିରୂପିତ ହୋଇଥିଲେହେଁ, କେହି କେହି ଇନ୍ଦ୍ରିୟପରାୟଣ ଉଦ୍ଧତ ଲୋକ ଉପରୋକ୍ତ ଯେ କୌଣସି ନିଷିଦ୍ଧ କର୍ମରେ ଅଜ୍ଞ ବା କାମାନ୍ଧ ରିପୁବଶରେ ପ୍ରବୃତ୍ତ ହୋଇପଡ଼ିଲେ ଧର୍ମବିଶ୍ୱାସ ଓ ସମାଜ ଶୃଙ୍ଖଳା ହେତୁ ତାହାର ପ୍ରତିକାର ସ୍ୱରୂପ ଶାସ୍ତ୍ରାନୁସାରେ ସମ୍ପ୍ରଯୁକ୍ତ କଠିନ ସାଧନାତ୍ମକ ବ୍ରତ ପାଳନ କରି ସେ ପାପରୁ ମୁକ୍ତ ଓ ପବିତ୍ର ହେଉଥିଲେ । ତଦ୍ୱାରା ଦେହ ଉପଯୁକ୍ତ ଓ ଦେହୀର ଉନ୍ନତି ହେଉଥିଲା । ଯଗାନୁସାରେ ସତ୍ତ୍ୱ କ୍ଷୀଣ ହେତୁ ବିଶେଷତଃ ଲୋକଶିକ୍ଷା ସକାଶେ ସ୍ୱ-ସମାଜ, କୁଟୁମ୍ବ, ବନ୍ଧୁବାନ୍ଧବ,

ଗୁରୁ, ପୁରୋହିତ, ବ୍ରାହ୍ମଣ ଓ ରାଜ୍ୟଶାସକମାନଙ୍କ ଅନୁମତି ଓ ସମକ୍ଷରେ ସଭା କରି ଧର୍ମଶାସ୍ତ୍ରୋକ୍ତ-ବୃତ୍ତାନ୍ତକଲେ ପ୍ରାୟଶ୍ଚିତ୍ତ, ପଞ୍ଚଗବ୍ୟ, ଧେନୁ ବା ଧେନୁ-ମୂଲ୍ୟ ଉତ୍ସର୍ଗ କରି ସମାଜରେ ଚଳୁଥିଲେ । ତାହା ଏକ ପ୍ରକାର ମଙ୍ଗଳଜନକ ଥିଲା । ବର୍ତ୍ତମାନ ବିଧର୍ମୀମୂଳକ ଶିକ୍ଷା ଓ ଶାସନ ଏବଂ ସମାଜବନ୍ଧନ ଶିଥିଳତା ହେତୁ ସେ ମଧ୍ୟ ଉଠିବା ଉପରେ ବା ଲୋପ କହିଲେ ଚଳେ । ଅତଃ ସଂସର୍ଗ ହେତୁ ପ୍ରାୟ ସମସ୍ତେ କ୍ଷୀଣରୁ କ୍ଷୀଣତର ଏବଂ ମ୍ଳେଚ୍ଛମୟ ହେଉଛନ୍ତି । "ଅପରେ କିଂ ଭବିଷ୍ୟତି" ସାବଧାନ । ଶୀତ ପ୍ରଧାନ-ଦେଶସ୍ଥ ବା ସେମାନଙ୍କ ସ୍ଥୂଳ-ଶରୀର ପକ୍ଷରେ ଉପରୋକ୍ତ ନିଷିଦ୍ଧ ପ୍ରଥା ସେମାନଙ୍କ ସ୍ଥୂଳ ଶରୀର ପ୍ରତି ତେତେଦୂର ଅନିଷ୍ଟକର ନ ହେଲେହେଁ ମଙ୍ଗଳଜନକ ନୁହେ । ବ୍ୟଭିଚାର କିମ୍ବା ସ୍ଥୂଳଦେହ କ୍ଷୀଣକର, ଉପଦଂଶାଦି ରୋଗୋତ୍ପାଦକ, ବିଶେଷତଃ ଦେହାନ୍ତେ ଦେହୀର ପାପାତ୍ମକ-ନର୍କଭୋଗ-ଜନକ । ଅତଃ ଉକ୍ତ ଅବସ୍ଥାରେ କେହି କେହି ହିନ୍ଦୁ ଧର୍ମ-ବିଶ୍ୱାସୀ ଭାରତୀୟ ପୁରୁଷନାମା ପ୍ରତିକାର ପାଇଁ ବ୍ୟଭିଚାରକୁ ପ୍ରକାଶ କରିଥାନ୍ତି; କିନ୍ତୁ ସାଧାରଣ ବ୍ୟତୀତ ସ୍ତ୍ରୀ ଜାତି କଦାଚ ପ୍ରକାଶ କରନ୍ତି ନାହିଁ; ମାତ୍ର ବିଧର୍ମୀ ଓ ବିଦେଶିନୀ ପ୍ରକାଶ କରିବାକୁ ପ୍ରାୟ କୁଣ୍ଠିତ ହୁଅନ୍ତି ନାହିଁ । କେତେକ 'ଆରବ୍ୟ ଉପନ୍ୟାସ' ଚମକ ଓ ଉଷ୍ଣପ୍ରଧାନ ଦେଶ ପ୍ରତି ଉପଦଂଶ ସଂଚାର ଭୟରେ ନିଜ ଘରେ ତୀକ୍ଷ୍ଣ-ଦୃଷ୍ଟି ରଖିଥାନ୍ତି । ସେ ଯାହା ହେଉ ଏ ସବୁ ଚକ୍ଷୁସ୍ପାଦ ବିଷୟକୁ ଆଲୋଚନା କଲେ ପ୍ରଚଳିତ ଚିକିତ୍ସା ଭ୍ରମ ନୁହେ କି ?

## ୨ । ଦେହ ବିଭାଗ—ମକଦ୍ଦମା

ମକଦ୍ଦମା କଥା ବିଚାର କରାଯାଉ । ବାଦୀ ଓ ପ୍ରତିବାଦୀଙ୍କ ସପକ୍ଷରେ ଉଦ୍‌ଯୋଗୀ ବା ସାହାଯ୍ୟକାରୀ ଓ ସାକ୍ଷୀ ଢେର । ଓକିଲ, ମୁକ୍ତାର, ବାରିଷ୍ଟରମାନେ ମସ୍ତ୍ୟାଶୀ ବକପରି ଠାକିବସିଛନ୍ତି,

ପକ୍ଷ ହାତରେ ପଡ଼ିଲେ ପାରୁପର୍ଯ୍ୟନ୍ତ ମକଦ୍ଦମା ଲଢ଼ନ୍ତି । ସ୍ୱପକ୍ଷ ସମର୍ଥନ ପାଇଁ ସାକ୍ଷିମାନଙ୍କୁ ମିଥ୍ୟା ଶିକ୍ଷା ଓ କୁଶିକ୍ଷା ଦେବାର ସୀମା ନ ଥାଏ । ହେଲେହେଁ ଡ଼ିକ୍ରୀ-ଡ଼ିସ୍‌ମିସ୍ କେତେଠାରେ ବିପରୀତ ଘଟିଥାଏ । ସ୍ଥଳ ବିଶେଷରେ ଜବାନବନ୍ଦୀ ଓ ଜବାବସୁଆଲ୍ ବ୍ୟତିକ୍ରମ ହେତୁ ଉପର ମିଶଲ୍‌ରେ ବିପରୀତ ଘଟିଯାଏ; ତହିଁରେ ବିଚାରକ ଏବଂ ଓକିଲ ପ୍ରଭୃତିଙ୍କର ଦୋଷ ଧରା ହୁଏ ନାହିଁ । କିନ୍ତୁ ଅଙ୍କ ବା ଆଇନ ଅନଭିଜ୍ଞ ପକ୍ଷମାନଙ୍କର ସତ୍ୟ କଥାରେ ମଧ୍ୟ ଆଇନଗତ ଠିକ୍‌ଏ ଭୁଲ୍‌ରେ କଡ଼ାଦଣ୍ଡ ବା ଜରିମାନା ହୋଇଥାଏ । ସୁତରାଂ ରାଜବିଚାର ସମ୍ବନ୍ଧୀୟ ଆଇନ ସଙ୍ଗତ ବୋଲି ବୋଧ ହେଉ ନାହିଁ ବା ତାକୁ ପଢ଼ିଥିବା ବିଚାରକ, ଓକିଲ, ମୁକ୍ତାର, ବାରିଷ୍ଟରମାନେ ସମ୍ୟକ୍‌ବୋଧ ହୋଇଥିବା ତଥୈବଚ । ବିଶେଷତଃ ସବୁ ବିଷୟରେ ପରୀକ୍ଷା ତ କୁଟନୀତି ବା ଠକେଇ ପ୍ରଥା; ଯତଃ ପ୍ରଶ୍ନର ଚାରିପଣ ଉତ୍ତର ଦେଲେ ମଧ୍ୟ ସହାନୁଭୂତିରେ ପାସ୍ ହୋଇଯାଏ । ବର୍ତ୍ତମାନ ରାଜବିଚାର ଯେପରି, ତହିଁରେ ମକଦ୍ଦମା ଲଢ଼ାଉଥିବ । ନଚେତ୍ ଏକମାତ୍ର ବିବାଦୀୟ ବିଷୟ ଉପରକୁ ସ୍ତର ସ୍ତର ହୋଇ ଉଠି ଡ଼ିକ୍ରୀ ଡ଼ିସ୍‌ମିସ୍ ଡ଼ିକ୍ରୀ ଡିସମିସ୍ ହେଉଥାନ୍ତା କି ? ଚରଚକ୍ଷୁ ବିହୀନ ଅବାଧ ରାଜବିଚାର—କମଳପାକ ବାଲ । 'ଗୋଦର ଟେଲି ଗୋଡ଼ତଳକୁ ଚାହାଁ ।' ମକଦ୍ଦମା ସମ୍ବନ୍ଧରେ ଉଭୟପକ୍ଷ, ସାହାଯ୍ୟକାରୀ, ଓକିଲ ପ୍ରଭୃତି କେହି ହେଲେ ମକଦ୍ଦମା ଡ଼ିସ୍‌ମିସ୍ ହେବ ବୋଲି ଭାବିଥାନ୍ତି ନା କହୁଥାନ୍ତି କି ? ଉଭୟପକ୍ଷ ମଧ୍ୟରୁ ଗୋଟିଏ ପକ୍ଷର ଡ଼ିସ୍‌ମିସ୍ ଓ ଗୋଟିଏ ପକ୍ଷର ଡ଼ିକ୍ରୀ ହେବା ତ ନିଶ୍ଚୟ । ପ୍ରବାଦ ଅଛି, ମକଦ୍ଦମାରେ ଜିତିଲେ ହାରିଲା, ହାରିଲେ ମଲା । ଯେ ଜିତିଲା ସେ କେତେ ଖର୍ଚ୍ଚାନ୍ତ, ହଟହଟା ହୋଇଥାଏ, ତାହା ପୂରଣ ହୋଇପାରେ ନାହିଁ । ଯେ ହାରିଲା ସେ ସେହିପରି ହଟହଟା, ଖର୍ଚ୍ଚାନ୍ତ ପୁଣି ବିପକ୍ଷକୁ

ତାହାର ପ୍ରାପ୍ୟ ଓ କ୍ଷତିପୂରଣ ଦେଇ ସର୍ବସ୍ୱାନ୍ତ ହୋଇଥାଏ । ମକଦ୍ଦମାଖୋରମାନେ ନିଜେ ଧ୍ୱଂସ ହେବାକୁ ଏବଂ ଅନ୍ୟକୁ ତଳିତଳାନ୍ତ କରିବା ପାଇଁ ବହୁ ଅର୍ଥବ୍ୟୟଦ୍ୱାରା ପ୍ରାଣ ପ୍ରାୟଶ୍ଚିତ୍ତ ହୋଇ ଲଗିଥାନ୍ତି । ଡ଼ିସ୍‌ମିସ୍‌ ହେଲେ କାହା ଉପରେ ଦୋଷାରୋପ ବା ଉଁ ଚୁଁ ହେବାର ଜୋର ନ ଥାଏ ।

ଆଗେ ଏହି ସବୁ ମକଦ୍ଦମା ସମ୍ବନ୍ଧୀୟ ଘଟନାରେ ରାଜା ବା ରାଜବିଚାରକମାନେ ଚରଚକ୍ଷୁ ସାହାଯ୍ୟରେ ବା ସରଜମିନ ତଦାରଖ କରି, ଅତର୍କିତ ଭାବରେ ପ୍ରକୃତ ମର୍ମ ବୁଝି ବିବାଦୀୟ ପ୍ରକୃତ ଘଟନାକୁ ମୀମାଂସା କରି ଦେଉଥିବାରୁ ପ୍ରକୃତ ଘଟନା ନେଇ ଦୋଷୀ ସମୁଚିତ ଦଣ୍ଡ ପାଉଥିବା ହେତୁ ଅଶାନ୍ତି ବଢ଼ୁ ନ ଥିଲା ଓ ମକଦ୍ଦମା ସଂଖ୍ୟା ଖୁବ୍‌ କମ ଥିଲା । ବିଶେଷତଃ ଗ୍ରାମବାସୀ, ଜମିଦାର ବା ମକଦ୍ଦମ କିମ୍ବା ବିଶିଷ୍ଟ ବ୍ୟକ୍ତିମାନଙ୍କ ସାମନାରେ ପଡ଼ି, ସ୍ଥଳ ବିଶେଷରେ ଦୋଷର ତାରତମ୍ୟାନୁଯାୟୀ କାଇଲମାକୁଲ, ମାନିବୃତ୍ତି ହୋଇ ହାତଧରା, ବିନୀତ ବା ଦୁଇଗୁଣ ପଇସା ଠାକୁରଘରକୁ ଜୋରିମାନା ଦେଇ ଓ ସ୍ଥଳ ବିଶେଷରେ କେବଳ କ୍ଷତିପୂରଣ ଦିଆ ନିଆ ହୋଇ ନିସ୍ପତ୍ତି ହୋଇ ଉଭୟପକ୍ଷ ମିଳି ମିଶି ଯାଉଥିଲେ । ବର୍ତ୍ତମାନ ମକଦ୍ଦମାରେ ପୁନ ପୌନାଦିକମେ ମନାନ୍ତର ତୁଟୁ ନାହିଁ । ବିଶେଷତଃ ଯେ ମକଦ୍ଦମାରେ ଖୁସି ହୋଇଗଲା, ସେ ବଜାର ମଧ୍ୟରେ ସୁରାପାନାଦି ବା ଖଟରେ କିଛି ଅର୍ଥ ପ୍ରାୟଶ୍ଚିତ୍ତ କରି ଉପଦଂଶାଦି ରୋଗ ମଧ୍ୟ ଅମଦାନୀ କରିଥାଏ । ଅତଃ ଅନ୍ୟାନ୍ୟ ସ୍ଥଳରେ ଏହି ସବୁ କୁକ୍ରିୟା ଓ ରୋଗ ସଞ୍ଚାର ହେଉଅଛି । ପୂର୍ବେ ବିବାଦୀୟ ବା ଧାରକରଜ ପ୍ରାପ୍ୟ ବିଷୟରେ ହକଦାରର କିଛି ହାନି ହେଲେ ମଧ୍ୟ ଅପରପକ୍ଷ ଯେପରି ଯଥାଶକ୍ତିରେ ' ଚଳିପାରିବ ତାହା ରହୁଥାଏ; କିନ୍ତୁ ବର୍ତ୍ତମାନ ରାଜ ବିଚାରରେ ଯେତେ ସମ୍ପତ୍ତିଶାଳୀ ହୋଇଥିଲେହେଁ,

ପଢ଼ିବା ପାଇଁ ସାତଗୃଖଣ୍ଡ ଜାଗା ବା ଚୂଲମୁଣ୍ଡ ମଧ୍ଯ ରହେ ନାହିଁ । ଏକନ୍ମ ନିକାଲ, ଧନ୍ୟ ଏ ବିଗୁର !

ନମ୍ବରୀ, ଫୌଜଦାରୀ ମକଦ୍ଦମାରେ ଯେତେ ଅର୍ଥ ବ୍ୟୟ, ପରିଶ୍ରମ ଓ ହଟହଟା ହେବାକୁ ପଡ଼ିଆଏ, ତାହା ତ ବର୍ଣ୍ଣନାତୀତ । ଧରିବକା ମହାଜନୀ ଓ ଦଶଆଇନ ନାଲିସର ଗୋଟିଏ ଗୋଟିଏ ଲଢ଼ାଇ ମକଦ୍ଦମାରେ ଯେତେ ଖର୍ଚ୍ଚାନ୍ତ ଓ ସମୟ ନଷ୍ଟ ହୋଇଥାଏ ଓ ହଟହଟା ହେବାକୁ ପଡ଼ିଥାଏ, ତାହା ଭାବିଲେ ଆଶ୍ଚର୍ଯ୍ୟ ବୋଧହେବ । ଶତକଡ଼ା ୫ ୨୫୯ ସୁଧ ହାରର ମୂଳ ୩୦ ଟଙ୍କାର ଗୋଟିଏ ତମସୁକ ନାଲିସ ଲଢ଼ାଇ ମକଦ୍ଦମାରେ ମହାଜନକୁ ୧୭ ଥର କଚେରିକୁ ଦଉଡ଼ିବାକୁ ପଡ଼ିଥିଲା । ନାଲିସଦାରଠାରୁ ସମନ, କାର୍ଡ଼, ମହଲତ, ଯବାବ, ଡ଼ିକ୍ରୀଜାରି, ଚଳନ୍ତ, ଅଚଳନ୍ତ କୋରଖ, ନିଲାମ, ମାସକପରେ କଚେରୀରୁ ଟଙ୍କା ଉଠାଇ ଅଦାୟ ପାଇବାଯାଏ କୋର୍ଟଫିସ୍, ଓକିଲ, ମୋହରିର, କାଗଜ, ଅମଲା, ପିଅନ, ବାଟଖର୍ଚ୍ଚ, ଘରଭଡ଼ା, ସାକ୍ଷୀ ପ୍ରଭୃତିରେ ମହାଜନର ୧୮୦ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୋଇଥିବାର ଶୁଣାଅଛୁ । ଅଦାୟ ହେଲା ୭୦ ଟଙ୍କା ମଧ୍ୟରେ । ବହୁବାର ତଲବ ପରେ ମହାଜନ ଅପମାନିତ ମଧ୍ଯ ହୋଇଥିଲା । ଖାତକ କଥା ଅନୁମେୟ । ସେହିପରି ଗୋଟିଏ ଦଶ ଆଇନ ନାଲିସ ସାତ କିସ୍ତିର ୯ ଟଙ୍କା ମଧ୍ୟରେ ଲଢ଼ାଇ ମକଦ୍ଦମା । ନାଲିସଦାରଠାରୁ ମହଲତ ଯବାବ, ଡ଼ିକ୍ରୀଜାରି, ଚଳନ୍ତ ଅଚଳନ୍ତ କୋରଖ, ନିଲାମ ପ୍ରଭୃତି ଓ ମାସକ ପରେ କଚେରୀରୁ ଟଙ୍କା ଉଠାଇବା ପର୍ଯ୍ୟନ୍ତ ଜମିଦାରର ହଟହଟା କଥା ବା କିଏ ପଗୁରେ—୭୦ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୋଇଥିଲା; କିନ୍ତୁ ଅଦାୟ ହେଲା ୧୫ ଟଙ୍କା ମଧ୍ୟରେ । ପ୍ରଜାର ଖର୍ଚ୍ଚ ଅନୁମେୟ । ଆଉ ସାକ୍ଷାତ ଅନୁଭୂତ କଥା, ୯ ଟଙ୍କା ମୂଲ୍ୟର ୧୫ ଡ଼ିସମିଲ ଜମି ସକାଶେ ଗୋଟିଏ ନମ୍ବରୀ ମକଦ୍ଦମାରେ ମୁଦେଇର

୯ଶତ ଟଙ୍କା ବ୍ୟୟ ହୋଇ ହାଇକୋର୍ଟରେ ନାମଞ୍ଜୁର ହେଲା । ଗୋଟିଏ ଗୋଟିଏ ମକଦ୍ଦମାରେ ହଜାର ହଜାର ଲକ୍ଷ ଲକ୍ଷ ଟଙ୍କା ବ୍ୟୟ ହେବାର ତ ଜଣା ଶୁଣା ଅଛି । ଏବେ ଶୁଣାଯାଉଛି, ମୂଲ୍ୟ ହାର କମିବ । ଏହା ଉତ୍ତମ କଥା, କିନ୍ତୁ ବିଧାରେ ଆଦାୟ ବାଟ ନ ହୋଇ ନାଲିସ ହେଲେ କଣ ଘଟିପାରେ ତାହାର ପ୍ରତିକାର କିଛି ମାତ୍ର ଜଣା ପଡୁନାହିଁ । ବର୍ଗାନୁବର୍ଗ ବଣତଃ ଜମିଦାର, ମହାଜନ ଓ ପ୍ରଜା, ଖାତକ ନେଇ ଯେ କୋର୍ଟଫିସ ମୂଲ୍ୟ ବୃଦ୍ଧି ହେବାର ପ୍ରଥା ହେଉଛି, ସେ କାହା ଉପରେ ଚଢ଼ିବ,—କିଏ ଭାବୁଛି ? ଅନ୍ୟାନ୍ୟ ବ୍ୟତିକ୍ରମର ତ ତେର ସମ୍ଭାବନା ।

ମକଦ୍ଦମା ମାନଙ୍କେ ପକ୍ଷ ନିଜର ଆପତ୍ତି ନିଜେ ଲେଖି ବ ମୌଖିକ ଜଣାଇ ଚଳାଇପାରିବ ନାହିଁ । ସର୍କାରଙ୍କୁ ଲଭା ଦେଉଥିବା ପ୍ରତିନିଧିକ ରେଟବନ୍ଧା ବା ମନୋନୀତ ପାଉଣା ଦେଇ ତାଙ୍କ ମତ ଅନୁସାରେ ଶାପ ଖାଇବା ମୁତାବକ ମିଛ ସତ ଯୋଡ଼ି ତା ହାତରେ ଲେଖାଇ ଅଉ ରାଜସର୍କାରଙ୍କୁ ରେଟ୍ ମୁତାବକ ପାଉଣା ଓ ଆନୁସଙ୍ଗିକ ଖର୍ଚ୍ଚ ଦେଇ ଆପତ୍ତି କରିବାକୁ ହେବ । ସତ ହେଉ ବା ମିଛ ହେଉ ଅପରପକ୍ଷ ସେହିପରି ରେଟ୍ ମୁତାବକ ପାଉଣା ଦେଇ ଶାପ ଖାଇଲାଭଳି ଯେପରି ତେଷ୍ଟା ଭାବରେ ପ୍ରତିନିଧି ଦ୍ଵାରା ଲେଖାଇ ଉତ୍ତର ଦେବ । ତା ପରେ ଯବାନବନ୍ଦି, ଜେରା, ସାକ୍ଷୀ, ଯବାବସୁଆଲ ବା ବାଦୀପାଲ ଲଢ଼ାଇ ଲାଗିବ । ତେଣିକି କୁରୁକପାଳ ବା ଖାମଖିଆଲିଆ ରାୟ । ବ୍ୟକ୍ତିବଶେଷରେ ମକଦ୍ଦମା ଉପରକୁ ଲଟାଉଥିବ । ସତ୍ୟ ମୀମାଂସା ହୋଇଥିଲେ ମଧ୍ୟ ତଳ ରାୟ ବିରୁଦ୍ଧରେ ଉପରକୁ ଅପିଲ ଓ ସବଶେଷ ଯତ୍ନ ଏବଂ ଧନ ବଳରେ ପରିବର୍ତ୍ତିତ ବା ବିପରୀତ ହୋଇଥାଏ । ଅଧାରଗ ବୃଥା ଦଣ୍ଡ ଭୋଗି କାନମୁଣ୍ଡ ଅଉଁସି ହାଇଁପାଇଁ ହୋଇ ନାନା ଲାଞ୍ଛନା ସହିଥାଏ ।

ରାଜା ପ୍ରଜା ସମ୍ବନ୍ଧ ହେଉଛି ପିତା ପୁତ୍ର ପରି । ପୁତ୍ରମାନଙ୍କ ମଧ୍ୟରେ କୌଣସି ବିବାଦ ଘଟିଲେ ପ୍ରତିକାର ସକାଶେ ଯେଉଁ ପୁତ୍ର ପିତା ଆଗରେ ଗୁହାରି କରିବ, ସେ ରେଟ୍ ଅନୁସାରେ ପିତାଙ୍କୁ ପାଉଣା ଦେଇ ତା ମନୋମତ ପ୍ରତିନିଧିଙ୍କ ଯଥୋପଯୁକ୍ତ ପାଉଣା ଦେଇ ବୋଧ କରି ତାହାଦ୍ୱାରା ଲେଖାଇ ନିଜର ଦୁଃଖ ଜଣାଇବ । ଅନ୍ୟ ପୁତ୍ର ଉପରୋକ୍ତ ଭାବରେ ଉତ୍ତର ଦେଇ ଲଢ଼ିବ ଓ ଲଢ଼ାଇବ । ରେଟ୍ ବା ମିଆଦ ଅବଧିରୁ ଦିନେ ମାତ୍ର ଗଡ଼ି ଯାଇଥିଲେ ସଙ୍ଗେ ସଙ୍ଗେ ନାମଞ୍ଜୁର । ଧନ୍ୟ ପିତା ପୁତ୍ର ବା ରାଜା ପ୍ରଜା । ସେ ଯାହା ହେଉ ମକଦ୍ଦମା ବିଚାରରେ ଯାହା ଖର୍ଚ୍ଚ ହୁଏ ତାହା ଅପେକ୍ଷା ବେଶୀ ନିଆଯାଏ । ଯେଉଁ ଗରିବଙ୍କ ପାଇଁ ସମସ୍ତେ ହୋ ହୋ, ତାହା ତାଙ୍କର ଉପରେ ପଡ଼େ । ଥରେ ଦୁଇଥରରେ ଯାହା ନିଷ୍ପତ୍ତି ହୋଇପାରନ୍ତା, ତାହା ବହୁକାଳ ଗଡ଼ୁଥିବ । ପକ୍ଷମାନେ ହଟହଟା ଓ ଖର୍ଚ୍ଚାନ୍ତ ହେଉଥିବେ । ସୁତରାଂ ଲୋକେ ଉଚ୍ଛନ୍ନ । ମକଦ୍ଦମା ବିଚାର ନ ହୋଇ ଖାରଜ ହେଲେ ମଧ୍ୟ ପକ୍ଷ ଦେଇଥିବା ପଇସା ଫେରସ୍ତ ପାଏ ନାହିଁ । ବିଭ୍ରାଟ ବା ସବିଶେଷ ବ୍ୟତିକ୍ରମ ନେଇ ସମ୍ପତ୍ତିଶାଳୀ ଲୋକ ମକଦ୍ଦମା ଚଳାଇପାରୁ ନ ଥିଲେ ସର୍କାର ( ପାଁପଡ଼ ) ବିନା ଖର୍ଚ୍ଚରେ ମକଦ୍ଦମା ଚଳାଇ ଓ ବିଚାର କରି ପରେ ତା ଠାରୁ ସମସ୍ତ ଖର୍ଚ୍ଚ ଆଦାୟ କରନ୍ତୁ । ଶୁଣାଯାଉଛି କୋଟଫିସ୍ ଆହୁରି ବଢ଼ିବ, ଲୋକେ କାନ୍ଦିବେ । ଜଣେ ଜଣେ କର୍ମଚାରୀ ଯାହା ପାଆନ୍ତି, ତାହାର ୧୦।୨୦ ଭାଗରୁ ଭାଗେ ସାଂସାରିକ ଖର୍ଚ୍ଚ ହୁଏ ନାହିଁ । ଲୋକ ବିଶେଷ ଯାହା ପାଇ ହିସାବ ମୁତାବକ ଚଳନ୍ତି, କେତେକ ତାହାର ୧୦।୨୦ ଗୁଣ ଅଧିକ ପାଇ ମଧ୍ୟ ସବୁବେଳେ ଅଭାବଗ୍ରସ୍ତ । ଆମ ପ୍ରଦେଶର ସର୍କାର ସେହିପରି ଉପରି ଆଡ଼ମ୍ବର ହେତୁ ସମୁଚିତ କାର୍ଯ୍ୟ କରି ନ ପାରି ସବୁବେଳେ

କଳ୍‌ବଳ୍‌ । ସବୁ ଜମିଷ ଉପରେ ନାନାପ୍ରକାର କର ଆଦାୟ ହେବାରୁ ପ୍ରଜାମାନେ କଳ୍‌ବଲ୍‌ । ବାହାର ଘରଦା ନାନା ରତ୍ନ-ଖଚିତ ଓ ସ୍ୱର୍ଣ୍ଣ ରୌପ୍ୟାଦ ଜରିଜଡ଼ିତ ପଞ୍ଚବସ୍ତ୍ର କିନ୍ତୁ ଭିତରର ମାଲିକ ଶତଚ୍ଛିନ୍ନଯୁକ୍ତ ମଳିନ କୌପୀନଧାରୀ ବା (କୁଲଦେଇ ଓଷା) ଅସ୍ଥିକଙ୍କାଳ ମାଳା । ହୋମର ଘିଅ କୁକୁର ଖାଉଛନ୍ତି । ଏ ରାଜା-ବର୍ଗରକୁ ଧନ୍ୟ ! ଏହା ଅପେକ୍ଷା ଅନାଧୁନିଆ କାଜ ବର୍ଗର ଓ ଘରହନ୍ତି ବିଗ୍ରହ ଢେର ଶ୍ରେଷ୍ଠ ଥିଲ । ସେ ସମୟରେ ଲୋକେ ଏପରି ଉଚ୍ଛନ୍ନ ହେଉ ନ ଥିଲେ । ରୟତ ଜମି ବାକୀ ସମ୍ବନ୍ଧୀୟ ଜମିଦାର ରେଷମ ବନ୍ଦ ହୋଇ ସର୍କାରର କିଛି ଅଧିକ ଲଭ ହେଉଛି । ଆଉ ବହୁସଂଖ୍ୟକ ଗ୍ରାମର ବହୁସଂଖ୍ୟକ ଲୋକଙ୍କର ବହୁସଂଖ୍ୟକ ଜମିର ଇଃ ନମ୍ବର ଏକ କରି ଦେଇ ସାର୍ଟିଫିକେଟ ଦ୍ୱାରା ପ୍ରତ୍ୟେକଙ୍କଠାରୁ କିଛି କିଛି ଢଙ୍ଗ୍ ଆଦାୟ ହୋଇ ଜଣକଠାରୁ କୋରଖ ନିଲମ ଦ୍ୱାରା ସମସ୍ତ ଆଦାୟ ହୋଇଥାଏ । ଏତଦ୍ଦ୍ୱାରା ମକଦ୍ଦମା ଲଟାଇ ଖଜାଣାଖାନା ପୂର୍ତ୍ତି ଓ ପରଗ୍ରହଲକଙ୍କ ମନବୋଧ ।

ସିଦ୍ଧବାକ୍ୟ ଅଛି, ରାଜ ଅନୁଗତ ଧର୍ମ । ରାଜନୀତ ଅନୁକରଣରେ ବିପ୍ଳବୀମାନେ ନିସ୍ପୃହ ସାଧାରଣଙ୍କ ସାମାନ୍ୟ ଭ୍ରମ ବା ବ୍ୟତକ୍ରମ ଦେଖିଲେ ତ୍ରୁଟି ଗୁଲୁଣି ଛିଦ୍ର ପ୍ରବାଦ ପରି ଅତ ଉଲଟ ଦୌରାତ୍ମ୍ୟ କରଥାନ୍ତି । ଆଉ ରାଜନୀତ ଅନୁକରଣରେ ସତ୍ୟ, ତ୍ରେତା, ଦ୍ୱାପର, କଳି ଗ୍ରହ ଯୁଗରେ ପାପ ପୁଣ୍ୟ, ଶୃଙ୍ଖଳା, ବିଭ୍ରାଟାଦ ସମସ୍ତ ବିଷୟ ପ୍ରଚଳିତ ହୁଏ ବୋଲି ମହାଭାରତ ଶାନ୍ତିପର୍ବରେ ଭୀଷ୍ମ ଯୁଧିଷ୍ଠିରଙ୍କୁ କହିଅଛନ୍ତି । ସେ ଯାହା ହେଉ, ମକଦ୍ଦମା ବିଷୟ ଭାବିଲେ ଲୋକେ ଯେ ସର୍ବସ୍ୱାନ୍ତ ହେଉଛନ୍ତି ତାହା ବର୍ଣ୍ଣନାତୀତ । ( ନିବେଦନ ପୁସ୍ତକାନ୍ତର୍ଗତ ଗ୍ରାମ ସମିତ ପ୍ରଭୃତ ସଂଗଠନରେ ଏହାର ପ୍ରତକାର ନହିତ ) ତା ପରବର୍ତ୍ତିରେ ଆଜକାଲି

ସ୍ଥଳ ବିଶେଷରେ ୧୦।୧୫ ମୌଜା ନେଇ ଗୋଟିଏ ଗୋଟିଏ ଡପାଲଆ ପ୍ରାଇମେରୀ କମିଟି ଯେ ଚଡ଼ାଯାଉଛୁ, ଶୃଙ୍ଖଳିତ କଲେ ତାହା ଗ୍ରାମ୍ୟ ସମିତିର ଉପର ସମିତ ପର ହୋଇ ପାରନ୍ତା; କିନ୍ତୁ ତାହା ନ ହୋଇ ନାମ ମାତ୍ରକ ସମିତ ହେଉଛୁ। ବହୁସଂଖ୍ୟକ ଗ୍ରାମର ହାଲଚାଲ, କଳିଦ୍ୱନ୍ଦ୍ୱ, ଉନ୍ନତ, ଅବନତ, ବଢ଼, ବାଡ଼, ସ୍ୱାସ୍ଥ୍ୟ, ଶିକ୍ଷା, ରକ୍ଷା ଏଥିରେ ସାଧିତ ହୋଇ ନ ପାରେ। ଏତଦ୍ୱାରା କଂଗ୍ରେସ ମେମ୍ବର ସଂଖ୍ୟା ବଢ଼ିବ ଓ କିଛୁ ଅର୍ଥ ଅଦାୟ ହେବ ମାତ୍ର। ଏହାଦ୍ୱାରା ସାଧାରଣ ଲୋକେ ଯେ ସୁଖୀ ହେବେ ତାହା କଦାଚ ନୁହେଁ। କିନ୍ତୁ ଗ୍ରାମସମିତିଦ୍ୱାରା ଡେର ମେମ୍ବର ହେବା ସମ୍ଭବ।

ସେ ଯାହା ହେଉ ଲୋକଙ୍କ ହୃଦୟରେ ଧର୍ମଭାବ ଜାଗ୍ରତ ନ କରାଇ କଂଗ୍ରେସ ନେତାମାନେ ଦେଶକୁ ଉନ୍ନତ ଓ ଶୃଙ୍ଖଳିତ କରିବାକୁ ଯେ ସବୁ ନାନା ପ୍ରକାର ଚେଷ୍ଟା କରୁଛନ୍ତି, ତାହା ବୃଥା। ଅସଲ ବିଷୟର ତ ବିରୁଦ୍ଧାଚରଣ; କେବଳ ସ୍ୱଦେଶ ମମତା ହେତୁ ଗୌଣପକ୍ଷ ଯଥା—ଲୋକେ କପଡ଼ ମୁଠାଏ ଖାଇବେ; ଅନ୍ୟନେ ସ୍ୱଦେଶ ନାମରେ ଗୋଟ ପଡ଼ିବ ବୋଲି ହୋ ହୋ ହୋଇ ଲାଗିଛନ୍ତି; କିନ୍ତୁ ଖାଦ୍ୟର ଉପୃଣ ଓ ସୁନାମ ଯେପରି ହେବ ତାହା କରୁ ନାହାନ୍ତି। କିନ୍ତୁ ଜଗନ୍ନାଥଙ୍କ ଲାଗି ଅମ୍ଭ ଦେଶର ନାମ ଜଗତରେ ଉଜ୍ଜ୍ୱଳ ବାଜୁଛୁ। ସାକ୍ଷାତରେ ଦେଖ ଧର୍ମଦ୍ରୋହ ହେତୁ ଏକାଦଶୀ, ଚନ୍ଦ୍ରକ୍ଷୟ, ସଂକ୍ରାନ୍ତି, ପଞ୍ଚମୀ ରଜସ୍ୱଳା ପ୍ରଭୃତି ପର୍ବଦିନମାନଙ୍କରେ ସାଂସାରିକ କୃଷିକାର୍ଯ୍ୟ ହଳ ପ୍ରଭୃତି ଯେଉଁ ଦିନ ଯାହା ନିଷେଧ ଅଛି ତାହା ବରାବର ପାଳନ ହେଉନ୍ତି। ଆଉ ଯେ ସବୁ ପର୍ବ ଦିବସରେ ଯାହା ପାଳନ କରିବାକୁ ବିଧି ଅଛି, ତାହା ସବୁ ଅବଶ୍ୟ ଶ୍ରଦ୍ଧା ଓ ବିଶ୍ୱାସ ସହ ପାଳନ ହେଉଛୁ। ଆଧୁନିକ ନବ୍ୟ ସଭ୍ୟମାନଙ୍କ ମଧ୍ୟରେ କେତେକ ବ୍ୟତିକ୍ରମ ଦେଖାଯାଏ।

କଂଗ୍ରେସ ନେତାମାନେ ଏବଂ ଶାସକ ସର୍କାର ମଧ୍ୟ ଯେଉଁ ଯେଉଁ ସମୟରେ ଯାହା ଯାହା କରିବାକୁ ଆଦେଶ ଦେଇଥାନ୍ତି, ଦରମାଖିଆ ଶୃକର ଏବଂ କଂଗ୍ରେସ ଶୃଳକମାନଙ୍କ ମଧ୍ୟରୁ ସାମାନ୍ୟ କେତେକ ମାତ୍ର ଲୋକ ଦେଖାଣିଆ ହେତୁ ଜ୍ଞାନରେ ଉପରେ ଉପରେ ଶ୍ରଦ୍ଧାଶୂନ୍ୟ ବା ବାଧ୍ୟବାଧକତା ଡପାଳିଆ ଭାବରେ ପାଳନ କରି ସମ୍ବାଦପତ୍ରମାନଙ୍କରେ ମିଥ୍ୟା ପ୍ରଚାର କରିଦେଉଅନ୍ତି । ଆଧୁନିକ ଧର୍ମହୀନାତ୍ମକ ଯେ ଶୃଙ୍ଖଳା ହେଉଛି, ତାହା ଯଜ୍ଞାହୁତ ନାମରେ ପାଉଁଶରେ ଖାଦ୍ୟମିଶା ଘିଅ ଢଳା ହେଉଛି । ସନାତନଧର୍ମେତରମାନେ ବ୍ୟତିକ୍ରମାତ୍ମକ ଓ ଅଧିକାଂଶ ଧର୍ମଦ୍ୱେଷୀ ହେଲେହେଁ ପରମ୍ପରା ଅଭ୍ୟାସ ଶୃଙ୍ଖଳା ନେଇ ସ୍ୱ ସ୍ୱ ଧର୍ମ ସମ୍ବନ୍ଧୀୟ କେତେକ ନିୟମ ପାଳନ କରି ଏକ ପ୍ରକାର ଚଳନ୍ତି, କିନ୍ତୁ ଆଧୁନିକ ଶିକ୍ଷା ଓ ଶାସନ ଆଇନ ସାଧାରଣ ପକ୍ଷରେ ବିଶେଷତଃ ସନାତନଧର୍ମ ଓ ହିନ୍ଦୁମାନଙ୍କ ପକ୍ଷରେ ଅତି ଅସଙ୍ଗତ ହେତୁ କେତେକ ବାଧ୍ୟ ହୋଇ ମକଦ୍ଦମାରେ ପଡ଼ୁଛନ୍ତି । ପରସ୍ପର ବିଶ୍ୱାସ ବିହୀନ ହେତୁ ପତି-ପତ୍ନୀ, ପିତା-ପୁତ୍ରାଦି ମଧ୍ୟରେ ସାମାନ୍ୟ ବିଭବ ଓ ଅହଙ୍କାର ନେଇ ନାନା ପ୍ରକାର ମାଲିମକଦ୍ଦମା ଗଣ୍ଡଗୋଳ ସୃଷ୍ଟି ହୋଇ ଅତି ବିଭ୍ରାଟ ଓ ଅଶାନ୍ତିରେ ରାଜ୍ୟ ହୁଲସ୍ଥୁଲ । ଏ ସବୁ ଆଧୁନିକ ଶିକ୍ଷା ଓ ବିଶେଷତଃ ସ୍ତ୍ରୀ ଶିକ୍ଷା ହେତୁରୁ ଘଟୁ ନାହିଁ କି ? ଆଧୁନିକ ଶିକ୍ଷିତାମାନେ ହିନ୍ଦୁଗୃହିଣୀ ବା ସହଧର୍ମଣୀ ହୋଇ ନ ପାରନ୍ତି ।

ସେ ଯାହା ହେଉ ମକଦ୍ଦମା ବିଷୟ ଆଲୋଚନା କଲେ ଅଂଗ ଅପେକ୍ଷା କଚେରି, ହାକିମ, ଓକିଲ, ମୁକ୍ତାର, ବାରିଷ୍ଟର, ଅମଲା ପ୍ରଭୃତି ସଂଖ୍ୟାର ସୀମା ନାହିଁ । ବହୁ ପରିମାଣ ବା ଶତ ଶତ ଗୁଣରୁ ଅଧିକ ହୋଇପାରେ । ପ୍ରବାଦ ଅଛି, 'ଛାଡ଼ ପିତକାର୍ଯ୍ୟ, କର ରାଜକାର୍ଯ୍ୟ' । ପ୍ରକୃତରେ

ଦେବପିତୃକର୍ମ, ପର୍ବପର୍ବାଣି, ଆନନ୍ଦ ଉତ୍ସବ, ଇଷ୍ଟ ମିତ୍ର, ବନ୍ଧୁ ବାନ୍ଧବ କାର୍ଯ୍ୟ, ନିଜର ସୁଖ ସ୍ୱଚ୍ଛନ୍ଦତାରେ ଜଳାଞ୍ଜଳି ଦେଇ, କୃଷିକର୍ମିଣି ସାଂସାରିକ କାର୍ଯ୍ୟ ତ୍ୟାଗ କରି ନାନା ପ୍ରକାର ଆପଦ ବିପଦର ସମ୍ମୁଖୀନ ହୋଇ ସମସ୍ତକ୍ରମେ ଜୀବନର ଆଶା ତ୍ୟାଗକରି କ୍ଷୁଧା, ତୃଷା, ହିମ, ତାପ ସହି ଦଉଡ଼ିବାକୁ ପଡ଼ି ନ ଥାଏ କି ? ଆଉ ପାପ ପୁଣ୍ୟକୁ ଭ୍ରୂକ୍ଷେପ ନ କରି ସ୍ୱାସ୍ଥ୍ୟହାନୀ ଓ ଦୁଶ୍ଚିନ୍ତାର ସୀମା ନ ଥାଏ । ମକଦ୍ଦମାଖୋର ଧନିକ ମାମଲତକାରମାନେ କେବଳ ମକଦ୍ଦମାରେ ବାଟଭିକାରୀ ହୋଇ ରାଜକାର୍ଯ୍ୟ ପରିଚାଳକମାନଙ୍କର ଭଣ୍ଡାର ଧନରେ ପୂର୍ଣ୍ଣ କରି ପରକାଳକୁ ନର୍କପଥ ପରିଷ୍କାର କରିଥାନ୍ତି ଏବଂ ଅନ୍ୟକୁ ମଧ୍ୟ କରାଇଥାନ୍ତି । ଜମିଦାର, ମହାଜନ ପ୍ରଭୃତି ଧନିକମାନେ ଓ ଚାଷୀ ଘରୁଆମାନେ ପ୍ରାୟ ଧ୍ୱଂସ ହେଲେଣି ଏବଂ କ୍ରମେ କ୍ରମେ ଲୋପ ହେଉଛନ୍ତି, କିନ୍ତୁ ଆଉ କେହି ପୂର୍ବପରି ଧନିକ ବା ଘରୁଆ ହେଉଛନ୍ତି କି ?

କେତେକ ପ୍ରତାପଶାଳୀ ବଡ଼ ବଡ଼ ଦୁଷ୍ଟ ଜମିଦାରିଦ ପ୍ରଜାମାନଙ୍କୁ ପୀଡ଼ୁଥିଲେହେଁ ଅଧିକାଂଶ ଭାଇପରି ଚଳୁଥିଲେ । କିନ୍ତୁ ପ୍ରଜାସତ୍ୱ ଓ ସଂଶୋଧନ ଆଇନ ସମସ୍ତଙ୍କୁ ଏକ ଠେଙ୍ଗା ପ୍ରହାର ହେତୁ ଅଧିକାଂଶ ପ୍ରଜା ଜମିଶୂନ୍ୟ, ଗଛ ନିର୍ମୂଳ ହେତୁ ଲଙ୍ଗଳମୁଣ୍ଡା ମୂଲ୍ୟ ଅଧା । ନୂତନ ଗଛ ଲଗିବା ତ ନଦାରଦ । ଶ୍ରମିକ କୃଷକମାନେ ନାନାପ୍ରକାର ସୁଖ ଦୁଃଖାଦି ଅନୁଭବ କରି ନାନାପ୍ରକାର ଅଭାବଗ୍ରସ୍ତଦ୍ୱାରା ମଧ୍ୟ ପରଂପରାଗତ ଧର୍ମ ବିଶ୍ୱାସ ଓ କାୟିକ ଶ୍ରମସାଧନା ହେତୁ ଦେହକୁ ସବଳ ରଖି ନିଜର ଓ ଜଗତର ବରାବର ଉପକାର କରି ଆସୁଥିଲେ । ବର୍ତ୍ତମାନ କେତେକ ବଖେଡ଼ାଦାର ଧୋବଲୁଠକମାନେ 'କଂଗ୍ରେସ ଛରି ଓ ମୂର୍ଖ କୋହଳ କରି ସ୍ୱର୍ଗକୁ ଉଠାଇଦେବା' ବୋଲି ମତାଇ ସେମାନଙ୍କ ମଧ୍ୟରେ ମେଣ୍ଢ଼ ଭିତ୍ତି କରି ଜମିଦାର-ପ୍ରଜା,

ସାଉ-ଖାତକ, ଶ୍ରମିକ କୃଷକ, ଉଚ୍ଚ-ନୀଚବର୍ଣ୍ଣ ପ୍ରଭୃତଙ୍କ ମଧ୍ୟରେ ମନାନ୍ତର ଘଟାଇ ଓ ହିଂସାର ମନଦ୍ଧନ୍ଦ୍ୱର ବୀଜ ରୋପଣ କରୁଅଛନ୍ତି । ସୁତରାଂ ଶ୍ରମିକମାନେ ପୂର୍ବପର ଶ୍ରମ ନ କରି ପରଂପରାଗତ ଧର୍ମବିଶ୍ୱାସ ଏବଂ ସମ୍ଭୂତ କାୟିକ ପରିଶ୍ରମରୁ ଶିଥିଳ ବା ନିକମା ହେଲେଣି । ଭାରତରେ ଆଂଶିକ ସ୍ୱାଧୀନତା ଥିବା ଗଡ଼ଜାତ ରାଜନ୍ୟବର୍ଗଙ୍କ ମଧ୍ୟରୁ କେତେକଙ୍କର ସ୍ୱ ସ୍ୱ ପ୍ରଜାଙ୍କ ସହିତ ମନାନ୍ତର ଘଟନ୍ତେ, ବଖେଡ଼ଦାରଙ୍କ ଉତ୍ତେଜନାରେ ବର୍ତ୍ତମାନ ତାହା ଉପରେ ବାଧା ଅସିବା ସମ୍ଭାବନା । ମୋଗଲବନ୍ଦୀ ଅପେକ୍ଷା ଗଡ଼ଜାତ ରାଜଶାସନ ହେତୁ ବ୍ରାହ୍ମଣାଦମାନଙ୍କର ସନାତନ ଧର୍ମମୂଳକ ତାନ୍ତ୍ରିକ, ମାନ୍ତ୍ରିକ, ଯାନ୍ତ୍ରିକ, ବୈଦିକ ବିଧି ଯାହା କେତେକାଂଶରେ ବିଶେଷତ୍ୱ ଥିଲା ତାହା ରହିବା ସମ୍ଭବ ନୁହେ । ଏହା ଅତି କ୍ଷୋଭର ବିଷୟ ନୁହେ କି ? ପିତା-ପୁତ୍ର ନ୍ୟାୟାନୁଯାୟୀ ସବୁ ବିବାଦୀୟ ଶଷ୍ୟ ବିନାର୍ଥବ୍ୟୟରେ ଏବଂ ସଙ୍ଗେ ସଙ୍ଗେ ନିଷ୍ପତ୍ତି ହେଉଥିଲା । ଏଣିକି ତାହା ମୋଗଲବନ୍ଦୀ ପରି ଅର୍ଥ ଶୋଷଣ ଓ ହଟହଟାର ସୀମା ରହିବ ନାହିଁ । "ଲଭଃ ପରଂ ଗୋବଧଃ" । ହେ ବାହାଦୁରଅ ବଖେଡ଼ଦାର ! ଏବେ କୀର୍ତ୍ତିପତାକା ଉଡ଼ାଅ । ବଖେଡ଼ଦାରମାନେ ନିଜେ ଯେପରି ଅତି ତୁଚ୍ଛ ଅମେଧ୍ୟ ରୂପାନ୍ତର କ୍ଳେଦମୟ ଅକର୍ମଣ୍ୟ ମାଂସ ଗୁଡ଼ାଏ ବହନ କରି ସଦା ସନ୍ତପ୍ତ ହୋଇ ଜଗତର ଦାରିଦ୍ର୍ୟତା ବଢ଼ାଉଛନ୍ତି, ତାଙ୍କୁ ସେହିପରି ଅକର୍ମଣ୍ୟ ଓ ସନ୍ତପ୍ତ କରିବାପାଇଁ ଲାଗିଛନ୍ତି । ଅଧିକାଂଶ କୃଷକ ପେଟରେ ଓଦାକନା ପକାଇ ଅତି ଦୁଃଖ ଓ ଚିନ୍ତାରେ ସନ୍ତପ୍ତ ହୋଇ କୃଷି କମାଇ ମେର ପୋତୁ ନାହାନ୍ତି; କିନ୍ତୁ ଶ୍ରମିକମାନେ ଯେ କୌଣସିଠାରେ ଯଥୋପଯୁକ୍ତ ମୂଲ୍ୟ ପାଇ ଯଥା ତଥା ଏକ ପ୍ରକାର ଚଳୁଛନ୍ତି । ଯେ ଯେପରି କଠିନ, କର୍କଶ ବା କର୍ମେନ୍ଦ୍ରିୟ ଦ୍ୱାରା ପରିଶ୍ରମ

କରନ୍ତି, ତାଙ୍କର ସେ ଇନ୍ଦ୍ରିୟ ସବଶେଷ ଶକ୍ତି ହୋଇଥାଏ; ଯଥା—ବଢ଼େଇ, କମାରଙ୍କର ହସ୍ତବଳ; ଭାରୁଆ, ବୋହିଅଙ୍କର କାନ୍ଧ, ମୁଣ୍ଡବଳ; ହାଲିଙ୍କର ବାମହସ୍ତ ଓ ପାଦର ଜୋର ଅପେକ୍ଷାକୃତ ହୀଣ ନୁହେ କି ? ଅନ୍ୟାନ୍ୟ ସବୁ ଶରୀର ପ୍ରାୟ ଏହିପରି । ଅଭ୍ୟାସ ବଶରୁ ପିଠି ପାଖ ଯେତେ କଷ୍ଟ ଓ ତାପ ସହିପାରେ, ପେଟ ପାଖ ସେତେ ସହିପାରେ କି ? ହେ ଶିଠି-ମିଠିଖିଆ ଚକଚକିଆ ବଖରାଦାର ! ସେ ଜଗଦୁପକାରକ କଷ୍ଟ-ସହିଷ୍ଣୁ ପ୍ରକାରାନ୍ତରେ କଥିତ ଦୁଃଖଭୋଗୀ ଧଡ଼ିଆଙ୍କ ଦୈହିକ-ବଳ ସମାନ ତୁମ୍ଭର ଜୋର ହେବ କି ? ତୁମ୍ଭର ମାଂସ... ଅକର୍ମଣ୍ୟ ଦେହ ସେପରି କଷ୍ଟସାଧ୍ୟ କର୍ମ କରି ମାଟିରୁ କଞ୍ଚା ଖାଦ୍ୟ ଶସ୍ୟ ଉତ୍ପନ୍ନ କରି ଜଗତର କଣ୍ଟମାନ ଶ୍ରେୟ କରିପାରିବ କି ? ବିଶେଷତଃ ତୁମ୍ଭ ପ୍ରବୃର ମେଖଡ଼ରେ ଯେଉଁମାନେ ଭୁଲିଲେଣି, ସେମାନେ ଏବେ ପୂର୍ବପରି ମାଟିରେ ହାତ ଦେଉଛନ୍ତି କି ? ଅତଏବ ବିନୀତ ପ୍ରାର୍ଥନା, ସେ ହୁରିଅପଣ ଗୁଡ଼ା ସମୁଚିତ ପରିଶ୍ରମ, ସତ୍‌ଶିକ୍ଷା ଓ ସଦ୍‌ଗତିର ଉପଦେଶ ଦେବା ଉଚିତ,—ଯଦ୍ୱାରା ତାଙ୍କର ଓ ଜଗତର ପେଟ ପୂରିବ ଏବଂ ମହୋପକାର ହେବ । ନଚେତ୍ "ଅତୋଭ୍ରଷ୍ଟସ୍ତତୋଭ୍ରଷ୍ଟଃ" । 'ହର ହେ, ଆଉ ତୁମ୍ଭ ଦେବା ବର ହେ, ଶଙ୍ଖ ଫୁଙ୍କ ଫୁଙ୍କ ପଦ୍ମ ବାହାରିଲା ଏଥିକି ଉପାୟ କର ହେ' । ଶୁଣା ଅଛି, କେହି ଜଣେ ନାନା ପ୍ରକାର ଉଦ୍‌ଯୋଗ ପରେ ଘରେ ଉପବାସ ରହି ଆରଦିନ କହିଥିଲେ, 'ସବୁଦିନ ଭଗବାନ ଲୋଉଥିଲେ, କାଲି ଆମ୍ଭେ ଗୁହକୋଠି ମଧ୍ୟରେ ରହି ନିଜେ ଲୋଇନେଲୁ' । କିପରି ? ଉତ୍ତର—'ଉପବାସରେ ଶୋଇ ପଡ଼ିଲୁଁ' । ଉପବାସ ପ୍ରାୟ ସମସ୍ତଙ୍କର ଘଟିଥାଏ; ଅଭାବ, ରୋଗ, କଳିଗୋଳ, ରୁଷାରୁଷି, ମନାନ୍ତର, ଧର୍ମୋକ୍ତ ବ୍ରତ ପାଳନ ଓ ମୃତକାଶୌଚ ପ୍ରଭୃତି ଦ୍ୱାରା ପ୍ରତ୍ୟହ ଚଉଦ ଭାଗରୁ ଭାଗେ ଉପବାସ ରହିବା

କିମ୍ବଦନ୍ତୀ । ଛପନକୋଟି ଜୀବଙ୍କୁ ବାଉନକୋଟି ଭଣ୍ଡାର ।
କେହି ବ୍ୟକ୍ତି ନାନା ପ୍ରକାର ଉଦ୍ୟମପରେ ଧାର ସୁଦ୍ଧା କରୁ ନ
ମିଳିବାରୁ କୁଟୁମ୍ବଙ୍କର ଉପବାସ ଜନ୍ତ୍ରାରେ ଯୋଭିତ ହେବାର
ଦେଖି ପତ୍ନୀ କହିଲା, "ଗୃହଜଳ ସେରେ ଉଧାର ମିଳିଥିଲେ ମୁଁ
ଗ୍ରନ୍ଧି ପିଲାଙ୍କୁ ବାଣ୍ଟି ପରଶିଦେଇ ଆନନ୍ଦ ଲଭିଥାନ୍ତି ।
ମୋ ହୀନକପାଳକୁ ତାହା ମଧ୍ୟ ଜୁଟିଲା ନାହିଁ । ଅମ୍ଭମାନଙ୍କ
ପରିବର୍ତ୍ତେ ଏତିକି ଗୁହରକୋଠିଆ ବାଉନକୋଠିରେ ମିଶି
ଥିବେ । ହଉ, ପ୍ରଭୁଙ୍କ ଇଚ୍ଛା ପୂର୍ଣ୍ଣ ହେଉ । ତୁମ୍ଭେ କାହିଁକି
ଦୁଃଖିତ ହେଉଛ ?" ଗୃହିଣୀ ପକ୍ଷରେ ଏ ସ୍ନେହ ମମତାକୁ ଧନ୍ୟ ।
ଅଉ ମଧ୍ୟ ଶୁଣାଅଛୁ, କେହି କେହି କପଟଖାଇ ସାମାନ୍ୟ ହେତୁ
ଜନିସର ଅଭାବରେ କହିଥାନ୍ତି, "ମୁଁ ଏପରି ଲୋକର ହାତ ଧରିଛୁ
ଯେ, ପେଟକୁ ଭଲ କରି ମୁଠାଏ ଖାଇବାକୁ ଓ ଭଲ ଶାଢ଼ୀ ଖଣ୍ଡେ
ପିନ୍ଧିବାକୁ ଜୁଟୁ ନାହିଁ । ପୋଡ଼ିଯାଉ ଏ ନିଆଁଲଗା ଘର ।"
ଜଗତରେ ଏହିପରି କେତେ ବିଚିତ୍ର କଥା ଶୁଣା ଯାଇଥାଏ ।

ସେ ଯାହା ହେଉ, ବିବାଦ ବିଷୟରେ ଯେଉଁମାନେ
କୁଟନୀତିଦ୍ୱାରା ଅଷ୍ଟଦିକ୍‌ପାଳାଂଶ ରାଜା ବା ରାଜପ୍ରତିନିଧି,
ରାଜବିଗ୍ରହକ ଏବଂ ପଞ୍ଚପରମେଶ୍ୱର ପଞ୍ଚାୟତ ସାମନାରେ
ନାନାପ୍ରକାର ଛନ୍ଦ, କପଟ ଓ ମିଥ୍ୟା କହି ଓ କୁହାଇ ପ୍ରକୃତ
ସତ୍ୟକୁ ଘୋଡ଼ାଇ ମିଥ୍ୟାକୁ ସତ୍ୟ ବୋଲି ପ୍ରମାଣ କରାଇ
ବିପକ୍ଷକୁ ଭୁଲୁଡ଼ାଇ ଜୟ ଓ ପରାସ୍ତ କରି ନିଜର ଉନ୍ନତି ଓ
ବାହାଦୁରୀକି ଆଶା କରନ୍ତି, ସେମାନେ ତାହା ପରିବର୍ତ୍ତରେ
ଅବନତି ଏବଂ ଅଧୋଗତି ଲଭି ନିଜର ମାତୃ-ପିତୃକୁଳ ବଂଶ
ସହିତ ରୌରବ ନର୍କରେ ପଡ଼ିବେହି ପଡ଼ିବେ । ଏଥିରେ
ଲେଶମାତ୍ର ସନ୍ଦେହ ନାହିଁ । ଅଉ ରାଜବିଗ୍ରହକ ଓ ପଞ୍ଚାୟତ
ମାନେ ଈଶ୍ୱର ସାକ୍ଷୀ ବିନା ଯଦି ପକ୍ଷାବଲମ୍ବନ ବା ଖାମଖିଆଲି
ମୀମାଂସା କରିଦିଅନ୍ତି, ସେ ମଧ୍ୟ ସେହିପରି ପାପଭାଗୀ ହେବେ ।

ଯେପରି ମାଳୀ ପ୍ରଭୃତି ବୃକ୍ଷରୋପଣ କରି ବା ନିଜେ ପୁଷ୍ପ, ତୁଳସୀ, ଫଳ ବା ଶାକ ଶବଜୀ ଉତ୍ପନ୍ନଦ୍ୱାରା ବର୍ତ୍ତି କରି ଜଗଦୁପକାର ଓ ଜୀବିକାନିର୍ବାହ ଏବଂ ଧର୍ମାଂଶ ଲଭିଥାନ୍ତି, ଅଉ ଯେଉଁମାନେ ଜୀବହିଂସାଦିଦ୍ୱାରା ଜୀବିକାନିର୍ବାହ କରନ୍ତି ସେ ପାପାଂଶ ଲଭିଥାନ୍ତି । ତଦ୍ଭିନ୍ନ ପ୍ରଥା ଜୀବିକାନିର୍ବାହ ସକାଶେ ହେଲେହେଁ ଫଳ ବିପରୀତ । ରାଜକାର୍ଯ୍ୟାଦି ନିର୍ବାହକମାନେ ଉପର ଆଦେଶାନୁସାରେ କାର୍ଯ୍ୟ ନିର୍ବାହ କଲେହେଁ, ବିଭୁଦତ୍ତ କର୍ତ୍ତୃତ୍ୱ-ଶକ୍ତିଦ୍ୱାରା ପ୍ରକୃତ ଘଟନା ଅନୁସନ୍ଧାନ କରି ଆଦେଶର ବ୍ୟତିକ୍ରମ ସତ୍ତ୍ୱେଓ ସତ୍ୟ-ଘଟନାକୁ ସବିଧିରେ ସମାଧାନ କରିବା ସମୁଚିତ । ନଚେତ୍ ବିଭୁଦତ୍ତ କର୍ତ୍ତୃତ୍ୱ-ଶକ୍ତି ବ୍ୟର୍ଥ ହୋଇଥାଏ । ତତଃ ପାପଭାଗୀ ହେବା ନିଶ୍ଚୟ ( ଲୋକପରିଚୟ ଦେଖ ) । ପରଂପରା ପ୍ରବାଦ ଅଛି , ଲୋକେ ବାଣିଜ୍ୟରେ ସବୁଠାରୁ ଧନବାନ୍ ହୋଇଥାନ୍ତି; ତାର ଅଧ କୃଷକ ପାଏ, କୃଷକର ଅଧ ରାଜକର୍ମଚାରୀ ଲଭେ ଏବଂ ହୀନବୃତ୍ତି ଯାଚଜ୍ଞା ଅନୁଚିତ ।

ବାଣିଜ୍ୟେ ବସତେ ଲକ୍ଷ୍ମୀସ୍ତଦର୍ଦ୍ଧଂ କୃଷିକର୍ମଣି ।
ତଦର୍ଦ୍ଧଂ ରାଜସେବାୟାଂ ଭିକ୍ଷାଂ ନୈବ ଚ ନୈବ ଚ ॥

ବର୍ତ୍ତମାନ ଦେଖାଯାଏ ଯେ, କେବଳ ମକଦ୍ଦମା ହେତୁ ରାଜକାର୍ଯ୍ୟ ପରିଚାଳକମାନେ ସବୁଠାରୁ ଲାଭବାନ୍ ଓ ଧନବାନ୍ । କେତେକ ଜମିଦାର ଓ ମହାଜନ, ଏବଂ ବଣିକମାନେ ସାଧାରଣଙ୍କଠାରୁ ନ୍ୟାୟାନ୍ୟାୟ ଭାବରେ ନେଇ କେତେକାଂଶ ଧନୀ ହୋଇଥାନ୍ତି । ସମୁଚିତ କୃଷକ ସାମାନ୍ୟ ମାତ୍ର ପାଏ, ନାମଧାରୀ କୃଷକର ହଟହଟାର ସୀମା ନାହିଁ । ସାଧାରଣଙ୍କଠାରୁ ମହାଜନ ଓ ବଣିକମାନେ ଯାହା ପାଇଥାନ୍ତି, ତହିଁରୁ ଅଧିକାଂଶ ଜମିଦାରୀ ଲୋଭରେ ଯାଏ । ଏ ସମସ୍ତଙ୍କର ଧନ ମଧ୍ୟରୁ କେତେକ ମାତ୍ର ଜଗତରେ ପ୍ରଚଳିତ ହେଉଥିଲେହେଁ ମଧ୍ୟଧିରୀ ଜାଲୋପମ ନୀତିଶୃଙ୍ଖଳାଦ୍ୱାରା ଆକର୍ଷିତ ହୋଇ

ରାଜକାର୍ଯ୍ୟ ପରିଚାଳକମାନଙ୍କ ଭଣ୍ଡାରରେ ପ୍ରବେଶ ହୋଇଥାଏ। ବିଶେଷତଃ ଏ ସମସ୍ତଠାରୁ ଅଧିକାଂଶ ବିଦେଶକୁ ବହିର୍ଗତ ହୋଇଥାଏ। ସୁତରାଂ ଭାରତୀୟମାନେ କଙ୍ଗାଳ। ବର୍ତ୍ତମାନ ବିଶେଷ ବିପଦର ଆଶଙ୍କା ଯେ, ଚୋର, ଡକାୟତ, ଦୁଷ୍ଟ, ଖୁନି-କାର, ଦାଗୀ ଓ ଦଣ୍ଡ୍ୟମାନଙ୍କ ସମ୍ବନ୍ଧରେ ଯେପରି ବ୍ୟବସ୍ଥା ଶୁଣା-ଯାଉଅଛି, ସେଥିରେ ବିପ୍ଳବ ବୃଦ୍ଧି ହେବାର ସମ୍ଭାବନା। ଏ ସବୁର ପ୍ରତିକାର ନିବେଦନ ପୁସ୍ତକ ଲିଖିତ ଗ୍ରାମସମିତି ସଂଗଠନରେ ନାହିଁ। ମହାତ୍ମା ଗାନ୍ଧିଙ୍କର ସର୍ବ ପ୍ରଧାନ ଅଙ୍ଗକୁ କାର୍ଯ୍ୟରେ ପରିଣତ କରିବା ସକାଶେ କଂଗ୍ରେସ ନେତାମାନେ ସର୍ବସ୍ୱ ଭୁଲି ପ୍ରତ୍ୟେକ ଗ୍ରାମରେ ଗୋଟିଏ ଗୋଟିଏ ଗ୍ରାମ ସମିତି ଓ ଉପର୍ଯ୍ୟୁପରି ସମିତି ଆଗ ନ କରି ଦେଖୋଉଥିବାର ବା ସ୍ୱାଧୀନତା ହାସଲ ସକାଶେ ଯେ ପ୍ରାଣପ୍ରାୟଶ୍ଚିତ୍ତ ହୋଇ ଲାଗିଛନ୍ତି ତାହା ଗୌଣପକ୍ଷ। କଚେରିକି କେହି ନ ଗଲେ ଦେଶ ଅନାୟାସରେ ସ୍ୱାଧୀନ ହୋଇଯିବ। ଯାହା ହେଉ ମକଦ୍ଦମା ବିଷୟ ଆଲୋଚନା କଲେ ତାହା ଗୋଟିଏ ମହତ୍ ଭ୍ରମ ନୁହେ କି ?

### ଲୋକ ପରିଚୟ ଓ ପ୍ରକୃତ ଫଳଭୋଗ, ପଞ୍ଚାୟତ

ଜଗତରେ କେତେକ ମହତ୍‌ବ୍ୟକ୍ତି ଅଛନ୍ତି, ସେମାନେ ନିଜର ହାନି ସତ୍ତ୍ୱେ ଅନ୍ୟର ଶ୍ରେୟରେ ଲାଗିଥାନ୍ତି। କେତେକ ମଧ୍ୟମ ଧରଣର ଲୋକ ଅଛନ୍ତି, ସେମାନେ ନିଜର ଶ୍ରେୟ ବଜାୟ ରଖି ସାଧ୍ୟାନୁସାରେ ଅନ୍ୟର ଯାହା କିଛି ଉପକାର କରିଥାନ୍ତି। ଆଉ କେତେକ ରାକ୍ଷସ ପ୍ରକୃତିର ଲୋକ ଅଛନ୍ତି, ସେ ନିଜର କିଛି ମାତ୍ର ଲାଭ ସକାଶେ ଅନ୍ୟର ସମ୍ପତ୍ତି ନଷ୍ଟ କରିଦେଇ ନିଜର ସମ୍ପତ୍ତି ବଢ଼ାଇଥାନ୍ତି। 'ଅଧରମ ଧନ ବଢ଼େ ବହୁତ, ଗଲାବେଳେ ଯାଏ ମୂଳ ସହିତ'। ଆଉ କେତେକ

ଅଛନ୍ତି, ନିଜର ଶ୍ରେୟ ହେଉ ବା ନ ହେଉ ମନ-ବଚନକର୍ତ୍ତବ୍ୟ ସହ ଅନ୍ୟର ହାନିରେ ଲଗିଥାନ୍ତି । ଏମାନେ ଯେ କେଉଁ ଜାତୀୟ, ତା ନିରୂପଣ କରାଯାଇ ନ ପାରେ ।

ଏତେ ସତ୍ପୁରୁଷାଃ ପରାର୍ଥଘଟକାଃ ସ୍ୱାର୍ଥଂ ପରିତ୍ୟଜ୍ୟ ଯେ
ତେ ମଧ୍ୟାସ୍ତୁ ପରାର୍ଥମଧ୍ୟମଭୃତଃ ସ୍ୱାର୍ଥାବିରୋଧେନ ଯେ ।
ତେଽମି ମାନୁଷରାକ୍ଷସାଃ ପରହିତଂ ସ୍ୱାର୍ଥାୟନିଘ୍ନନ୍ତି ଯେ
ଯେ ତୁ ଘ୍ନନ୍ତି ନିରର୍ଥକଂ ପରହିତଂ ତେକେନ ଜାନିମହେ ॥
ନ ସଭା ପ୍ରବିଶେତ୍ ପ୍ରାଜ୍ଞଃ ସଭ୍ୟ ଦୋଷାନନୁସ୍ମରନ୍ ।
ଅବ୍ରୁବନ୍ ବିବ୍ରୁବନ୍ ବାପି ନରଃ ପ୍ରାପ୍ନୋତି କିଲ୍ବିଷଂ ॥

ପୁଣି କେତେକ ପରଶ୍ରୀକାତର ଲୋକ ଦେଖାଯାନ୍ତି ସେ ନିର୍ଦ୍ଦୋଷୀ, ନିରୀହ ସଜ୍ଜନମାନଙ୍କର ସର୍ବନାଶ ସକାଶେ ବୃଥା ଦୁର୍ନାମ, କ୍ଷତ ଓ ପୀଡ଼ା ସକାଶେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଚୌର-ମର୍କଟ-ମୂଷିକ ଦୌରାତ୍ମ୍ୟ ପରି କୂଟ-କପଟରେ ମଜ୍ଜିଥାନ୍ତି । କେହି ତାଙ୍କୁ ଡାକୁ ବା ନ ଡାକୁ, ଭଦ୍ରବ୍ୟକ୍ତି ବନିବା ପାଇଁ ଶୃଙ୍ଗାର ବାର ଓ ଅନୁସନ୍ଧାନ କରି ଅଗନ୍ତୁକ ଭାବେ ଅଗ୍ରସାର ହୋଇ ପକ୍ଷ ଧରି ନାନାପ୍ରକାର ଉଦାହରଣ ଦେଇ ଛନ୍ଦାଛନ୍ଦଦ୍ୱାରା ଗୋଟାଏ ପକ୍ଷକୁ ପରାସ୍ତ କରି ନିଜର ମତ ବଜାୟ ରଖି ସ୍ୱପ୍ରେଟେକ ବଖାଣନ୍ତି । ସ୍ଥଳବିଶେଷରେ ଦ୍ୱନ୍ଦ୍ୱ ଲଗାଇଦେଇ କିଛି କିଛି ରୋଜଗାର ମଧ୍ୟ କରିଥାନ୍ତି । ଏମାନଙ୍କ ଧନ ଯେତେବେଳେ ହେଲେ ସଦ୍‌ବ୍ୟୟ ନ ହୋଇ ପୁତ୍ର ପୌତ୍ରାଦିକ୍ରମେ ଅସନ୍ମାର୍ଗରେ ଯିବଇ ଯିବ । ଅଉ ଯାହାଠାରୁ ଠକି କରି ହେଉ ବା ଅନ୍ୟ ଯେ ପ୍ରକାର ଧାରିଥାନ୍ତୁ, ସେ ଧନ ଚକ୍ରବୃଦ୍ଧି ସୁଧକ୍ରମେ ଜନ୍ମଜନ୍ମାନ୍ତରେ କାମ୍ଧା ସର୍ବ ଦୁଃଖ ସହନଶୀଳ ବୃକ୍ଷରୂପ ଧରି ଶୁଝିବେଇ ଶୁଝିବେ । ( ସମ୍ୱତ୍ସରରେ ବହୁସଂଖ୍ୟକ ବୃକ୍ଷ ରୋପଣ କଲେହେଁ କେତେକ ନ୍ୟୂନାଧିକ ଫଳେ, କେତେକ ନ

ଫଳିବାର କାରଣ ଅନୁସନ୍ଧେୟ ) । ଅନ୍ୟର ଭୂମିକୁ ଯୋର-ଜବରଦସ୍ତ ବା କୂଟନୀତି କିମ୍ବା ସୀମାଚିହ୍ନ ଟେଲି ବା ହିଡ଼ ହାଣି ନିଜ ଜମିରେ ପୂରାଇ ଯେ ହରଣ କରନ୍ତି, ସେ ମାତୃହରଣ ପାପଗ୍ରସ୍ତ ଦୋଷରେ ଦୋଷୀ ହୋଇ ତଦନୁରୂପ ଦଣ୍ଡଭୋଗ କରନ୍ତି । ଯତଃ ସେ 'ଭୂ-ମାତା' । ପୁଣି ସେମାନେ ଆଜୀବନ ଅଶାନ୍ତି-ଅନଳରେ ଜର୍ଜ୍ଜରିତ ହେଉଥାନ୍ତି ଏବଂ ଦେହାନ୍ତେ ନର୍କଗତ ଯେ ନିଶ୍ଚୟ ହେବ, ତତ୍ପ୍ରତି ଆଦୌ ଭ୍ରୂକ୍ଷେପ ନ ଥାଏ । ଏମାନେ ଯେ କେଉଁ ଜାତୀୟ, ତାହା କୌଣସି ପ୍ରକାର ନିର୍ଣ୍ଣୟ କରାଯାଇ ନ ପାରେ । ପ୍ରବାଦ ଅଛି, 'ପାପ ନାଅନ୍ତି କୁଶିକ୍ଷିତ ଓ କୁସ୍ରିତ ଚଲକ ମାମଲତକାର' । କୁପଣ୍ଡିତ ଲୋଭବଶରେ ପାପିକି ନିଷ୍ପାପୀ ଏବଂ ନିଷ୍ପାପିକି ପାପୀ ଇତ୍ୟାଦି କହିବାରୁ କର୍ତ୍ତା ଖଲାସ୍; ସେ ପାପ ନେଇଥାନ୍ତି ସେ ପଣ୍ଡିତ । ଅତ ଚଲକ-ମାମଲତକାର ନାନାପ୍ରକାର କୂଟ କପଟଦ୍ୱାରା ଅନ୍ୟର ଯେଉଁ ସମ୍ପତ୍ତି ଅଣିଥାନ୍ତି, ତାହା ଭୋଗ କରନ୍ତି କୁଟୁମ୍ବାଦି ସମସ୍ତେ; କିନ୍ତୁ ତଦ୍‌ଜନିତ ପାପ ସେ ଏକା ଭୋଗ କରିଥାଏ । ( ରାମାୟଣ ବାଲକାଣ୍ଡାନ୍ତର୍ଗତ ରତ୍ନାକର ଦସ୍ୟୁ ଚରିତ ଦ୍ରଷ୍ଟବ୍ୟ ) । ଅତ ଭାଗବତ ୧୦ମ ସ୍କନ୍ଧ ୪୯ଅ: ରେ ଅକ୍ରୂର ଧୃତରାଷ୍ଟ୍ରଙ୍କୁ କହିଥିଲେ, 'ହେ ରାଜନ୍ ! ଇହଲୋକରେ କାହାର ସହିତ କାହାର ଚିରକାଳ ଏକତ୍ର ବାସ ଘଟେ ନାହିଁ; ସ୍ତ୍ରୀ-ପୁତ୍ରାଦି କଥା ଦୂରେ ଥାଉ, ନିଜ ଦେହ ସହିତ ଚିରକାଳ ଏକତ୍ର ବାସ ହୁଏ ନାହିଁ । ଜୀବ ଏକାକୀ ଜନ୍ମ ହୁଏ ଓ ଏକାକୀ ଲୟପ୍ରାପ୍ତ ହୁଏ । ନିଜକୃତ ସୁକୃତ ଓ ଦୁଷ୍କୃତ ନିଜେ କେବଳ ଭୋଗ କରେ । ସ୍ୱଳ୍ପବୁଦ୍ଧି ଲୋକର ଅଧର୍ମୋପାର୍ଜିତ ବିତ୍ତକୁ ପୁତ୍ରାଦି ବା ଅନ୍ୟାନ୍ୟ ଭୋଗ କରିଥାନ୍ତି; କିନ୍ତୁ ତଜ୍ଜନିତ ପାପ ଏକମାତ୍ର ନିଜେ ଭୋଗ କରେ । ଯାହାଙ୍କୁ ପୋଷିଥାଏ, ସେ ମଧ୍ୟ ତାକୁ ପାପଭାଗୀ କରାଇ ଛାଡ଼ି ଯାଇଥାନ୍ତି । ସେ ମଧ୍ୟ ସମସ୍ତଙ୍କୁ ଛାଡ଼ି ଚାଲିଯାଏ ।

ନେହ ଗୃତ୍ୟନ୍ତସଂବାସଃ କସ୍ୟଚିତ୍ କେନଚିତ୍ ସହ ।
ରାଜନ୍ ସ୍ୱେନାପିଦେହେନ କମୁଜାତ୍ୟାମ୍ବଜ୍ଞାଦ୍ଧଭିଃ । ୨୦ ।

ଏକଃ ପ୍ରସୂୟତେ ଜନ୍ତୁରେକଏବ ପ୍ରଲୀୟତେ ।
ଏକୋଽନୁଭୁଂକ୍ତେ ସୁକୃତମେକ ଏବ ଚ ଦୁଷ୍କୃତଂ । ୨୧ ।

ଅଧର୍ମୋପଚିତଂ ବିତ୍ତଂ ହରନ୍ତ୍ୟନ୍ୟେଽଲ୍ପମେଧ ସଃ ।
ସମ୍ଭୋଜନାୟାପଦେଷ୍ଟୈଃ ଜଳାନୀବ ଜଳୌକ ସଃ । ୨୨ ।

ପୂଷ୍ଟାତ ଯାନଧର୍ମେଣ ସ୍ୱବୁଦ୍ଧ୍ୟା ତମପଣ୍ଡିତଂ ।
ସ୍ୱୟଂ କଲ୍‌ବିଷମାଦାୟ ତୈସ୍ତୁଂକ୍ତୋ ନାର୍ଥକୋଽବଦଃ ।୨୩।

ନିର୍ବୋଧତା ବା ଖଳପ୍ରେରଣାରେ ଉଭୟପକ୍ଷ ହଠହଠା ହେଉଥିଲେ କମ୍ବା କୌଣସି ଉତ୍ତମ ଲୋକ ସବିଶେଷ କାରଣରୁ ବିବାଦାଦ ପ୍ରମାଦରେ ପଡ଼ୁଥିଲେ, ପ୍ରଜ୍ଞଭାବିଶିଷ୍ଟ ବ୍ୟକ୍ତି ଆଗନ୍ତୁକ ଭାବରେ ପ୍ରବେଶ କରି ସବିଶେଷ ଯନ୍ତ୍ରଦ୍ୱାରା ଉଭୟ ପକ୍ଷକୁ ସଦ୍‌ଯୁକ୍ତିରେ ବୋଧ କରିଦେଇ ବିବାଦ ମୀମାଂସା କରିଦେଲେ ଉଭୟ ପକ୍ଷର ଶ୍ରେୟ ହେତୁ ଏବଂ ଉତ୍ତମ ଲୋକ ଖଲାସ ହୋଇ ଶାନ୍ତି ଲଭି ଯେ ସତ୍କାର୍ଯ୍ୟ କରିଥାନ୍ତି ସେ ସତ୍କାର୍ଯ୍ୟର ଫଳାଂଶ ସେ ଭଦ୍ରବ୍ୟକ୍ତି ଲଭିଥାନ୍ତି । କିନ୍ତୁ କୁକର୍ମୀକୁ ସାହାଯ୍ୟ କଲେ ସେ ଯେ ଅନ୍ୟାୟ କାର୍ଯ୍ୟ କରିଥାଏ ବା କରେ, ତାର ଫଳାଂଶ ସାହାଯ୍ୟକାରୀ ଲଭିଥାଏ । ସେହି ସକାଶେ ବିପକ୍ଷ ସର୍ପ ବା ଖଳ ଲୋକକୁ ରାଜା ବା କ୍ଷମତାଶାଳୀ ସମୁଚିତ ଦଣ୍ଡ ନ ଦେଲେ ପାପଭାଗୀ ହୋଇଥାନ୍ତି ।

ଉଭୟ ପକ୍ଷର ବାଦ ବିବାଦ ।
ନ ଶୁଣି ନ ବୁଝି ନ ଜାଣି ଭେଦ ।
ପକ୍ଷଙ୍କ କଥାରେ ଯେ ମତ ଦିଏ ।
ପକ୍ଷ ଧରି ଯେତ୍ତୁ ସଭାରେ କହେ ।
ବୁଡେ଼ ତାର ବଂଶ । ପିତୃଗଣସହ ନର୍କେ ନିବାସ ॥

ଉଭୟ ପକ୍ଷର ମନାସି ଶ୍ରେୟ ।
ଦେଶ-କାଳ-ପାତ୍ର କର ନିର୍ଣ୍ଣୟ ।
ଭଗବାନଙ୍କ ହୃଦେ କର ସ୍ଥିତ ।
ଅକପଟେ ବ୍ୟକ୍ତ କରିଲେ ମତ ।
ସ୍ୱର୍ଗେ ତା ନିବାସ । ଉଭୟ ଲୋକରେ ପ୍ରକଟେ ଯଶ ॥

କେତେକ ସାଂସାରିକ କାର୍ଯ୍ୟ ଏହ ଆଜୀବନ ଯୁଦ୍ଧ କରି କରି ଥକିଥିଲେହେଁ ଦେହାନ୍ତେ ନିଜର କି ଗତି ହେବ ତା ନ ଭାବି, ସବିଶେଷ ବୈଷୟିକ ଅଭାବ ତେତେ ନ ଥିଲେ ମଧ୍ୟ ଯେପରି ମହାମାୟାର ମମତାରେ ମୋହିତ ଓ ଲୋଭଗ୍ରସ୍ତ ଦେଖାଯାନ୍ତି; ତାଙ୍କୁ ଦେଖିଲେ କ୍ଷୋଭ ଆସେ ।

ଅପୁତ୍ରିକେଷୁ ବୃଦ୍ଧେଷୁ ବିଧବାୟାଂ ବିଶେଷତଃ ।
ସ୍ଥାନଦ୍ୱୟ ନିବାସିନ୍ୟାଂ ମାୟାଦେବ୍ୟା ନମୋଽସ୍ତୁତେ ॥

---

## ୩ । ଦେହ ବିଭାଗ— ଜ୍ୟୋତିଷ

ଜ୍ୟୋତିଷବିଦ୍ୟା ଗୋଟିଏ ବିଷୟ । ଲଗ୍ନ, ସ୍ପଷ୍ଟ, ଗ୍ରହସ୍ଥିତି ପ୍ରଭୃତି ବ୍ୟତିକ୍ରମରୁ ବା ଅଜ୍ଞତାହେତୁ ସ୍ଥଳବିଶେଷରେ ଯଦି ଫଳର ବ୍ୟତିକ୍ରମ ଘଟିଲା, ତେବେ ସେ ଶାସ୍ତ୍ରମତରେ ଅଧିକାଂଶଙ୍କର ବିଶ୍ୱାସ ହେଉ ନାହିଁ । ତେଣୁ ହେୟ ଜ୍ଞାନର ସୀମା ନ ଥାଏ । ଯେଉଁଠାରେ ପ୍ରତ୍ୟକ୍ଷ ଫଳ ଅନୁଭବ ହେଉଛି, ତେବେ ମଧ୍ୟ ତହିଁରେ ହେୟ ଜ୍ଞାନ କରି କାକତାଳିକ ନ୍ୟାୟ (କୁଆ ବସିବାକୁ ତାଳ ଖସି ପଡ଼ିବା) କହି ଆଦର ହେଉ ନାହିଁ, ମଧ୍ୟ ପଇସାଟାଏ ବାହାରିବାକୁ କୁଣ୍ଠିତ । କିନ୍ତୁ ସେ ଶାସ୍ତ୍ରାନୁସାରେ ତ୍ରିକାଳ ଅର୍ଥାତ୍ ଭୂତ-ଭବିଷ୍ୟତ-ବର୍ତ୍ତମାନ କାଳର ଫଳ ନିରୂପଣ ହୋଇପାରୁଛି । ଅନିଷ୍ଟ ବା ରିଷ୍ଟ ଥିଲେ ତାହା ଖଣ୍ଡନର ବିଧି ମଧ୍ୟ ସେହି ଶାସ୍ତ୍ରରେ ଅଛି ।

ଶୁଭଫଳ ଅର୍ଥାତ୍ ଧନ, ସନ୍ତାନ, ସନ୍ତତି, ହାନି, ଲାଭ ପ୍ରଭୃତି ନିରୂପଣ ହୋଇପାରୁଛି । ଆଜି ମହାକାଶସ୍ଥ ଗ୍ରହ-ନକ୍ଷତ୍ରାଦି-ମାନଙ୍କର ସଞ୍ଚାର, ଗତିବିଧି ଏବଂ ଉତ୍ପାତ ମଧ୍ୟ ଅନୁଭବ ହେଉଛି । ତେବେ ମଧ୍ୟ ସେ ଶାସ୍ତ୍ରମତରେ ଆଦର ଓ ବିଶ୍ୱାସ ହେଉ ନାହିଁ । ଯେପରି ଗୋଟିଏ ଅନ୍ଧକାର ଗୃହରେ ଇଷ୍ଟାନିଷ୍ଟ କର ବା ଭଲ ମନ୍ଦ ନାନା ପ୍ରକାର ପଦାର୍ଥ ରହିଥିଲେହେଁ, ଅନ୍ଧକାରହେତୁ ତାହା ସବୁ ଅନ୍ଧାଳି କରି ପାଇଲେ ମଧ୍ୟ ଭଲ ଓ ମନ୍ଦ ବସ୍ତୁ ପ୍ରାପ୍ତ ହୋଇଥାଏ, କିନ୍ତୁ ପ୍ରଦୀପାଲୋକ ସାହାଯ୍ୟରେ ଇପ୍ସିତ-ପଦାର୍ଥକୁ ଗ୍ରହଣ କରି ଅନିଷ୍ଟକରର ପ୍ରତିକାର କରାଯାଇଥାଏ, ସେହିପରି ଜନ୍ମ-ଜନ୍ମାନ୍ତର ସ୍ୱକୃତ ଇଷ୍ଟାନିଷ୍ଟ କର୍ମର ଭଲ ବା ମନ୍ଦଫଳ ଯାହା କି ଇହଜନ୍ମରେ ଭୋଗ କରିବାକୁ ହେବ, ତାହା ସବୁ ଜନ୍ମ-ଲଗ୍ନାଦି ଅନୁସାରେ ନିଜର କୋଷ୍ଠିରେ ନିହିତ ଥାଏ ।

ସନ୍ତାନଟିଏ ଜନ୍ମ ହେଲେ ସମସ୍ତେ ଜନ୍ମପତ୍ରିକା କରାଇ ଥାନ୍ତି; କିନ୍ତୁ ଅଧିକାଂଶ ଲୋକେ ଜନ୍ମ ସମୟ ନିରୂପଣ କରି ପାରନ୍ତି ନାହିଁ । ଆଜି ଅନାଡ଼ି ବା ନାମମାତ୍ରଙ୍କ ଜ୍ୟୋତିଷଙ୍କ ସମୟ, ଲଗ୍ନ, ଗ୍ରହସ୍ଥିତିର ବ୍ୟତିକ୍ରମ ମଧ୍ୟ କରିଥାନ୍ତି । ତେଣୁ ଭଲ-ଜ୍ୟୋତିଷଙ୍କ ହେଲେ ମଧ୍ୟ ତାକୁ ଆଲୋଚନା କରି ଭଲ ବା ମନ୍ଦଫଳ କହିଲେ ବ୍ୟତିକ୍ରମ ଘଟିଥାଏ । ଯେବେ ଉପଯୁକ୍ତ ଜ୍ୟୋତିଷଙ୍କ ଉତ୍ତମରୂପେ ଆଲୋଚନା କରି ଗ୍ରହମାନଙ୍କର ବଳାବଳ, ଅବସ୍ଥା, ସ୍ଥିତି, ଅଧିପତି, ଦ୍ରଷ୍ଟା, କାରକ ଏହି ସବୁ ବିଷୟକୁ ଠିକରୂପେ ଆଲୋଚନାଦ୍ୱାରା ଚଞ୍ଚଳତା ଦୂର କରି ନିରୂପିତ ଫଳ କହେ, ତେବେ ସେ ଫଳ ନିଶ୍ଚୟ ଘଟିବଇ ଘଟିବ । ଭବିଷ୍ୟତକୁ ଅନିଷ୍ଟ ଥିଲେ ସେହି ଜ୍ୟୋତିର୍ଷ ଶାସ୍ତ୍ର ଅନୁସାରେ ନିରୂପିତ ପ୍ରତିକ୍ରିୟା ସମ୍ପଯୁକ୍ତ ନୈଷ୍ଠିକ ବ୍ରାହ୍ମଣଦ୍ୱାରା ବୈଦିକ-କର୍ମକାଣ୍ଡାନୁଯାୟୀ ସମ୍ପଯୁକ୍ତ ଶାନ୍ତି

କରାଗଲେ ଭବିଷ୍ୟତର ଉଷ୍ଟ ନିବାରଣ ହୋଇଥାଏ; ମୃତ୍ୟୁକୁ ମଧ୍ୟ କିଛି ଦିନ ଘୁଞ୍ଚାଇ ଦିଆ ଯାଇପାରେ।

ବିବାହ ତତ୍ତ୍ୱ

ଅଶେଷ ବ୍ରହ୍ମାଣ୍ଡ ଓ ଜଳ-ସ୍ଥଳାକାଶସ୍ଥ ଦୃଶ୍ୟ ଦିଶ୍ୟାଦି ସମସ୍ତ ତତ୍ତ୍ୱବେତ୍ତା, ବିଶେଷତଃ ଇହଜଗତସ୍ଥ ଚତୁର୍ବିଧ ଶରୀରଧାରୀ ମାନେହିଁ ଯାହାଙ୍କର କରାମଳକ ତୁଲ୍ୟ, ସେହି ତ୍ରିକାଳଜ୍ଞ ଉଦ୍ଭୂତ ବିଜ୍ଞାନବେତ୍ତା ମହାତ୍ମା ମହର୍ଷିମାନେ ଜ୍ୟୋତିର୍ବେଦରେ ନିରୂପଣ କରିଥିବା ଇହଜଗତସ୍ଥ ମାନବ-ମାନଙ୍କର ଆକାଶସ୍ଥ ଗ୍ରହ, ନକ୍ଷତ୍ରମାନଙ୍କ ସହ ଆକର୍ଷଣାତ୍ମକ ଅଲକ୍ଷ ସମ୍ପର୍କ ବରାବର ଅଛି। ଆଧୁନିକ ଜଡ଼ବିଜ୍ଞାନାଂଶ ବେତ୍ତା ଅନୁସନ୍ଧାନେଚ୍ଛୁ ତାହାର କେତେକାଂଶ ଅନୁସନ୍ଧାନଦ୍ୱାରା ମୁଣ୍ଡ ଟେକାଇ କେତେକ ମାନି ମାନୁଛନ୍ତି। ସେ ଯାହା ହେଉ ଜ୍ୟୋତିର୍ବେଦ ନିର୍ଦ୍ଦିଷ୍ଟାନୁସାରେ ମାନବମାନଙ୍କର ଯେ ଯେ ଗ୍ରହ ନକ୍ଷତ୍ରମାନଙ୍କର ସମ୍ପର୍କ ନେଇ ଯେଉଁ ଯେଉଁ ଗ୍ରହାଦିଙ୍କ ଦଶାରେ ଜନ୍ମାନ୍ତରୀୟ ଉତ୍ତମମଧ୍ୟମାଧମ ଫଳ ବରାବର ଘଟିଥାଏ। ଅତଏବ ସେହି ସେହି ଗ୍ରହ-ନକ୍ଷତ୍ର-ଲଗ୍ନ ଜାତ ସମୁପଯୁକ୍ତ ଅସଗୋତ୍ର ସ୍ୱସ୍ୱରକ୍ତଗତ ବର୍ଣ୍ଣାନ୍ତର୍ଗତ ପରଂପରା ପ୍ରଚଳିତ କୁଳାନୁଯାୟୀ ଦିଶମେଳକାତ୍ମକ ବର-କନ୍ୟାମାନେ ବିବାହ-ବନ୍ଧନଦ୍ୱାରା ଗୃହସ୍ଥାଶ୍ରମ କରିବା ସମୁଚିତ। ଗର୍ଭାଧାନ ବା ସହବାସ ସମ୍ବନ୍ଧେ ମଧ୍ୟ ସେହି ଶାସ୍ତ୍ରରେ ନିର୍ଦ୍ଦେଶ ଅଛି। ଚତୁର୍ବିଂଶ-ତତ୍ତ୍ୱାତ୍ମକ ତ୍ରି-ଶରୀର ସମନ୍ୱିତ ସପ୍ତକୌଣିକ ଶରୀର ବା ସପ୍ତଧାତୁ ସଂଶ୍ଳିଷ୍ଟ ବା ଆକର୍ଷଣ ଓ ପ୍ରତ୍ୟାକର୍ଷଣଦ୍ୱାରା ସମ୍ଭୋଗ କ୍ରିୟା ହୋଇଥାଏ; ମଧ୍ୟ ଶରୀରର ସର୍ବଶ୍ରେଷ୍ଠ ସାର ବା ରଜ-ବୀର୍ଯ୍ୟ ଏକତ୍ର ହୋଇଥାଏ। ପାପ ପୁଣ୍ୟଜନିତ ଦୋଷ ଗୁଣ ଓ ରୋଗାଦି ମଧ୍ୟ ପରସ୍ପର ସଂଗ୍ରହ ହୋଇଥାଏ। ସେହି ହେତୁ ଦମ୍ପତିଙ୍କର

ସହବାସ ପୂର୍ବରୁ ବିବାହାଦି ସମୟେ ଉଭୟ କୁଳର କର୍ତ୍ତାଙ୍କ-ଦ୍ୱାରା ସ୍ୱସ୍ୱ ମାତୃ-ପିତୃଗଣ, ଦିକ୍‌ପାଳାଦି ସମସ୍ତ ଦେବତା, ଗ୍ରହ-ନକ୍ଷତ୍ରାଦି, ଗ୍ରାମାଧିଷ୍ଠାତ୍ରୀ ଦେବତା, ନିତ୍ୟୋପାସ୍ୟ ଦେବତା, ଯଥୋକ୍ତ ଅଗ୍ନିଦେବତା ପ୍ରଭୃତିଙ୍କ ଆବାହନ ଓ ଅର୍ଚ୍ଚନା ପୂର୍ବକ ଗୁରୁ, ପୁରୋହିତ, ବ୍ରାହ୍ମଣ, ଇଷ୍ଟମିତ୍ର, ବନ୍ଧୁ ବାନ୍ଧବାଦି ସମସ୍ତଙ୍କ ସାକ୍ଷ ପ୍ରତ୍ୟକ୍ଷରେ ନାନାପ୍ରକାର ବାଦ୍ୟ ଧ୍ୱନିଦ୍ୱାରା ସମସ୍ତଙ୍କୁ ଜଣାଇ ମହାବାକ୍ୟ ଓ ପାଣିଗ୍ରହଣ ( ସାର୍ଥକ ) ମନ୍ତ୍ରଦ୍ୱାରା ବିବାହ ବନ୍ଧନ ନିଷ୍ପନ୍ନ ହୋଇଥାଏ । ଯଥାକାଳରେ ସହବାସ ଜନିତ ଦୋଷ ପରିହାରାର୍ଥେ ପ୍ରାର୍ଥନା କରାଯାଇଥାଏ । ତେବେ ମଧ୍ୟ ଉଭୟ ବା ପରସ୍ପରର ପାପ ପୁଣ୍ୟ ସମ୍ବନ୍ଧ ହେତୁ ଚିରକାଳ ସାବଧାନ ରହିବାକୁ ନିର୍ଦ୍ଦେଶ ଦିଆଯାଇଥାଏ । ପାପଦ୍ରଷ୍ଟାଙ୍କ ସାକ୍ଷ ହେତୁ ସମ୍ଭୋଗଜନିତ ପାପ ଭାଗୀ ହେବାକୁ ପଡ଼େ ନାହିଁ । ଅତଏବ ଏ ସବୁର ବ୍ୟତିକ୍ରମ ବା ବ୍ୟଭିଚାର ହେଲେ ତଜ୍ଜନିତ ନର୍କ ଭୋଗର ପ୍ରତିକାର ହୋଇପାରେ କି ?

ଜନ୍ମାନ୍ତର ସୁକୃତ ଓ ଦୁଷ୍କୃତ ହେତୁ କୋଷ୍ଠିରେ ଜନ୍ମ ନେଇ ଯେ ଗ୍ରହସ୍ଥିତି, ସମ୍ବନ୍ଧ ଚତୁଷ୍ଟୟ ଏବଂ ସପ୍ତାଙ୍ଗାଦିର ବ୍ୟତିକ୍ରମାତ୍ମକ ଦୋଷ ବା ଶୁଭାତ୍ମକ ଯୋଗାଦି ନିର୍ଦ୍ଦିଷ୍ଟ ଥାଏ, ସେହି ସେହି କୋଷ୍ଠି ନିରୂପିତ ପୁତ୍ରକନ୍ୟାମାନଙ୍କର ପରସ୍ପର ସମ୍ପୃକ୍ତ ଅର୍ଥାତ୍ ଦୋଷସ୍ଥକୁ ଦୋଷସ୍ଥ ଏବଂ ଶୁଭସ୍ଥକୁ ଶୁଭସ୍ଥ ବିଷୟକୁ ଜ୍ୟୋତିର୍ବେଦାନୁସାରେ ଦଶମେଳକକୁ ଉତ୍ତମରୂପେ ଆଲୋଚନାଦ୍ୱାରା ମିଳାଇ ଯଦି ବିବାହ ବନ୍ଧନ କରାଯାଏ, ତେବେ ସେ ଦମ୍ପତିଙ୍କର ଅଶାନ୍ତି, ଦୁର୍ଘଟନା, ମନୋମାଳିନ୍ୟାଦି ଦୁଃଖ କଦାଚ ଘଟିବ ନାହିଁ ଏବଂ ସୁସନ୍ତାନ ସନ୍ତତିର ମାତା ପିତା ହୋଇ ପରସ୍ପରାନୁରାଗାତ୍ମକ ପ୍ରେମରେ ଆଜୀବନ କାଳାତୀତ ହେବାର ହେବ । ଇହଜନ୍ମରେ

ଜ୍ୟୋତିର୍ବେଦ ବିଶ୍ୱାସରୁ ଜନ୍ମାନ୍ତର ଦୁଷ୍କୃତ ଜନିତ ଦୋଷ ଲାଘବ ହୋଇଥାଏ । ମେଳକ ବ୍ୟତିକ୍ରମାତ୍ମକ ଅସୁରିକ ବା ପ୍ରବୃତ୍ତି ମାର୍ଗାତ୍ମକ ରୂପ ଲାବଣ୍ୟ ବା ଅର୍ଥପିପାସାରେ ମୋହିତ ହୋଇ ବିବାହ କଲେ ଅପୂରଣ କାମ, ବିଭ୍ରାନ୍ତ ଲାଳସାରେ ମାତ୍ର ଆଜୀବନ ଅଶାନ୍ତିଜନକ ଦୁଃଖ, ଅଭାଗ୍ୟବନ୍ତ ଦୋଷ, ବିଚ୍ଛେଦ ଓ ଭ୍ରଷ୍ଟକ୍ରିୟା ଏବଂ ସନ୍ତପ୍ତାନ୍ତଃକରଣରେ କାଳାତୀତ ହେଉଥିବ । ଦେହାନ୍ତେ ନାରକୀୟ ଗତି ମଧ୍ୟ ହୋଇପାରେ । ମେଳକାତ୍ମକ ସମୁଚିତ ବୈଦିକ ବିଧି ବିବାହିତ ସାଧାରଣ ଦମ୍ପତି ଅପଦ ବିପଦ ରୋଗାଦିରେ କ୍ଷୁଧା ତୃଷା ନିଦ୍ରାଳାସ୍ୟାଦି ଦୂର କରି ଯତ୍ନରେ ନାସ୍ତି ପ୍ରାଣପ୍ରାଧିଷ୍ଠିତ ହୋଇ ଯେପରି ପରସ୍ପରକୁ ସେବା ଶୁଶ୍ରୂଷା କରିଥାନ୍ତି, ବ୍ୟତିକ୍ରମାଦି ବିବାହ ବା ଅନ୍ୟାନ୍ୟ ପକ୍ଷରେ ତାହା ହୋଇ ନ ପାରେ ।

## ସମ୍ଭୋଗ ଓ ସେବା ସୁଖ

ସ୍ତ୍ରୀମାନଙ୍କ ଶରୀରର ସର୍ବଶ୍ରେଷ୍ଠ ସାର ବା ରଜଃ ପ୍ରକୃତିଗତ ସ୍ଖଳନ ହୋଇଥାଏ; କିନ୍ତୁ ପୁରୁଷମାନଙ୍କର ସର୍ବଶ୍ରେଷ୍ଠ ସାର ବା ରେତ ସ୍ଖଳନ ସ୍ୱେଚ୍ଛାଧୀନ । କିନ୍ତୁ ପୁରୁଷ ତାହା ନିର୍ଗତ କରି ଦେବାପାଇଁ ଅପେକ୍ଷାକୃତ ଅଧିକ ଆତୁର ହୋଇଥାଏ । ସମ୍ଭୋଗ-ଜନିତ ସୁଖ ପୁରୁଷ ଅପେକ୍ଷା ସ୍ତ୍ରୀ ଅଧିକ ଅନୁଭବ କରିଥାଏ । ସ୍ତ୍ରୀ ଜାତି ଜନ୍ମଗତ ସ୍ୱଭାବଶୀଳ ଲଜ୍ଜାହେତୁ, ତାହା ଉପରେ ପ୍ରକାଶ ପାଏ ନାହିଁ । ଏ ବିଷୟ ଅନୁମାନ ବା ଅନୁଭବଦ୍ୱାରା ନିର୍ଣ୍ଣୟ କରାଯାଇ ନ ପାରେ । ମହାଭାରତ ଆଦିପର୍ବ ଏବଂ ଶ୍ରୀମଦ୍ଭାଗବତ ନବମ ସ୍କନ୍ଧରେ ବର୍ଣ୍ଣିତ ଅଛି;—ଶ୍ରାଦ୍ଧଦେବ ମନୁଙ୍କ କନ୍ୟା 'ଇଳା' ପରିଣତେ 'ସୁଦ୍ୟୁମ୍ନ ପୁରୁଷ' ତତ୍ପରେ ସ୍ତ୍ରୀ ଶରୀର ପ୍ରାପ୍ତ ହୋଇ ଅନ୍ୟ ଯଥା 'ବୁଧ' ସମ୍ଭୋଗରେ ଉଭୟାତ୍ମକ ସୁଖ ଅନୁଭବ କରିଥିବା, ମଧ୍ୟ ସ୍ତ୍ରୀତ୍ୱ ସମ୍ଭୋଗଜନିତ ଅଧିକ ସୁଖ

ମମତା ହେତୁ ତଜ୍ଜାତ ପୁତ୍ର ପ୍ରତି ବିଶେଷ ଶ୍ରଦ୍ଧାବାନ୍ ହେଲେ । ଫଳରେ 'ପୁରୁରବା' ସବିଶେଷ ଖ୍ୟାତି ଲଭି ରାଜଚକ୍ରବର୍ତ୍ତୀ ହୋଇଥିଲେ । ପୁଣି ସେହି ମହାଭାରତ ଅନୁଶାସନ ପର୍ବରେ ଭଙ୍ଗା ଋଷି ଓ ଇନ୍ଦ୍ରଦେବଙ୍କ ସମ୍ବାଦରେ ଭୀଷ୍ମ ଯୁଧିଷ୍ଠିରଙ୍କୁ ସ୍ତ୍ରୀ ସମ୍ଭୋଗଜନିତ ଅଧିକ ସୁଖ ଅନୁଭବ କରିବା ବିଷୟ ପ୍ରଚ୍ଛିନ୍ନ ଭାବରେ ବୁଝାଇଛନ୍ତି ।

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସି ।" ଜନ୍ମଭୂମି, ଜନନୀ ଜନକ ଭଗିନୀ ଭ୍ରାତା ଓ ରକ୍ତଗତ ସମସ୍ତ କୁଟୁମ୍ବାଦି, ବାଲ୍ୟାବଧି ସ୍ନେହ-ମୋହ ରଜ୍ଜୁବଦ୍ଧ ସମସ୍ତ ସହଚରୀ ସହଚରାଦି, ରକ୍ତଗତ ବନ୍ଧୁବାନ୍ଧବାଦି, ମମତାତ୍ମକ ଗୃହ ବିଭବାଦି ସମସ୍ତ ମମତା ତେଡ଼ିଦେଇ ବଶେଷତଃ ସମସ୍ତ ଅପରିଚିତ ଜନସମାଜ ଓ ସ୍ଥାନରେ କେଉଁ ସର୍ବଶ୍ରେଷ୍ଠ ସୁଖସଲିଳରେ ନିମଗ୍ନ ହୋଇ ମାନବୀମାନେ ପ୍ରେମାନନ୍ଦରେ ମଜ୍ଜି ଯାଇଥାନ୍ତି ? ପୁଂଜାତି ପକ୍ଷରେ ତାହା ହୋଇପାରିବ କି ? ବ୍ୟତିକ୍ରମରେ ଅଶାନ୍ତିର ସମ୍ଭାବନା । ରେତ ନିର୍ଗତ ପରେ ପୁଂଜାତି ନିସ୍ତେଜ; କିନ୍ତୁ ଶାରୀରିକ ଅବସନ୍ନତା ବ୍ୟତୀତ ସ୍ତ୍ରୀଜାତି ମୁହୁର୍ମୁହୁ ଆନନ୍ଦିତା । ସାଧାରଣୀ ସମାଜରୁ ଅନୁମେୟ, ସ୍ତ୍ରୀ ଆକାଂକ୍ଷା ତେଡ଼ି ପୁରୁଷ ପାପଭାଗୀ ହୋଇପାରେ; କିନ୍ତୁ ପୁଂ ଆକାଂକ୍ଷା ତେଡ଼ିଲେ ସ୍ତ୍ରୀର ପାପ ହୋଇପାରେ କି ? ପୁରାଣାଦି ଦ୍ରଷ୍ଟବ୍ୟ ।

ଦୃଙ୍ମନଃ ସଙ୍ଗ ସଙ୍କଳ୍ପୋ ଜାଗରଃ କୃଶତାରତିଃ ।
ହ୍ରୀତ୍ୟାଗୋନ୍ମାଦମୂର୍ଚ୍ଛାନ୍ତା ଇତ୍ୟନଙ୍ଗଦଶାଦଶଃ ॥

ଏହି ଦଶସଂଖ୍ୟକ ଅନଙ୍ଗପୀଡ଼ା ବା ଦଶା ଶୃଙ୍ଗାର ରସୋତ୍ସୁକା ମାନବୀମାନେ ଅପେକ୍ଷାକୃତ ସବଶେଷ ଅଧିକ ଲଭିଥାନ୍ତି । ଗୀତଗୋବିନ୍ଦ ୨ୟ ସର୍ଗ ଦ୍ୱିତୀୟ ଶାଖା ସମସ୍ତ ବିଶେଷତଃ ସପ୍ତଦଶ ପଦ୍ୟରେ ଶୃଙ୍ଗାରରସୋତ୍ସୁକା ସର୍ବୋତ୍କୃଷ୍ଟ ବଳାସଲକ୍ଷଣା ରତିରସାତ୍ମିକା ରାଧା ଉପମେୟ; ଯଥା—

"ରତିସମୟରସାଳସ୍ୟା ଦରମୁକୁଳିତ ନୟନ ସରୋଜଂ ।
ନିଃସହ ନିପତିତ ତନୁଲତୟା ମଧୁସୂଦନମୁଦିତ ମନୋଜଂ ।"

ପୁରୁଷ ସ୍ୱ-ଶରୀରର ସର୍ବଶ୍ରେଷ୍ଠ ସାର ବା ରେତ ନିର୍ଗତ କରିଦେଇ ପରିଣାମରେ ବିଷମୟ-ଫଳ ଓ କ୍ଳାନ୍ତ ଲଭିଥାଏ ।
ବିଷୟେନ୍ଦ୍ରିୟ ସଂଯୋଗାଦ୍‌ଯତ୍ତଦଗ୍ରେଽମୃତୋପମଂ ।
ପରିଣାମେ ବିଷମିବ ତତ୍ସୁଖଂ ରାଜସଂ ସ୍ମୃତଂ । ଗୀତା ୧୮ ଅ: ୩୮

ପୁରୁଷ ଅବସ୍ଥା ଓ କୌଳିକ ପ୍ରଥାନୁଯାୟୀ ଯଥୋପଯୁକ୍ତ ଭାବେ ସ୍ତ୍ରୀଙ୍କ ରକ୍ଷା, ପାଳନଦ୍ୱାରା ସମୁଚିତ ସେବା ସୁଖ ଏବଂ ସମୁଚିତ ସମ୍ଭୋଗସୁଖ ଲଭିଥାଏ । ସ୍ତ୍ରୀ ପୁରୁଷକୁ ସାତ୍ତ୍ୱିକ ଓ ରାଜସିକ ସେବା କରି ତଜ୍ଜନିତ ସୁଖ ଓ ଅଙ୍କାଲିଙ୍ଗନାଦି ଏବଂ ସମ୍ଭୋଗଜନିତ ସୁଖ ଅପେକ୍ଷାକୃତ ଅଧିକ ଲଭିଥିବାରୁ ଗର୍ଭକଷ୍ଟ ଓ ପ୍ରସବ ବେଦନା ଲଭିଥାଏ । ସ୍ତ୍ରୀ ପୁରୁଷକୁ ସେବା କରିବା ବିଷୟ ଆଧୁନିକ ରାକ୍ଷସ ଓ ପାଶବିକ ମତରେ ଅପସନ୍ଦ ହୋଇପାରେ; କିନ୍ତୁ ବ୍ରହ୍ମାଣ୍ଡର ଆଦି କାରଣ କ୍ଷୀରାବ୍ଧିବୈକୁଣ୍ଠ ଶେଷଶାୟୀ ନାରାୟଣଙ୍କୁ ଆଦ୍ୟାଶକ୍ତି ଲକ୍ଷ୍ମୀ ଓ ସରସ୍ୱତୀ ପାଦ ସେବା ଏବଂ ବ୍ୟଜନ ସେବା କରିବା ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ଅଛି । ଅଧିକାଂଶ ଦେବାଳୟରେ ସେହି ମୂର୍ତ୍ତି ପୂଜିତ ହେଉଛନ୍ତି; ଆଜି ମଧ୍ୟ ସେ ଆକୃତିରେ ଫଟୋଛବି କେତେକ ପୁସ୍ତକରେ ନିଦ୍ଧିତ । ପରସ୍ପର ଦମ୍ପତିଙ୍କ ମଧ୍ୟରେ ସ୍ନେହ ପ୍ରେମାନୁରାଗ କୌତୁକ ପରିହାସାତ୍ମକ ସୁଖ ଏବଂ ଯଥୋପଯୁକ୍ତ ସେବା ସୁଖ ଆଗରେ ବେଠି ତୁଲ୍ୟ, ଭୟ ବା ମନ ଦେଖା ସେବା-ସୁଖ ମେରୁ ସର୍ଷପ ତୁଲ୍ୟ । ( ଭାଗବତ ୧୦ମ ସ୍କନ୍ଧ ୬୦ ଅଧ୍ୟାୟରେ ରୁକ୍ମିଣୀ କୃଷ୍ଣଙ୍କ ସମ୍ବାଦ ଦ୍ରଷ୍ଟବ୍ୟ ) ।

ସେ ଯାହା ହେଉ, ତାମସିକ ସେବା କରିବାକୁ ବହୁ ସଂଖ୍ୟକ ଦାସ ଦାସୀ ଥିଲେ ମଧ୍ୟ ବିଶିଷ୍ଟା ରାଜପତ୍ନୀମାନେ ପତିସେବା କରିବାର ଶୁଣାଅଛୁ । ମହାଭାରତ ବନପର୍ବାନ୍ତର୍ଗତ

ନଳୋପାଖ୍ୟାନୋକ୍ତ ବିଚ୍ଛେଦ ସମୟରେ ଜୀବିତାଶା ତ୍ୟାଗ କରି ଦମୟନ୍ତୀ ଭାବୁଛନ୍ତି,—ନଳଙ୍କୁ ଉତ୍ତମ ରାଜକନ୍ୟା ମିଳିବେ, କିନ୍ତୁ ସେ ମୋପରି ନଳଙ୍କ ମନ ଜାଣି ସେବା କରିପାରିବେ ନାହିଁ । ସେ ସ୍ନେହ ଓ ପ୍ରେମକୁ ଧନ୍ୟ ! ଅଧୁନିକ ସଭ୍ୟସମାଜର ମତ,—ସ୍ତ୍ରୀ ଯେପରି ଜଣେ, ପୁରୁଷ ସେହିପରି ଜଣେ । ଅତଏବ ତୋର ପାଞ୍ଚସେର, ମୋର ପାଞ୍ଚସେର, ସମାନ ପଡ଼ର ଧକ୍କା । ସର୍ବଶ୍ରେଷ୍ଠ ଶୃଙ୍ଗାର ରସଜ୍ଞ କବିବର ରାଜା ଉପେନ୍ଦ୍ରଭଞ୍ଜ ଲେଖିଛନ୍ତି,—

"ଯେ ନାରୀ ପତିଙ୍କ ରତାନ୍ତରେ, ବିଞ୍ଚୁଥିବ କାନ୍ତ ପଣନ୍ତରେ,
ସେ କି ପ୍ରଶଂସିବ ଦକ୍ଷିଣା ପବନ ସୁଖକାରି ବୋଲି ବସନ୍ତରେ ।"

ନିଜର ବହୁ ସଂଖ୍ୟକ ସେବକୀ ଥିଲେହେଁ ଅଦ୍ୟାଶକ୍ତି ଭୀଷ୍ମଙ୍କ ନନ୍ଦନୀ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କୁ ସେବା କରିବାର ଶ୍ରୀମଦ୍ଭାଗବତ ୧୦ମ ସ୍କନ୍ଧ ୬୦ ଅଧ୍ୟାୟରେ ବର୍ଣ୍ଣିତ ଅଛି ।

ପୟଃ ଫେନନିଭେଶୁଭ୍ରେ ପର୍ଯ୍ୟଙ୍କେ କଶିପୂତ୍ତମେ ।
ଉପତସ୍ଥେ ସୁଖାସୀନଂ ଜଗତାମୀଶ୍ୱରଂ ପତିଂ । ୬ ।
ବାଲବ୍ୟଜନମାଦାୟ ରତ୍ନଦଣ୍ଡଂ ସଖୀକରାତ୍ ।
ତେନ ବିଜୟତୀ ଦେବୀ ଉପାସାଞ୍ଚକ୍ରେ ଈଶ୍ୱରଂ । ୭ ।

"ଭୀଷ୍ମକ ନନ୍ଦନୀ ରୁକ୍ମିଣୀ ପର୍ଯ୍ୟଙ୍କୋପରି ଦୁଗ୍ଧଫେନନିଭ ଉତ୍ତମ ଶଯ୍ୟାରେ ସୁଖାସୀନ ଜଗଦୀଶ୍ୱର ନିଜ ସ୍ୱାମିଙ୍କର ସେବା କରିବାରେ ଲାଗିଲେ । ଦେବୀ ସଖୀହସ୍ତରୁ ରତ୍ନଦଣ୍ଡ ବିଶିଷ୍ଟ ବ୍ୟଜନ ଗ୍ରହଣ କରି ସ୍ୱୟଂ ବ୍ୟଜନ ପୂର୍ବକ ଈଶ୍ୱରଙ୍କର ସେବାରେ ଲାଗିଲେ ।"

ବର୍ତ୍ତମାନ କାଳର ଗତିରେ ସେବ୍ୟ ସେବକଙ୍କ ମଧ୍ୟରେ ଅଧିକାଂଶ ବିପରୀତ, ଯଥା ପତି ପତ୍ନୀର, ପିତା ପୁତ୍ରର, ଗୁରୁ ଶିଷ୍ୟର ବା ଚେଲାର ସେବା ଓ ସ୍ନେହରେ ମଜ୍ଜିଛନ୍ତି । ସେବକ ମଧ୍ୟ ସେବାର ଦ୍ୱେଷ ଓ ବିପରୀତାଚରଣ କରୁଛନ୍ତି ।

ମେଳକ ଓ ବେଦୋକ୍ତ ବିଧି ବ୍ୟତିକ୍ରମ ବିବାହ ଏବଂ ପରସ୍ପର ବ୍ୟଭିଚାରର ଦୋଷରେ ସେ ସୁଖ ଦୁର୍ଲ୍ଲଭ । ଅତି ପୂର୍ବ ପ୍ରଚଳିତ ଧରଣାତ୍ମକ ଆର୍ଯ୍ୟଜାତି ସମାଜ ଋତୁଜନାର୍କଣ୍ଠ ଯୁବକ ଦମ୍ପତିଙ୍କର ଅକସ୍ମାତ୍ ପରସ୍ପର ଅକାଳ ସାକ୍ଷାତ ଦୃଷ୍ଟି ନିକ୍ଷେପ ଜନିତ ଶୃଙ୍ଗାର ରସାତ୍ମକ ହାବଭାବ ସମନ୍ୱିତ ପ୍ରେମାନନ୍ଦମୟ ଯେ ରାଜସିକସୁଖ ଅନୁଭବ ହୋଇଥାଏ, ସେ ସୁଖର ମାଧୁର୍ଯ୍ୟ ସେହିମାନେ କେବଳ ଜାଣନ୍ତି । ଅତି ଏକାନ୍ତ ଅସାବଧାନତା ଅବଲୀଳାକ୍ରମରେ ଅତର୍କିତ ବା ଲୁଚିକରି ଗୁପ୍ତ ଦର୍ଶନାତ୍ମକ ପ୍ରେମମୟ ସୁଖ ମଧ୍ୟ ପରସ୍ପର ସେହିମାନେ ଅନୁଭବ କରିଥାନ୍ତି । ପିତା ମାତାରେ ପରିଣତ ହେଲେ ସେ ସୁଖ ଅବଶ୍ୟ ଶିଥିଳ ହୋଇଥାଏ । ଆଧୁନିକ ଶିକ୍ଷିତ ସମାଜକୁ ସେ ସୁଖର ଗନ୍ଧମାତ୍ର ନଦାରଦ । ପିତ୍ରାଳୟ ପ୍ରବାସ ହେତୁ ବିଚ୍ଛେଦ ପରେ ସମାଗମ ସମୟେ ପରସ୍ପର ଦମ୍ପତିଙ୍କ ହୃଦୟରେ ଯେ ଆନନ୍ଦକଲ୍ଲୋଳ ଉଦ୍‌ବେଳିତ ହୋଇଥାଏ, ତାହା ଅନୁଭବୀ ବ୍ୟତୀତ ଅନ୍ୟକୁ ନଦାରଦ । ସର୍ବଦା ସହସଙ୍ଗସ୍ଥିତ ଦମ୍ପତି ଓ ବ୍ୟଭିଚାର-ରତମାନେ ସେ ସୁଖରୁ ବଞ୍ଚିତ । ମହାକବିମାନଙ୍କ ସଂସ୍କୃତ କାବ୍ୟ ଅତି ଉପେନ୍ଦ୍ରଭଞ୍ଜାଦି କବିମାନଙ୍କ ରଚିତ ଉତ୍କଳ ଭାଷା କାବ୍ୟ ଲିଖିତ ବିଚ୍ଛେଦ ମିଳନ ବିଷୟ ଦ୍ରଷ୍ଟବ୍ୟ । ବିଶେଷତଃ ଜନ୍ମାନ୍ତର ସନ୍ତ୍ରାଧକ 'ଚିତ୍ରକେତୁ' ସତୀ ଶାପ ନିବନ୍ଧନ ପରଜନ୍ମେ 'ବୃତ୍ରାସୁର' ପ୍ରାଣ ପ୍ରୟାଣ ସମୟେ ଭଗବାନଙ୍କୁ ଶେଷ ନିବେଦନ କରିଥିଲେ; ଯଥା—

ଅଜାତପକ୍ଷାଇବ ମାତରଂ ଖଗା ସ୍ତନ୍ୟଂ ଯଥା ବତ୍ସତରା କ୍ଷୁଧାର୍ତ୍ତା ।
ପ୍ରିୟଂ ପ୍ରିୟେବବ୍ୟୁଷିତଂ ବିଷଣ୍ଣା ମନୋରବିନ୍ଦାକ୍ଷ ଦିଦୃକ୍ଷତେ ତ୍ୱାଂ ॥

ଅଜାତପକ୍ଷ ପକ୍ଷୀଶାବକ କ୍ଷୁଧାହେତୁ ଯେପରି ତାର ମାତାକୁ, କଅଁଳା ବାଛୁରି ଯେପରି ତାର ମାତା ବା ମାତା କ୍ଷୀରକୁ, କାମପୀଡ଼ିତା ପତିବ୍ରତା ଯୁବତୀ ଦୂରଦେଶଗତ ତାର

ପ୍ରିୟ ପତିଙ୍କ ଦେଖିବାପାଇଁ ଯେପରି ଲାଳାୟିତ ହୁଅନ୍ତି, ହେ ପଦ୍ମନୟନ ! ତୁମ୍ଭଙ୍କୁ ଦେଖିବାପାଇ ମୋ ମନ ସେହିପରି ଉତ୍କୁଳ ହୋଇ ଇଚ୍ଛା କରୁଅଛି । ଭାଃ ୬ ସ୍କଃ ୧୧ ଅଃ ୨୪ ଶ୍ଳୋକ ।

ଜଗତରେ ଜନକ ଜନନୀ ଜନ୍ମିତ ସନ୍ତାନଙ୍କୁ ବାଲ୍ୟାବସ୍ଥାରେ ସମୁପଯୁକ୍ତ ଖାଦ୍ୟଦାନ ଓ ବାତ୍ସଲ୍ୟ ଲାଳନ ପାଳନ ଏବଂ ଅଲଙ୍କାରାଦି ସୁଖ ଦେଇଥାନ୍ତି; କିନ୍ତୁ କୋଷ୍ଠି ମେଳକ ଶୁଦ୍ଧିବା ଓ ବୈଦିକ ବିବାହିତ ଦମ୍ପତି ପରସ୍ପର ସମସ୍ତପ୍ରକାର ସାତ୍ତ୍ୱିକ ରାଜସିକ ସ୍ନେହ ସମ୍ଭୋଗ ଓ ସମ୍ପ୍ରଯୁକ୍ତ ସ୍ୱେଚ୍ଛା ଉତ୍ସାହାତ୍ମକ ସୁଖ ଆଦାନ ପ୍ରଦାନଦ୍ୱାରା ଆନନ୍ଦ ଏବଂ ଶାନ୍ତି ଲଭିଥାନ୍ତି । ସେବକାଦିଙ୍କ ଭକ୍ତି ବେଠି ତୁଲ୍ୟ ମନ ଯୋଗା ସେବା ସୁଖ ଓ ବିବାହ ବ୍ୟତିକ୍ରମ ଏବଂ ପରକଥା ସମ୍ଭୋଗ 'ସୁଖ' ହେଉଛି ଅମ୍ଳ ମଧୁର ରସ ମିଶ୍ରିତ 'ସ୍ୱାଦୁ' ପରି; କିନ୍ତୁ ନିଜ ସ୍ତ୍ରୀର ଗେଲ ବା ଆହ୍ଲାଦଜନକ ସେବା ଓ ସମ୍ଭୋଗ ସୁଖ ହେଉଛି ଉଭୟ ରସାତ୍ମକ ସୁମିଷ୍ଟ ସୁଗନ୍ଧ ଆମ୍ରରସ 'ସ୍ୱାଦୁ'ପରି । ସମୟକ୍ରମେ ଯଦି ଦମ୍ପତି ମଧ୍ୟରେ ରାଗ ଅଭିମାନ ରୁଷାରୁଷି ମନାନ୍ତର ଘଟିଥାଏ, ଭିତର ସ୍ୱେଚ୍ଛା ସ୍ନେହ ଓ ମମତା ହେତୁ କ୍ଷଣକପରେ ଆପଣା ଆପେ ଲୀନ ହୋଇ 'ପାଂଶାବୃତ ଜ୍ୱଳନକାଷ୍ଠ ଘର୍ଷଣାନ୍ତ ପରି' ପୂର୍ବ ମମତା ଓ ସ୍ନେହ ଅଧିକ ବଢ଼ିଥାଏ ।

ଅଜାଯୁଦ୍ଧେ ଋଷିଶ୍ରାଦ୍ଧେ ପ୍ରଭାତେ ମେଘଡମ୍ବର ।
ଦମ୍ପତ୍ୟୋଃ କଳହେ ଚୈବ ବହ୍ୱାରମ୍ଭୋ ଲଘୁକ୍ରିୟା ॥

ବିଶିଷ୍ଟା ଗୃହିଣୀମାନେ ସ୍ୱ-ପତିଙ୍କି ନିଜ ଶ୍ରେଷ୍ଠାଙ୍ଗ ଏବଂ ଗୁରୁଜ୍ଞାନରେ ଆଜୀବନ ପ୍ରତ୍ୟହ ପାଦମର୍ଦ୍ଦନାଦି ସବୁପ୍ରକାର ସେବାଦ୍ୱାରା ଆନନ୍ଦ ଅନୁଭବ କରିଥାନ୍ତି ।

"ପତିରେକୋ ଗୁରୁଃ ସ୍ତ୍ରୀଣାଂ । ଗୃଣକ୍ୟ ।

କେତେକ ସତୀ ପତିବ୍ରତା ଆଗ ପତି ପାଦୋଦକ ନ ପାଇଲେ ଅନ୍ୟ ଜଳାଦି କଦାଚ ସ୍ପର୍ଶ କରନ୍ତି ନାହିଁ । ଆଜୀବନ ସ୍ନେହାନୁରାଗ ସମନ୍ୱିତା, ସତ୍ସ୍ୱଭାବା, ସଦ୍ବଂଶଜା ବିଶିଷ୍ଟା ପତିବ୍ରତା ସତୀ ସ୍ତ୍ରୀମାନେ ଅଡ଼ମଧ୍ୟ ସର୍ବୈଶ୍ୱର୍ଯ୍ୟ-ଭୋଗିନୀ ରାଜପତ୍ନୀମାନେ ସଦ୍ଗତି ସକାଶେ ସବିଶେଷ ପ୍ରତିବନ୍ଧକ ବ୍ୟତୀତ ଉତ୍ସାହାନ୍ତଃକରଣ ଓ ଉସ୍ତୁକରେ ସହଗମନ କରୁଥିଲେ । ସେ ସମୟର ସଦ୍ଭାବାତ୍ମକ ଶାନ୍ତିସୁଖକୁ ଧନ୍ୟ ! ବିଧର୍ମାତ୍ମକ ଶାସନହେତୁ ସନାତନ ଧର୍ମରେ କୁଠାରା-ଘାତ ହୋଇ ତାହା ଅବରୁଦ୍ଧଦ୍ୱାରା ବ୍ୟଭିଚାର ଓ ଭ୍ରୂଣହତ୍ୟାଦି ମହାପାପ ଘୋଟି ସନାତନ ଧର୍ମରେ ବ୍ୟତିକ୍ରମ ଘଟିଅଛି । ପରସ୍ପର ଦମ୍ପତି ମଧ୍ୟରେ ସଙ୍ଗେ ସଙ୍ଗେ ଉଭୟଙ୍କର ଆକସ୍ମିକ ମୃତ୍ୟୁ ଘଟିଥିବାର ମଧ୍ୟ ଶୁଣାଅଛି । ବିଶେଷତଃ ଗୃହଲକ୍ଷ୍ମୀ ବିତ୍ତଶାଳିନୀ ବିଶିଷ୍ଟା ସ୍ତ୍ରୀମାନେ ଅବସ୍ଥାନୁଯାୟୀ ଗୃହର ସମସ୍ତ କାର୍ଯ୍ୟ ଯଥୋପଯୁକ୍ତ ଭାବରେ ନିର୍ବାହ କଲେ ମଧ୍ୟ ସ୍ୱହସ୍ତରେ ପାକ ସମ୍ପାଦନ କରି ସ୍ୱପତି ଓ କୁଟୁମ୍ବାଦିଙ୍କି ରୁଚି ଅନୁସାରେ ନିଜେ ପରିବେଷଣ କରି ପରସ୍ପର ଆନନ୍ଦ ଅନୁଭବ କରିଥାନ୍ତି । କୌଣସି ବ୍ୟତିକ୍ରମରୁ ଭୋଜନରେ କେହି ଅସନ୍ତୁଷ୍ଟ ହୋଇଥିଲେ, ପରଭୋଜନ ବେଳକୁ ଗୃହିଣୀମାନେ ସ୍ୱଭାବସିଦ୍ଧ ଜାଗ୍ରତ ହୋଇଥାନ୍ତି । ଅନ୍ୟଦ୍ୱାରା ତାହା ହୋଇପାରେ କି ? ସ୍ତ୍ରୀ ଜାତି ଘରର ଲୁଟୁଖୁଟିଆ ଶାରୀରିକ ସଶ୍ରମ କାର୍ଯ୍ୟ ପୁରୁଷାପେକ୍ଷା ତେର ଅଧିକ କରିପାରନ୍ତି, ମଧ୍ୟ କରିବା ସମୁଚିତ । ତଦ୍ଦ୍ୱାରା ଅପେକ୍ଷାକୃତ ସ୍ୱାସ୍ଥ୍ୟ ଭଲ ରହେ । ବ୍ୟଭିଚାରୋନ୍ମାଦନାଦି ହୃଦୟରେ ଜାତ ହୁଏ ନାହିଁ, ଆଉ ମଧ୍ୟ ପ୍ରସବବେଦନା ଲଘବ ହୋଇଯାଏ । (ନିବେଦନ ପୁସ୍ତକାନ୍ତର୍ଗତ ସ୍ତ୍ରୀ ଶିକ୍ଷା ଦ୍ରଷ୍ଟବ୍ୟ) । ଭଗବାନଙ୍କର ଭୋଜନ ସ୍ଥାନ ଶ୍ରୀପୁରୁଷୋତ୍ତମ ହୋଇସ୍ଥ ରୋଷଶାଳ ଲକ୍ଷ୍ମୀପାକ ନାମରେ ଖ୍ୟାତ । ଧନୁ ମାସରେ

ମହାଲକ୍ଷ୍ମୀ ପିତ୍ରାଳୟକୁ ଯିବାରୁ ସେ 'ମାତୃପାକ' ବୋଲାଏ । ସୁତରାଂ ମାତା (ଘଡ଼ଭ୍ରାତୋପମା) ଶୀଘ୍ର ଶୀଘ୍ର ପାକ କରି ପୁତ୍ରକୁ ଖାଇବାକୁ ଦେବାରୁ ତାହା 'ପହିଲି ଭୋଗ' ବୋଲି ଖ୍ୟାତ ।

ପ୍ରାୟ ୪୦ବର୍ଷ ପୂର୍ବେ କୌଣସି ଯୁବତୀ ଖେଦୋକ୍ତିରେ ସମ୍ବାଦପତ୍ରକୁ ଲେଖିଥିଲେ, 'ଛତ୍ରମାନଙ୍କ ପ୍ରାୟ ଗୃହୀ ପୁରୁଷନାମା ପ୍ରବାସରେ ଚେଁକାପାଣି ପରି ପୂଜାରୀ ରୋଷାଇ ଖାଇ କାଳ କଟାଉଛନ୍ତି । ତାଙ୍କର ପତ୍ନୀମାନେ ଗୃହକଣରେ ରହି ଯାଉଛନ୍ତି । ସମୁଚିତ ପାକ ଓ ପରିବେଷଣ ଏବଂ ସେବାଦିଦ୍ୱାରା ବା ସେବ୍ୟ-ସେବକାତ୍ମକ ସୁଖରୁ ଉଭୟେ ବଞ୍ଚିତ ଓ ସନ୍ତପ୍ତ । ପ୍ରବାଦ ଅଛି, ପତ୍ନୀ ପତି ନିକଟରେ ବସନାଭରଣରହିତ ହୋଇ ଥିବା ଅପେକ୍ଷା ଅନ୍ୟତ୍ର ବହୁଆଡ଼ମ୍ବରରେ ରହିବା ଅଶୋଭନୀୟ । କିନ୍ତୁ ଉତ୍କଳର ସମାଜବନ୍ଧନ କେଡ଼େ କଠୋର ଓ ଲଜ୍ୟାଜନକ ଅନୁମାନ କରାଯାଉ ।' କାଳକ୍ରମେ ତତ୍ପରବର୍ତ୍ତୀ ଅଧିକାଂଶ ସସ୍ତ୍ରୀକ ରହୁଥିଲେହେଁ, ପୂଜାରୀ ରୋଷାଇ ପ୍ରାୟ ବରାବର ଚାଲୁଛି । ସେହି ସାମୟିକ କଟକସ୍ଥ କେହି କଳସାହେବ ହୁକୁମ କଲେ, 'ପୂଜା ଛୁଟିରେ କେହି ଅମଲା ଅନ୍ୟତ୍ର ନ ଯାଇ ସମସ୍ତ ବକେୟାକାମ ତୁଟାଇବେ ।' ସିରସ୍ତାଦାର ସହାସ୍ୟରେ ଉତ୍ତର ଦେଲେ, "ତେବେ ଆପଣ ଆଉ ଅମଲା ପାଇପାରିବେ ନାହିଁ ।" ପ୍ରଶ୍ନ 'କାହିଁକି ?' ଉତ୍ତର, 'ଏହି ଏକମାତ୍ର ଦୀର୍ଘ ଛୁଟିରେ ଅମଲାମାନେ ସ୍ୱ ସ୍ୱ ଗୃହକୁ ଯାଇ ପିଲାପିଲିଙ୍କି ଦେଖିଆନ୍ତି ଓ ଗର୍ଭାଧାନ କରିଆନ୍ତି । ତତଃ ଅମଲା ଆସିବେ କୁଆଡ଼ୁ ?' ସେ ଯାହା ହେଉ ପୂର୍ବୋକ୍ତଳୀୟଙ୍କ ସମାଜ-ଶୃଙ୍ଖଳା ଶିଥିଳହେତୁ କେତେକ ବ୍ୟତିକ୍ରମ ଘଟିଥିବା ଅନୁମାନ ହୁଏ ।

ଅଧୁନା ଅନ୍ୟ ଯୁବକ ଜନାନାମହଲରେ ରହି ପାକପ୍ରଭୃତି ଦ୍ୱାରା ଯୁବତୀମାନଙ୍କ ମନୋନୀତାନୁଯାୟୀ ପରିବେଷଣାଦି

ସେବାଦ୍ୱାରା ସନ୍ତୁଷ୍ଟ କରିବା ସମୀଚୀନ ବୋଲି ବୋଧ ହେଉ ନାହିଁ । ବିଶିଷ୍ଟ ବ୍ୟକ୍ତିମାନଙ୍କ ଗୃହରେ ତାହା ପ୍ରାୟ ଚଳେ ନାହିଁ । ଯତଃ "ଘୃତକୁମ୍ଭସମା ନାରୀ ତପ୍ତାଙ୍ଗାର ସମଃ ପୁମାନ୍"—ଚାଣକ୍ୟ । ମନୋଗତ ଭାବ ଯାହା ହେଉ ପରି- ହାସରେ କୌଣସି ପରପାଚକର ସ୍ତ୍ରୀ ସ୍ୱାମୀକୁ କହିଥିଲା, 'ଆମ ଘରକୁ ଗୋଟିଏ ପାଚକ ଗୃହ ।' ସେ ଯାହାହେଉ ଲତୋପମ ସ୍ତ୍ରୀ ଜାତିର ବୃକ୍ଷୋପମ ପୁରୁଷ ଜାତି ଆଶ୍ରୟ ବ୍ୟତୀତ ଅବସ୍ଥାନ ବା ଉନ୍ନତ ହୋଇ ନ ପାରେ । କିନ୍ତୁ ସେ ପୂର୍ଣ୍ଣରୂପେ ଆବୃତ ବା ଅଧୀନ କଲେ ବୃକ୍ଷ ବା ପୁରୁଷର ସତ୍ତ୍ୱ କ୍ଷୀଣ ବା ରହିତ ହୋଇଥାଏ । ସୁତରାଂ ସ୍ତ୍ରୀମାନଙ୍କୁ ସ୍ୱାତନ୍ତ୍ର୍ୟ ନ ଦେଇ ସମୁଚିତ ପ୍ରେମାନନ୍ଦାଦିଦ୍ୱାରା ସ୍ୱବଶରେ ରଖି ସମୁଚିତ ସତ୍କାର୍ଯ୍ୟ ପ୍ରବୃତ୍ତ ଥିଲେ ସାଂସାରିକ ସମୁନ୍ନତ ଓ ସଦ୍‌ଗତି ହୋଇ ଥାଏ । ସ୍ତ୍ରୀ ପୁଂ ଜାତିର ପରସ୍ପର ସହାନୁଭୂତିରେ ଗୃହର ସମସ୍ତକାର୍ଯ୍ୟ ଗୃହିଣୀମାନଙ୍କଦ୍ୱାରା ଓ ବାହାର କାର୍ଯ୍ୟ ପୁରୁଷ- ମାନଙ୍କଦ୍ୱାରା ସୁସାଧିତ ହେଉଥିଲେ ଗୃହ ସ୍ୱର୍ଗସମ ଓ ଯଥାଶୋନାସ୍ତି ଶୃଙ୍ଖଳିତ ହୋଇଥାଏ ; ବ୍ୟତିକ୍ରମରେ ଗୃହ ଅରଣ୍ୟାପେକ୍ଷା ଭୟଙ୍କର ହୋଇଥାଏ । ପାପ-ପୁଣ୍ୟ ସମ୍ବନ୍ଧହେତୁ ପତ୍ନୀକି ସହଧର୍ମିଣୀ ଏବଂ ଆତ୍ମାକୁ ପୁତ୍ର ରୂପେ ଜାତ କରିବାରୁ ଜାୟା କୁହାଯାଏ । "ଆତ୍ମା ବୈ ଜାୟତେ ପୁତ୍ରଃ ।" ଶ୍ରୁତିଃ ।

କାମିନୀ-କାଞ୍ଚନ ମୋହରେ ଦେହର ଉନ୍ନତି ଓ ଦେହୀର ସଦ୍‌ଗତି ହୋଇ ନ ପାରେ; କିନ୍ତୁ ନିଜ ବଶରେ ରଖି ସଦ୍ ବସ୍ତୁରଦ୍ୱାରା ସମୁଚିତ କାର୍ଯ୍ୟ କରୁଥିଲେ, ଇହ-ପରକାଳ-ଶ୍ରେୟ ହେବା ନିଶ୍ଚୟ । ସାକ୍ଷାତ୍ ଦେଖାଯାଏ, ସମୁପଯୁକ୍ତ ଗୋଟିଏ ମାତ୍ର କାମିନୀ ଓ ସବିଧି ଉପାର୍ଜିତ ସାମାନ୍ୟ ମାତ୍ର ବିଭବରେ ଲୋକେ ସାଂସାରିକ ଯଥୋପଯୁକ୍ତ କାର୍ଯ୍ୟସାଧନ କରି ଆନନ୍ଦରେ

ଚଳିଥାନ୍ତି; କିନ୍ତୁ ବହୁବିତ୍ତଶାଳୀ ସ୍ତ୍ରୈଣମାନଙ୍କର ହଟହଟା ଓ ଅଶାନ୍ତିର ସୀମା ନ ଥାଏ । ଅଗ୍ନି-ଇନ୍ଧନ ସମ ମମତା ବଢ଼ୁଥାଏ ଏବଂ ଶେଷରେ ସବୁ ଧ୍ୱଂସ ହୋଇଥାଏ । କାମପ୍ରବୃତ୍ତି ପ୍ରବଳତା ( ଜାଲରେ ମୀନ ଅବଦ୍ଧ ପରି ) ଶରୀର ଓ ଶରୀରୀ ପତନର କାରଣ । ଅତଃ ରାବଣ ସବଂଶରେ ଧ୍ୱଂସ ହୋଇଥିଲା । ସେ ଅଭିଶାପ ନିବନ୍ଧନ ରାକ୍ଷସତ୍ୱ ଲଭିଥିଲେହେଁ, କଳା ମାତ୍ର ବସ୍ତୁ ସତ୍ତା ହେତୁ ଶେଷରେ କହିଥିଲା, "ଏହି ସଂସାରରେ ପଞ୍ଚକ୍ଲେଶ ଏବଂ ତନ୍ମୂଳକ ସ୍ଥୂଳ ବୃତ୍ତିସବୁ ତରଙ୍ଗ ସ୍ୱରୂପ, ଯୁଗ ପରିବର୍ତ୍ତନ ଆବର୍ତ୍ତ-ସ୍ତ୍ରୀ-ପୁତ୍ର-ଆପ୍ତ-ବନ୍ଧୁ ଓ ଧନ ସମ୍ପତ୍ତି ରୂପ ଜଳଜନ୍ତୁ ଗଣରେ ଆବୃତ, ନିଜ କ୍ରୋଧ ବଡ଼ବାନଳ ତୁଲ୍ୟ, ଅନଙ୍ଗ ଏଥିରେ ଜାଲ୍ ପରି, ଏହିରୂପ ସଂସାର-ସାଗର ପାର ହୋଇ ହରିଙ୍କି ପ୍ରାପ୍ତ ହେବ ।' ଅଧ୍ୟାତ୍ମ ରାମାୟଣ ଲଙ୍କାକାଣ୍ଡ ୧୦ମ ଅଃ ୬୧ ଶ୍ଳୋକ । ଯଥା—

କ୍ଲେଶାଦି ପଞ୍ଚକ ତରଙ୍ଗଯୁତଂ ଭ୍ରମାଢ଼୍ୟଂ
ଦାରାତ୍ମଜାପ୍ତ ଧନବନ୍ଧୁ ଝଷାଭିଯୁକ୍ତଂ ।
ଔର୍ବାନଳାଭ ନିଜରୋଷମନଙ୍ଗଜାଲଂ
ସଂସାରସାଗରମତୀତ୍ୟ ହରିଂ ବ୍ରଜାମି ॥

କିମତ୍ର ହେୟଂ କନକଞ୍ଚ କାନ୍ତା ?
କା ଶୃଙ୍ଖଳା ପ୍ରାଣଭୃତାଂ ହି ନାରୀ ?
ତ୍ୟାଜ୍ୟଂ ସୁଖଂ କି ? ରମଣୀ ପ୍ରସଙ୍ଗଃ
ସମୋହୟତ୍ୟେବ ସୁରେବ କା ସ୍ତ୍ରୀ ?
ବିଜ୍ଞାତ୍ ମହାବିଜ୍ଞତମୋଽସ୍ତି କୋ ବା ?
ନାର୍ଯ୍ୟା ପିଶାଚ୍ୟା ନ ଚ ବଞ୍ଚିତୋ ଯଃ ॥

ଦ୍ୱିଜରାଜମୁଖୀ ମୃଗରାଜକଟୀ
କରିରାଜ ବିରାଜିତ ମନ୍ଦଗତିଃ ।
ଯଦି ସା ରମଣୀ ହୃଦୟେ ରମତେ
କ୍ୱ ଜପଃ କ୍ୱ ତପଃ କ୍ୱ ସମାଧିବିଧିଃ ?

ବିଶେଷତଃ ପୂର୍ବ ପ୍ରଚଳିତ ସ୍ଥଳ ବିଶେଷରେ ମେଳକ-ବ୍ୟତିକ୍ରମ ବିବାହାତ୍ମକ ନିମ୍ନ ଜାତିରେ କ୍ୱଚିତ୍ କପରଖାଞ୍ଚି ମାଇକିନିଅ ହେତୁ ସ୍ୱାମୀ ସନ୍ତପ୍ତ ହୋଇ ହାତପତର ଦେଇ-ଥାଏ । ହିନ୍ଦୁମାନେ ଦେଶ, ପ୍ରଦେଶ, ପଡ଼ୋଶୀ, ବନ୍ଧୁ ବାନ୍ଧବାଦି ବିଶେଷତଃ ସ୍ତ୍ରୀ-କୁଟୁମ୍ବାଦି ଯଥାକ୍ରମେ ସ୍ନେହସଲିଳ ଜଡ଼ିତ ପ୍ରେମ-ରଜ୍ଜୁରେ ବନ୍ଧା ହୋଇଥିଲେ । "ଯୁବତୀଂ ପ୍ରେମ୍ଣା ସର୍ବୈର୍ବାଧବାନ୍ ।" ବର୍ତ୍ତମାନ ବିଧର୍ମି ଶିକ୍ଷା ଓ ଶାସନହେତୁ ଧର୍ମ ବିଶ୍ୱାସ ଶୀଥିଳ ହୋଇ ସମାଜ ଓ ପୁତ୍ର ଏବଂ ଦମ୍ପତି ମଧ୍ୟରେ ଆଇନଗତ ମକଦ୍ଦମା, ଛାଡ଼ପତ୍ର, ସମ୍ପତ୍ତି ଓ ଅସ୍ପୃଷ୍ଟ ବିଭାଗ, ଖୋରାକ ପୋଷାକାଦି ସ୍ତ୍ରୀ ଓ ସନ୍ତାନମାନେ ଦାବି କରିବା କଦର୍ଯ୍ୟ କାଣ୍ଡଦ୍ୱାରା ସନ୍ତପ୍ତାନଳରେ କେତେକ ଦହଗଞ୍ଜ ହେବା ଯାହା ଘଟୁଛି, ତାହା ଅପେକ୍ଷା ମୃତ୍ୟୁ ଶତଗୁଣରେ ଶ୍ରେୟସ୍କର । ଅପଥଗାମୀ ଅବାଧ୍ୟ ସ୍ତ୍ରୀ-ପୁତ୍ରାଦିଙ୍କ ପାଇଁ ନିଜର ପାରତ୍ରିକ ଶ୍ରେୟ ସାଧନ ନ କରି ନିଜେ ନାନାକଷ୍ଟ ସହି ପୋଷିବା ନିତାନ୍ତ ନିର୍ବୋଧତା ନୁହେ କି ? ପୁତ୍ରାଦିଙ୍କି ସମୁଚିତ ସଂସ୍କାର, ଶିକ୍ଷା, ଦୀକ୍ଷା, ତାଡ଼ନା, ଉପଦେଶାଦି ଯଥାଶକ୍ତି ଯତ୍ନ ଓ ଚେଷ୍ଟା ଦେଶ-କାଳ-ପାତ୍ରାନୁସାରେ କରିବା ଓ କରାଇବା ନିଜର କର୍ତ୍ତବ୍ୟ କର୍ମ । ସାଧ୍ୟାତୀତ ପରେ ବିପଥଗାମୀ ହେଲେ ତ୍ୟାଗ ବା ନିଜେ ବହିର୍ଗତ ହେଲେ ତାଙ୍କ ପାପରେ ଭାଗୀ ହେବାକୁ ହେବ ନାହିଁ । ଇହ ବା ପରେ ସେ ତାଙ୍କ ପାପଭୋଗ କରିବେ । ହାଟ ବା ପଥ ବୃକ୍ଷ ଛାୟା ମେଳ ପରି କୁଟୁମ୍ବାଦି ସମ୍ବନ୍ଧ ମାତ୍ର । କେହି କାହାର ନୁହେ । କର୍ତ୍ତବ୍ୟରେ ବ୍ୟତିକ୍ରମ କଲେ ତାଙ୍କ ପାପରେ ଭାଗୀ ହେବାକୁ ହେବ । "ଯତ୍ନେକୃତେ ଯଦି ନ ସିଦ୍ଧ୍ୟତି କୋଽତ୍ର ଦୋଷଃ ।" ସଚ୍ଛାସ୍ତ୍ରହୀନ, ରଘୁ-ଆଯୁତ୍ତ, ମ୍ଳେଚ୍ଛାନୁକାରିଙ୍କ ହୃଦୟରେ ସେ ବୁଦ୍ଧି ପ୍ରବେଶ କରି ନ ପାରେ (କଣ୍ଟକ ଭକ୍ଷକ ଉଷ୍ଟ୍ର ପରି) । ଯେଉଁମାନଙ୍କଠାରୁ

ପରକାଳଶ୍ରେୟ୍ଃ ଜଳ-ପିଣ୍ଡାଦି ନାହିଁ, ତାଙ୍କ ପ୍ରତି ଏତେ ମମତା କାହିଁକି ? ଧିକ୍ ଧିକ୍ ସନାତନ ଧର୍ମବିଶ୍ୱାସୀ ବିଧର୍ମି ଶିକ୍ଷିତ ବିଦେଶୀ ମତାନୁରାଗୀ ନବ୍ୟସଭ୍ୟ ! "ଅପରେ କିଂ ଭବିଷ୍ୟତି ।" ବିଶିଷ୍ଟ ବ୍ୟକ୍ତିମାନଙ୍କ ଅନୁରୋଧ କି, ଚରିତଗତ କ୍ରିୟାକୁ ଅନୁସନ୍ଧାନ କରନ୍ତୁ । ଜନ୍ମଗତ ଐଶ୍ୱର୍ଯ୍ୟଶାଳିନୀ ହିନ୍ଦୁମହିଳାମାନେ ଅପେକ୍ଷାକୃତ ସବିଶେଷ କଷ୍ଟ ସହିପାରନ୍ତି; ସାମାନ୍ୟ କଥା ନେଇ ଶରୀର ତ୍ୟାଗ କରିପାରନ୍ତି ।

ସେ ଯାହା ହେଉ, ଦଶମେଳକସିଦ୍ଧ ସମୁଚିତ, ବୈଦିକ ବିଧି-ବିବାହ ସର୍ବଶ୍ରେଷ୍ଠ, ଶାନ୍ତିମୂଳୀ ଏବଂ ଉଭୟ ଲୋକରେ ଶୁଭଫଳପ୍ରଦ ଓ ଉତ୍କୃଷ୍ଟ; ଏକପକ୍ଷ ବ୍ୟତିକ୍ରମ-ବିବାହ ମଧ୍ୟମ, ଉଭୟ ବ୍ୟତିକ୍ରମ ଅଧମ, ଅଦାରାଦାର ସମ୍ଭୋଗ ଅଧମାଧମ, ପରକୀୟା ସମ୍ଭୋଗ ନାରକୀୟ ଓ ଦେହାନ୍ତେ ରୌରବ ନର୍କଭୋଗ, ଏହା ନିଷ୍ଟୟ । ବ୍ୟଭିଚାର କ୍ରିୟା ଓଜ ବା ସତ୍ତ୍ୱକ୍ଷୀଣକର, ଉପଦଂଶାଦି ରୋଗୋତ୍ପାଦକ, ବିଶେଷତଃ ଦେହାନ୍ତେ ଦେହୀର ପାପାତ୍ମକ ନର୍କଗତିପ୍ରଦ । ତେଣୁ ଉତ୍କ୍ରାନ୍ତାବସ୍ଥାରେ କେହି କେହି ଭାରତୀୟ ହିନ୍ଦୁ ପୁରୁଷ ନାମା ପ୍ରତିକାର ପାଇଁ ବ୍ୟଭିଚାରାଦିକୁ ପ୍ରକାଶ କରିଥାନ୍ତି; କିନ୍ତୁ ସାଧାରଣୀ ବ୍ୟତୀତ ସ୍ତ୍ରୀ ଜାତି କଦାଚ ପ୍ରକାଶ କରନ୍ତି ନାହିଁ । ଆଉ ବିଧର୍ମୀ ବିଦେଶୀୟା କୁଣ୍ଠିତ ହୁଅନ୍ତି ନାହିଁ । ପୂର୍ବେ ଭାରତୀୟ ହିନ୍ଦୁ ସମାଜରେ ପତି ବା ଗୁରୁଜନଙ୍କ ବଶବର୍ତ୍ତୀ ହୋଇ କେବଳ କୁଳରକ୍ଷା ସକାଶେ କେହି କେହି ସ୍ତ୍ରୀମାନେ ବିଶିଷ୍ଟ ମହାତ୍ମା ବା ସମୁଚିତ ପୁରୁଷଦ୍ୱାରା ଗର୍ଭାଧାନ ମାତ୍ର କରାଉ-ଥିଲେହେଁ ବ୍ୟଭିଚାର ଆଶଙ୍କା ବା ଅନ୍ୟ ପୁରୁଷକୁ ପାପ ଦୃଷ୍ଟିରେ ଗୃହିଁଲେ କିମ୍ବା ସ୍ପର୍ଶ କଲେ ସମୁଚିତ ଶାସ୍ତି ଆଉ ବ୍ୟଭିଚାର ଘଟିଲେ ସଙ୍ଗେ ସଙ୍ଗେ ଶିରଚ୍ଛେଦନ ଘଟିଥାଏ । ଏହା ପୁରାଣମାନଙ୍କରେ ବର୍ଣ୍ଣିତ ଅଛି । ବର୍ତ୍ତମାନ ଅନ୍ୟ

କୌଣସିକ ସମାଜରେ କ୍ୱଚିତ୍ ଏବଂ ଭାରତୀୟଙ୍କ ମଧ୍ୟରେ ପ୍ରାୟ ସଙ୍ଗେ ସଙ୍ଗେ ଶିରଚ୍ଛେଦନ ଘଟିଥାଏ । ଅଧୁନା ତାହାର ବ୍ୟତିକ୍ରମ ଅନୁମାନ ହୁଏ । କେତେକ ବିଧର୍ମୀ ବିଦେଶୀ ସମାଜରେ ବ୍ୟକ୍ତିବିଶେଷ ଅନିଚ୍ଛାସତ୍ତ୍ୱେ ସ୍ତ୍ରୀ-ପୁଂଙ୍କର ରାଜାଜ୍ଞା ବାଧ୍ୟଦ୍ୱାରା ଜନସଂଖ୍ୟା ବୃଦ୍ଧି ସଙ୍କାଶେ ବ୍ୟଭିଚାର ହେଉଛି । ଯେଉଁମାନେ ବ୍ୟଭିଚାର କ୍ରିୟାକୁ ସ୍ୱ-ଗୃହରେ କଟାକ୍ଷ ରଖି ଅନ୍ୟତ୍ର ବ୍ୟଭିଚାର କରିଥାନ୍ତି, ସେମାନଙ୍କ ଗୃହରେ ଗୁପ୍ତ-ବ୍ୟଭିଚାର ଘଟିଥାଏ । କ୍ୱଚିତ୍ ବ୍ୟତିକ୍ରମ ଥାଇପାରେ ।

ସେ ଯାହା ହେଉ, ହିନ୍ଦୁ ସମାଜରେ କେତେକ ଶୁଭଦିନ ନିର୍ଦ୍ଧିଷ୍ଟାନୁଯାୟୀ ଉପନୟନ ବିବାହାଦି ସଂସ୍କାର କର୍ମ ଓ ପର୍ବ ପର୍ବାଣି ଶାସ୍ତ୍ର ନିର୍ଦ୍ଦେଶାନୁସାରେ କରିଥାନ୍ତି । କେତେକ ତତ୍ପ୍ରତି ଭ୍ରୂକ୍ଷେପ ନ କରି ନିଜର ସୁବିଧାକୁ ଗ୍ରହଁ କରି ନଥାନ୍ତି । ଉଭୟର ଉଦ୍ଦେଶ୍ୟ-ଫଳ ନ୍ୟୂନାଧିକ ଭାବରେ ସାଧିତ ହେଉଥିଲେହେଁ ସଫଳ ଓ ବିଫଳ ମଧ୍ୟ ହୋଇଥାଏ; କିନ୍ତୁ ଶାସ୍ତ୍ରବିଧି-ସାଧିତ କର୍ମର ଫଳ କ୍ୱଚିତ୍ ବ୍ୟତିକ୍ରମ ହେଲେ, ସେହି ଶାସ୍ତ୍ରବିଧି ଅନୁସାରେ ପ୍ରତିକାର କଲେ ସଫଳ ହୋଇଥାଏ । ଶାସ୍ତ୍ରାନୁମୋଦିତ ସମସ୍ତ କର୍ମର ଫଳ ବେଦ ଓ ଦୈବାନୁମୋଦିତହେତୁ ଉଭୟ କାଳରେ ଆନନ୍ଦମୟ ଓ ଶାନ୍ତିପ୍ରଦ; କିନ୍ତୁ ଯଥେଚ୍ଛାଚାର କାର୍ଯ୍ୟର ଫଳ ରାକ୍ଷସାତ୍ମକହେତୁ ମୋହ-ଜନକ ଓ ଅଶାନ୍ତିପ୍ରଦ ବିପଥାବଲମ୍ବୀମାନ୍ୟ ।

ଯଃ ଶାସ୍ତ୍ରବିଧିମୁତ୍ସୃଜ୍ୟ ବର୍ତ୍ତତେ କାମଚାରତଃ ।
ନ ସସିଦ୍ଧିମବାପ୍ନୋତି ନ ସୁଖଂ ନ ପରାଂ ଗତିଃ ॥

ଗୀତା ୧୬ ଅଃ ୨୩ ଶ୍ଳୋଃ

ଯେ ଶାସ୍ତ୍ରବିଧି ତ୍ୟାଗ କରି ଇଚ୍ଛାନୁଯାୟୀ କର୍ମରେ ପ୍ରବୃତ୍ତ ହୁଏ, ସେ ତତ୍ତ୍ୱଜ୍ଞାନ କି ସୁଖ କିମ୍ବା ମୋକ୍ଷଲାଭ କରିପାରେ ନାହିଁ । ବର୍ତ୍ତମାନ ବିଧର୍ମୀମୂଳକ ଶିକ୍ଷା ଓ ଶାସନହେତୁ

ମହୋପକାରୀ ଉକ୍ତ ଜ୍ୟୋତିଷ ଶାସ୍ତ୍ରର ମାହାତ୍ମ୍ୟ ଓ ପ୍ରତ୍ୟକ୍ଷ ଫଳ ଏବଂ ପ୍ରତିକାର ଅନୁଭବ କରିପାରୁ ନାହାନ୍ତି । ତାର ପଠନ, ଅନୁଶୀଳନ ଓ ବ୍ୟବହାର ବହୁ ପରିମାଣରେ କମି ଯାଉଛି । ଦେଶ-କାଳ ପାତ୍ରାନୁଯାୟୀ ଯୋଗଲଗ୍ନାଦି ଅନୁସାରେ ସମୁଚିତ କାର୍ଯ୍ୟାରମ୍ଭ ବା ପ୍ରତିକାର କରାଗଲେ କାର୍ଯ୍ୟ ସଫଳ ଓ ନିର୍ବିଘ୍ନ ଯେ ହୋଇଥାଏ, ବିଧର୍ମୀମାନଙ୍କ ଶାସନ ହେତୁ ତତ୍ପ୍ରତି ବରାବର ହେୟଜ୍ଞାନ ହେଉଛି । ତେଣୁ ଜଗତରେ ସବୁ ପ୍ରକାର ଅଶାନ୍ତି ଓ ଅନିଷ୍ଟ ବଢ଼ୁଛି ।

## ପଞ୍ଜିକା ବିଭ୍ରାଟ

ସମୁଚିତ ପର୍ବପର୍ବାଣି ଓ ଜ୍ୟୋତିଷ ସମ୍ବନ୍ଧୀୟ ଫଳ ନିରୂପଣ ସକାଶେ ପଞ୍ଜିକା ହେଉଛି ଦର୍ପଣ ସ୍ୱରୂପ । କିନ୍ତୁ ପଞ୍ଜିକା ଗଣକମାନେ ସମୁଚିତ ଜ୍ଞାନାଭାବରୁ କିମ୍ବା ସମୟ-ସାପେକ୍ଷ ସମୁଚିତ ଅନୁଶୀଳନ ଅଭାବରୁ ପଞ୍ଜିକାମାନଙ୍କରେ ପାଳନ ବା ବର୍ଷା ପ୍ରଭୃତି ଯାହା ତା ଲେଖିଦେଇ ଲୋକମାନଙ୍କୁ ଭ୍ରମରେ ପକାଇ ଯଥୋପଯୁକ୍ତ ଫସଲର ଅନିଷ୍ଟକର କୋମଣି କରାଇ ଶସ୍ୟର ହାନି କରାଉଛନ୍ତି । ଆହୁରି ଅତି ଅଜ୍ଞତାକୁ ବିଚାର କରାଯାଉ; ବିଭିନ୍ନ ପଞ୍ଜିକାମାନଙ୍କରେ ଗ୍ରହମାନଙ୍କର ସ୍ଥିତି ରାଶିରୁ ଅନ୍ୟ ରାଶିକି ସଞ୍ଚାର ଦଣ୍ଡ ଲିତା କଥା କଏ ପରିରେ ଆଠ ଦଶଦିନ ଫରକ ଲେଖା ଯାଇଛି । କୌଣସି କୌଣସି ପଞ୍ଜିକାରେ କୌଣସି କୌଣସି ଗ୍ରହର ଚଳନ ଆଦୌ ନାହିଁ । ଅଛି, ତହିଁମଧ୍ୟରେ ଯେ ବାଳକ ଜନ୍ମ ହେଲା, ତା କୋଷ୍ଠିରେ ଭଲ ଜ୍ୟୋତିଷଙ୍କ ଜାତକ ଲେଖକ ସେ ଗ୍ରହମାନଙ୍କୁ କେଉଁ ରାଶିରେ ସ୍ଥିତ କରିବ ? ପରେ ସେ କୋଷ୍ଠିକୁ ଭଲ ଜ୍ୟୋତିଷଙ୍କ ହେଲେ ମଧ୍ୟ ଦଶାସାଧନ କରି ଫଳ କହିଲେ ତାହା କାହୁଁ ଘଟିବ ? କିନ୍ତୁ ସବୁ ପଞ୍ଜିକା 'ସିଦ୍ଧାନ୍ତ ଦର୍ପଣ' ଅନୁସାରେ ଗଣନା ବୋଲି ପ୍ରଚାର । "କିମାଶ୍ଚର୍ଯ୍ୟମତଃ ପରଂ" । ଜଗତର

ଅନାଷ୍ଟିଙ୍କର ଏ ସବୁ ବିଷୟପ୍ରତି ପ୍ରତିଭାଶାଳୀ ବ୍ୟକ୍ତି ବା ନେତାମାନଙ୍କର ଏବଂ ରାଜସର୍କାରଙ୍କର ଆଦୌ ଭ୍ରୂକ୍ଷେପ ନାହିଁ । ପଞ୍ଜିକାଗଣକମାନେ ଧରି ନ ପଡ଼ିବାପାଇଁ କେବଳ ଗ୍ରହଣ-ପରାଗକୁ ଜଗି ଶୁଭଦିନ ନିର୍ଘଣ୍ଟ, ପର୍ବପର୍ବାଣି, ବର୍ଷା, ଗ୍ରହଚଳନାଦି ପ୍ରତି ସମୁଚିତ ଦୃଷ୍ଟି ଦେଉ ନାହାନ୍ତି । ବିଶେଷତଃ ଜଗତ ବା ପ୍ରଜା ସାଧାରଣଙ୍କର ସୁଖପ୍ରଦ ବର୍ଷା ବା ପାଳକ ପ୍ରତି ଆଦୌ ଦୃଷ୍ଟି ଦେଉ ନାହାନ୍ତି । "ଚଳିତ ବର୍ଷ ଏକପ୍ରକାର ବର୍ଷା ଘଟିଛି ।" ସେମାନଙ୍କର ଏ ବିଷୟର ବ୍ୟତିକ୍ରମ ଧରାଇ ଦେଇ କଠକଣା କଲେ ଉପଯୁକ୍ତ ଜ୍ୟୋତିଷଙ୍କ ଗଣକଙ୍କର ପଞ୍ଜିକା ପ୍ରଚୁର ଏବଂ ଅନଭିଜ୍ଞର ପାଞ୍ଜି ବନ୍ଦ ହେଲେ ସାଧାରଣଙ୍କର ଯଥେଷ୍ଟୋନାସ୍ତି ଉପକାର ହୁଅନ୍ତା । ତା ନ କରି ସାଧାରଣଙ୍କ ସୁଖ ସକାଶେ କେତେ ପ୍ରତିଭାଶାଳୀ ବ୍ୟକ୍ତି ଓ ରାଜସର୍କାର ହୋ ହୋ ହୋଇ ଲୋକଙ୍କ ମଧ୍ୟରେ ମେଖଡ଼ ପୂରାଉଛନ୍ତି; କିନ୍ତୁ କୃଷକ ଭବିଷ୍ୟତ ବର୍ଷାକୁ ଅନୁମାନ କରି ସମୁପଯୁକ୍ତ ଫସଲ ଆମଦାନୀ କଲେ ପ୍ରଜାସାଧାରଣ ଏବଂ ଜଗଜ୍ଜନ ଯହିଁରେ ସୁଖୀ ହୁଅନ୍ତେ ସେଥିପ୍ରତି ଆଦୌ ଦୃଷ୍ଟି ପଡ଼ୁ ନାହିଁ । ବରଂ ଅଧିକାଂଶ ନାମଯାଦା ଲୋକେ ଗରିବ-ସାଧାରଣଙ୍କର ତୋଟି ଚିପି ଅର୍ଥ ଶୋଷଣରେ ମଜ୍ଜିଛନ୍ତି । ଯାହା ହେଉ ଜ୍ୟୋତିଷ ମତ ଏବଂ ସେ ଶାସ୍ତ୍ର ପ୍ରଚୁର ପ୍ରତି ହିନ୍ଦୁ-ସାଧାରଣ ପ୍ରତିଭାଶାଳୀ ବ୍ୟକ୍ତିମାନେ ସୁଦୃଷ୍ଟି ଦେବା ସମୁଚିତ । ସୁତରାଂ ପ୍ରତ୍ୟକ୍ଷ ଫଳପ୍ରଦ ଜ୍ୟୋତିଷ-ଶାସ୍ତ୍ର ଏବଂ ଉପରୋକ୍ତ ବିଷୟମାନଙ୍କର ଅନୁଶୀଳନ ଓ ପ୍ରତିକାର ସମୁଚିତ ଭାବରେ ନ ହେବା ମହତ୍ ଭ୍ରମ ନୁହେଁ କି ?

ବିଫଳାନ୍ୟନ୍ୟ ଶାସ୍ତ୍ରାଣି ବିବାଦସ୍ତେଷୁ କେବଳଂ ।
ସଫଳଂ ଜ୍ୟୋତିଷଂ ଶାସ୍ତ୍ରଂ ଚନ୍ଦ୍ରାର୍କୌ ଯତ୍ର ସାକ୍ଷିଣୌ ॥

---

## ( ୪ ) ଦେହ ବୈଷମ୍ୟ—ଲୋକାର୍ଥ ବିଭ୍ରାଟ

କୃଷକ, ଶ୍ରମିକ ଓ ନିସ୍ୱହମାନଙ୍କୁ ଯଥେଚ୍ଛାଚାରୀ ଧନିକ, ଦାମ୍ଭିକ, ଉଗ୍ରସ୍ୱଭାବାତ୍ମକ ପ୍ରତାପଶାଳୀମାନେ ଶୋଷୁଛନ୍ତି, ପୀଡ଼ୁଛନ୍ତି ଏବଂ ଅତି ଅତ୍ୟାଚାରଦ୍ୱାରା ଅମାନୁଷିକ ଷଡ଼ଯନ୍ତ୍ରକାଣ୍ଡ କରୁଛନ୍ତି ବୋଲି ସଭାସମିତିରେ ଓ ସମ୍ବାଦପତ୍ରମାନଙ୍କରେ ପ୍ରଚାରଦ୍ୱାରା ଯେଉଁମାନେ ଲୋକ ସାଧାରଣଙ୍କୁ ଉତ୍ତେଜିତ କରାଇ ମତାଉଛନ୍ତି, ସେମାନେ କେବେ ହେଲେ ସର୍ବନିୟନ୍ତା ସର୍ବଶକ୍ତିମାନ୍ ଭଗବାନଙ୍କ ନାମ ଉଚ୍ଚାରଣଦ୍ୱାରା ଏ ସବୁର ପ୍ରତିକାର ପାଇଁ ନିବେଦନ କରୁଛନ୍ତି ନା କରାଉଛନ୍ତି କି ?

ମାତା ଯଦି ବିଷଂ ଦଦ୍ୟାତ୍ ପିତା ବିକ୍ରୟତେ ସୁତଃ ।
ରାଜା ହରତି ସର୍ବସ୍ୱଂ ତତ୍ର କା ପରିବେଦନା ॥

ନେଉଳ ଧାଉଡ଼ି କୁଆବଣିଯାଏ । ଲୋକଙ୍କର କେହି ଅନିଷ୍ଟ କଲେ ତାଙ୍କର ବଳ ରାଜା ଏବଂ ଭଗବାନ୍ । ଉଗ୍ରସ୍ୱଭାବ ପ୍ରତାପଶାଳୀମାନେ ନିସ୍ୱହ-ପ୍ରାଣୀମାନଙ୍କୁ ପୀଡ଼ିବା ସମ୍ବନ୍ଧରେ ଉପରର ମତ ଯେ ଯାହା କରିବେ କରନ୍ତୁ ଆମ୍ଭର ଯାଏ ଆସେ କେତେ ? 'ଭିତର ମତାଲପ ଯାହା ଥାଉ, କାଦୁଅରେ ପଶିବା କାହିଁକି, ଗୋଡ଼ ଧୋଇବା କାହିଁକି ?' ତେଣୁ ଲକ୍ଷ ଲକ୍ଷ କୋଟି କୋଟି ଲୋକ କଦର୍ଯ୍ୟ ହେଉଛନ୍ତି । ବଖଡ଼ଦାରମାନେ ତାହା ସବୁ ଦେଖି ନିଜେ ସାବଧାନ ଓ ମୌଜରେ ଅଲଗା ରହି କେବଳ ହୋ ହୋ ହେଉଛନ୍ତି । ତାଙ୍କର ମତାଲପ,—ଭଗବାନ୍ କିଏ ? ଅମ୍ଭେ ସବୁ କରିଦେବୁ । 'ସମସ୍ତେ ହୋଇ ଏକମୁଖ; ଡାକିଲେ ନାରାୟଣ ରଖ' । ଦୌରାତ୍ମ୍ୟ-ସମୟରେ ସମସ୍ତେ କେବଳ ଭଗବାନଙ୍କୁ ସାକ୍ଷ ଦେଲେ ସବୁ ଦୁଃଖ ପାଣି ଫାଟିଯାନ୍ତା, କିନ୍ତୁ ତାହା ହେଉ ନାହିଁ ।

### ଅର୍ଥ ବିଭ୍ରାଟ—ବନ୍ୟା ଓ ପ୍ରତିକାର

ବଣିକ ଓ ବେପାରୀମାନେ ଯେବେ ଜାଣିଲେ ଯେ, ଯେ କୌଣସି ଜିନିଷକୁ ସ୍ଥଳବିଶେଷରୁ ଆଣି ଅନ୍ୟ ସ୍ଥାନରେ

ବିକ୍କଲେ ଲଭ ହେବ, ତେବେ ଏ ମହାଦେଶରୁ ସେ ମହାଦେଶକୁ, ଏ ଦେଶରୁ ସେ ଦେଶକୁ, ଏ ପ୍ରଦେଶରୁ ସେ ପ୍ରଦେଶକୁ, ଏ ସହରରୁ ସେ ସହରକୁ ଓ ଏ ଗ୍ରାମରୁ ସେ ଗ୍ରାମକୁ ଜାହାଜ, ରେଲ୍, ବୋଟ, ନୌକା, ଶକଟ ପ୍ରଭୃତରେ ବୁହାଅଣି ଗୋଦାମ, ଦୋକାନ ସ୍ଥଦେଇ, କେତେ ଜନସରେ ଖାଦ ମିଶାଇ ଗୋବର୍ ଚଢ଼େଇକ ପାଚିଲ କଦଳୀ ଦେଖାଇଲ ପରି ବାଟରେ, ହାଟରେ, ଘାଟରେ, ଗ୍ରାମରେ, ସାଇରେ, ଘରେ ଘରେ ବୁଲ ଓ ବୁଲାଇ ଲୋକମାନଙ୍କୁ ଭୁଲାଇ ଅତ ଉପାଦେୟ ପଦାର୍ଥ, ସାର-ଖାଦ୍ୟ, ଖାଦ୍ୟଶସ୍ୟ, ସୁନା, ରୁପା, ପିତ୍ତଳ, କଂସା, ତମ୍ବା, ପ୍ରବାଳ, ମଣି, ମାଣିକ୍ୟ, ହୀରା, ନୀଳା ପ୍ରଭୃତ ନାନା ରତ୍ନ ପରିବର୍ତ୍ତେ ଅତ ତୁଚ୍ଛ ପୂଜ, ପୂତ ସଦୃଶ ଚକଚକିଆ ଡାକ-ଜନସ, କାଚ, ଯନ୍ତ୍ର, ଜସ୍ତ, ଟିଣ, ସିଲ୍‌ଭର, ଗ୍ୟାସାଲୋକ ପ୍ରଭୃତ ଅଉ ମଟର, ସାଇକେଲ୍, ଘଡ଼ି, ଘଣ୍ଟାଦ ବିକ୍ରି ସାର ଶୋଷଣଦ୍ୱାରା କୁବେର ବନୁଛନ୍ତି। ସ୍ୱର୍ଣ୍ଣପ୍ରସୂ ଭାରତବର୍ଷ ପୂର୍ବେ ସୁବର୍ଣ୍ଣ, ହୀରା, ନୀଳାଦ ରତ୍ନମାନଙ୍କରେ ପୂର୍ଣ୍ଣ ଥିଲ; କେବଳ ସ୍ୱର୍ଣ୍ଣମୁଦ୍ରା ପ୍ରଚଳିତ ହେଉଥିଲ । ବୁଦ୍ଧାବତାରଠାରୁ ସନାତନ ଧର୍ମରେ ବାଧା ଘଟି ସାମ୍ପ୍ରଦାୟିକଭାବ ପ୍ରଚୁର ହୋଇ ଗୃହକବାଦ ହେତୁ ଥରକୁ ଥର ବିଦେଶୀୟଙ୍କ ଆକ୍ରମଣଦ୍ୱାରା ସ୍ୱାଧୀନତା ଲୋପ ହୋଇ ସେ ସବୁ ବହୁମୂଲ୍ୟ ପଦାର୍ଥ ଭାରତରୁ ଶୂନ୍ୟ ହେଲ । ବର୍ତ୍ତମାନ ମଧ୍ୟ କପୂର ଯାଇ କନା-ବାସନା ଥିଲପରି ଯାହା କଛୁ ସାଧାରଣଙ୍କ ଗୃହରେ ଓ ଦେହରେ ସୁବର୍ଣ୍ଣ ଥିଲ । ( ଦେହ-ଭୂଷଣ ସ୍ୱର୍ଣ୍ଣ-ରୌପ୍ୟାଦ ନହତ ଶକ୍ତି ଶରୀରରେ ସଞ୍ଚାର ହୋଇ ମହୋପକାର କରିଥାଏ ) । ବିଦେଶୀୟ କୁ-ସଭ୍ୟତା ଅନୁକରଣହେତୁ ଶରୀର ଭୂଷଣ-ହୀନ ହୋଇ କ୍ରମେ କ୍ରମେ ତାହା ସବୁ ପ୍ରତ୍ୟହ ବିଦେଶକୁ ଗୁଲଛି । ସୁତରାଂ ଭାରତବର୍ଷ

ଖାଙ୍କା ଓ ଅସ୍ଥିକଙ୍କାଳାବଶିଷ୍ଟ । ଯେତେବେଳେ ଉପରୋକ୍ତ ତୁଚ୍ଛ ଜିନିଷ ବିଦେଶରୁ ଆସୁ ନ ଥିଲା, ସେତେବେଳେ କଣ ସଂସାର ଚଳୁ ନ ଥିଲା ? ସେକାଳ ଅପେକ୍ଷା ଲୋକେ କଣ ବଳଶାଳୀ, ସଦ୍‌ଗୁଣଶାଳୀ ବା ବୁଦ୍ଧିମାନ୍ ହୋଇଛନ୍ତି କି ? ଏହି ସବୁ ବିଷୟକୁ ଅନୁମାନ କଲେ ଶେଷକୁ ଭାରତରେ ମୁଠାକୁଟିଆ, ନିକମା ମନୁଷ୍ୟଗୁଡ଼ିଏ ଓ ମାଟି ପାଣି ରହିପାରେ ।

ଏବେ ଆମ ଦେଶୀୟ କେତେକ ନିଜେ ନିଜେ ବା ମିଳିମିଶି ବିଦେଶ-ଯନ୍ତ୍ରଦ୍ୱାରା ନାନା ପ୍ରକାର କାରଖାନା ଖୋଲି ଉପରୋକ୍ତ ତୁଚ୍ଛ ଜିନିଷ ପ୍ରସ୍ତୁତ କରି ବିକି ନିଜର ଇନ୍ଦ୍ରିୟସୁଖ ସକାଶେ ଧନୀ ହୋଇ ସାଧାରଣଙ୍କର ସାର ଶୋଷଣ କରୁଛନ୍ତି, ମଧ୍ୟ ଅତୁର କରିବାପାଇଁ ଉଦ୍ୟୋଗୀ ହେଉଛନ୍ତି । ସୁଖ ଭୋଗ ସକାଶେ ପୂର୍ବରୁ ନାନା ପ୍ରକାର ଯନ୍ତ୍ରଦ୍ୱାରା ଦୁଃଖକୁ ଦୂର କରିବାପାଇଁ ସମସ୍ତେ ବ୍ୟସ୍ତ; କିନ୍ତୁ ଦୁଃଖ ଅନୁଭବ ନ କଲେ ସୁଖ କଣ, ଆଦୌ ଜାଣି ହେବ ନାହିଁ; ଭୋଗ କଣ କରିବ ? ଜଳ-ବାୟୁ-ମୃତ୍ତିକା ନେଇ ଯେଉଁ ସ୍ଥାନରେ ଯେ ପଦାର୍ଥ ଉତ୍ପନ୍ନ 'ବିଷକୀଟ ନ୍ୟାୟରେ' ସେ ଦେଶବାସୀଙ୍କ ପକ୍ଷେ ତାହା ସ୍ୱାସ୍ଥ୍ୟକର ଓ ସମ୍ପୂର୍ଣ୍ଣ ଉପଯୁକ୍ତ ଏବଂ ଉପାଦେୟ । ଆଗେ ଆମ ଦେଶରେ ସୂର୍ଯ୍ୟ-ଚନ୍ଦ୍ର-ନକ୍ଷତ୍ରମାନଙ୍କ ଗତିବିଧି ଓ ନିଶ୍ୱାସ-ପ୍ରଶ୍ୱାସ ନେଇ ସମୟ ନିରୂପଣ ହେଉଥିଲା । ବର୍ତ୍ତମାନ ବିଦେଶକୁ ସାର ପ୍ରେରଣଦ୍ୱାରା ଘଣ୍ଟା, ଘଡ଼ି, ଓ୍ୟାଚରେ ଘର ପୂର୍ଣ୍ଣ, ପୁଣି ପିଟିକି ଆମମାନେ ନିଜ ହସ୍ତରେ କଙ୍କଣ ପରି ଘଣ୍ଟାଟିଏ ନ ବାନ୍ଧିଲେ କ୍ଷଣେ ଚଳିପାରୁ ନାହାନ୍ତି । ବିଦେଶକୁ ଧନ ବହିଯାଉଛି ବୋଲି ମୁହଁରେ ହୋ ହୋ ହୋଇ ବୋବାଳି ଛାଡ଼ୁଛନ୍ତି । ( ନିବେଦନ ପୁସ୍ତକାନ୍ତର୍ଗତ ଚିକିତ୍ସାବିଧି ଦ୍ରଷ୍ଟବ୍ୟ ) । କେତେକ ସମ୍ବାଦପତ୍ର ଓ ସଭାସମିତିରେ ବକ୍ତୃତାଦ୍ୱାରା ସାଧାରଣରେ ମେଘଡ଼ ଭର୍ତ୍ତି କରୁଛନ୍ତି; କିନ୍ତୁ ନିଜେ ଅନ୍ୟ

ସମ୍ପାଦପବ ତୁଳନାରେ ଅର୍ଦ୍ଧାଂଶ ପବ ପ୍ରସ୍ତୁର କର ସମାନ ମୂଲ୍ୟ ଶୋଷଣ କରୁଛନ୍ତ । ଅଉ କେତେକ ନାନାପ୍ରକାର ଉପାଦେୟ ଶାସ୍ତ୍ରମାନ ଉଇ, କୀଟ, ଜଳ, ଅଗ୍ନି ପ୍ରଭୃତଦ୍ୱାରା ନଷ୍ଟ ହୋଇ ଯାଉଛୁ, ତାକୁ ସବୁ ଅନୁସନ୍ଧାନଦ୍ୱାରା ଖୋଜ ଲୋଡ଼ ମୁଦ୍ରିତ ନ କର ଯେଉଁ ପୁସ୍ତକ ପ୍ରକାଶ ହୋଇଛୁ, ତହିଁ ମଧ୍ୟରୁ ଯାହାର କାଟତ ଦେଖିଲେ ସଶ୍ରମ ପୂର୍ବକ ପୂର୍ବ ପ୍ରକାଶକ ଦାନାରେ ଧୂଳି ଦେଇ ତାକୁ ମୁଦ୍ରିତ କର କୂଟନୀତ ଓ ଫେଅକାମୀ ପ୍ରତଯୋଗିତାରେ ବିକ୍ରୟ କର ଏଜେଣ୍ଟ ବୋଲଉଛନ୍ତ । ( ପାଠ୍ୟପୁସ୍ତକ ସମ୍ବନ୍ଧରେ ନିବେଦନ ପୁସ୍ତକରେ ଦ୍ରଷ୍ଟବ୍ୟ ) । ଏହିପର ବହୁସଂଖ୍ୟକ ଧୋବଲଠକ କୂଟନୀତ ପ୍ରୟୋଗଦ୍ୱାରା ସାଧାରଣଙ୍କ ଶୋଷି ଜଗତର ଅତ ଅନଷ୍ଟ କରୁଛନ୍ତ । ବିରାଡ଼ି ନିଜେ ଆଖି ବୁଜ ଦୁଧ ପିଇଲପର ହେଉ ନାହିଁ କ ? ସର୍କାରଙ୍କର ଦୃଷ୍ଟି ପଡ଼ିବା ଗୃହ ।

ଧନସଙ୍କୁଳକୁ ଅଲୋଚନା କଲେ ଦେଖାଯାଏ, ସାଧାରଣଙ୍କର ସବୁପ୍ରକାର ଚକଚକୁଆ ଖର୍ଚ୍ଚ ଅପେକ୍ଷାକୃତ ବଢ଼ୁଥିଲେହେଁ, ଧର୍ମକାର୍ଯ୍ୟ ଖର୍ଚ୍ଚରୁ ବର୍ଜନ ବା ନିରୁଦ୍ଧ ହେଉଛୁ । ଅଉ ରାଜସର୍କାରର ଗ୍ରେଡ଼ ଅନୁସାରେ ପ୍ରତ୍ୟେକର ମାସକୁ ୫୦ । ୧୦୦ । ୫୦୦ । ୧୦୦୦ । ୨୦୦୦ । ୫୦୦୦ । ୧୦୦୦୦ ୨୫୦୦୦ । ୩୦୦୦୦ ହଜାର ପାଉଥିବା କର୍ମଚାରଙ୍କର ( ଅନୁସଙ୍ଗୀକ ମଧ୍ୟ ଅଛୁ ) ବର୍ଷକୁବର୍ଷ ୫ । ୧୦ । ୫୦ । ୧୦୦ । ୧୦୦୦ ଗ୍ରେଡ଼ ଅନୁସାରେ ବଢ଼ୁଥିଲେହେଁ ଦଶ ପାଞ୍ଚହଜାର ବ୍ୟୟ ହୋଇ କାଠକମିଟି ବସି ୫୧୭ ଟଙ୍କିଆ ୧୦।୫ ଜଣ ଗୁରୁଙ୍କର ଖାରଜ ହୁଅନ୍ତ । ସମୃଦ୍ଧିଶାଳୀ ଅନ୍ୟାନ୍ୟ ପ୍ରଦେଶ ନୀତ ଦେଖି ଓଧୁଅ ସଙ୍ଗରେ ବଣଭୁଆ ଉବୁଡୁବୁ ପର ବା 'କାଢ଼ ନ ଥାଇ ମାରୁଙ୍ଗା' ପ୍ରବାଦପର ଧନସଙ୍କୁଳ ଓଡ଼ିଶା ପ୍ରଦେଶରେ ନୂଆ ସର୍କାର ସବୁ ବଜେଟରେ ଯେ

ଆଇନ ଜାରି କଲେଣି, ସେଥିରେ ନିଜେ ସର୍କାର ଓ କୌଣସି କାରଖାନା ଚଳିବା ଅସମ୍ଭବ । ବିଶେଷତଃ ଛାପାଖାନା ଉପରେ ଯେ କଟକଣା, ତଦ୍ଦ୍ୱାରା ବହି ଓ ସମ୍ବାଦ-ପତ୍ର ଯାହା ଟିକିଏ ସୁଲଭ ଥିଲା ତହିଁରେ ବାଧା ପଡ଼ିବା ସମ୍ଭାବନା । କେତେ ଛାପାଖାନା ଲୋପ ଓ କେତେକ ଲୋପୋନ୍ମୁଖ ।

ବର୍ତ୍ତମାନ ଉଚ୍ଚଶିକ୍ଷିତ କର୍ମଚାରୀମାନଙ୍କର ମୋଟା ମୋଟା ଦରମା ସବୁ ଅନିଷ୍ଟ, ଅଶାନ୍ତି, ଅବନତି ଓ ବହୁ ଅକର୍ମୀ ସଂଖ୍ୟାର ମୂଳକାରଣ । ସାଧାରଣ ତାଙ୍କୁ ଚାହିଁ ଉଚ୍ଚ ଶିକ୍ଷା ଓ ଚାକିରି ସକାଶେ ବ୍ୟାକୁଳ । କିନ୍ତୁ ଗରିବ ସେ ବିଭାଗରେ କାଳେ ପଶି-ଯାଇପାରନ୍ତି ତତଃ ସେମାନେ ଶିକ୍ଷାସମ୍ବନ୍ଧରେ ଏପରି କୂଟନୀତି ଓ ନିୟମ ଜାରି କରୁଛନ୍ତି, ଗରିବମାନେ ତହିଁରେ ଯେପରି ଢୁକି ନ ପାରନ୍ତି । ଆଉ ଗୋଟାଏ ମୂରବି ଯୋର, କିନ୍ତୁ ତେଲିଆ ମୁଣ୍ଡରେ ତେଲ; ମୂରବି ତ ସେହିମାନେ । ସେହିମାନେ ତ ହର୍ତ୍ତାକର୍ତ୍ତା ଭାଗ୍ୟବିଧାତା ! ଗରିବଙ୍କ ପାଇଁ କହିବାକୁ (ଘରେ କେହି ନାହିଁ, ଯେ ଅଛୁ ତାକୁ ଦିଶେ ନାହିଁ, ଦିଶିଲେ ଶୁଭେ ନାହିଁ, ଶୁଣିଲେ ସେ କିଛି କହେ ନାହିଁ, କହିଲେ ସେ କଥା ରହେ ନାହିଁ ) । ବିଶେଷତଃ ଅନ୍ୟାନ୍ୟ ସମସ୍ତ ପ୍ରଦେଶଠାରୁ ଓଡ଼ିଆଙ୍କ ଆର୍ଥିକ ଅବସ୍ଥା ଅତି ଖରାପ । ସର୍କାରୀ ପ୍ରଭୃତି ସବୁ ବିଭାଗରେ ମୋଟା-ଦରମା ଚାକିରି ଓ ବଡ଼ ବଡ଼ ବେପାର ଅନ୍ୟ ପ୍ରଦେଶୀୟମାନେ କରି ଓଡ଼ିଶାରୁ ଅର୍ଥ ଟାଣି ନେଉଛନ୍ତି । କେତେକ ଓଡ଼ିଆ ସେହିମାନଙ୍କ ଖିଜମତ କରି ଓ ଅନ୍ୟାନ୍ୟ ପ୍ରଦେଶରେ କୁଲିଗିରି କରି 'ଶୀଳବୃତ୍ତି' ବୃତ୍ତିରେ ସାମାନ୍ୟ କିଛି ଅଣନ୍ତି । ଆଉ ଜଗନ୍ନାଥଙ୍କ ସକାଶେ ଅନ୍ୟ ପ୍ରଦେଶୀୟମାନେ ସାମୟିକ କିଛିମାତ୍ର ଦେଇଥାନ୍ତି । ଏବେ ନବ୍ୟସଭ୍ୟମାନେ ହିନ୍ଦୁଧର୍ମ ସମ୍ବନ୍ଧରେ ଯେପରି ବିଭ୍ରାଟ କଲେଣି, ତାହା ମଧ୍ୟ ବନ୍ଦ ହେବା

ସମ୍ଭାବନା । ଯେ କେତେକ ଓଡ଼ିଆ ବଡ଼ ବଡ଼ ଦରମାଦାର ଓ ଧନୀ, ସେମାନଙ୍କ ମଧ୍ୟରୁ ଅଧିକାଂଶ ନିଃସ୍ୱହମାନଙ୍କୁ ଛପୁଡ଼ି ସେ ଧନ ସବୁ ବିଦେଶକୁ ପ୍ରେରଣ କରିଥାନ୍ତି । ଅନ୍ୟାନ୍ୟମାନେ ଓଡ଼ିଆଙ୍କୁ ତୁଚ୍ଛ ମଣିଲେହେଁ, ଓଡ଼ିଆମାନେ ତାଙ୍କ ସହ ତାଙ୍କ ଭାଷାରେ କଥାଭାଷା ଓ ମନ ଯୋଗାଇ ବାହାଦୁରୀ ଦେଖାଇଥାନ୍ତି ।

ବିଶେଷତଃ କେତେକ ଗୁପ୍ତମେଳଦ୍ୱାରା ଅନ୍ୟାନ୍ୟଙ୍କୁ ପରାସ୍ତ କରି ସବୁ ବିଭାଗରେ ଅଧିକସଂଖ୍ୟାହେତୁ ଆଧିପତ୍ୟ ଜାରିଦ୍ୱାରା ପରମ୍ପରାଗତ ସଦ୍ଧର୍ମବିଧିକୁ ସମୂଳେ ଧ୍ୱଂସ କରି ବିଧର୍ମ-ମତକୁ ପ୍ରଚୁର ଓ ଜାରି କରି ସାଧାରଣ ଶ୍ରେୟ ବାହାନାରେ ବିପରୀତ କାର୍ଯ୍ୟ ଓ ସ୍ୱାର୍ଥପରତାରେ ମଗ୍ନ ଛନ୍ତି । ପରଂପରାଗତ ଅବୈତନିକ-ପ୍ରଥାରେ ବେତନ ସୃଷ୍ଟି, ମଧ୍ୟ କିଛି କାର୍ଯ୍ୟ ନ କରି ହାତ ଟେକା ସକାଶେ ଖାଲି ବସି, କେତେକ ଦିନ ହାଜର ନ ହୋଇ ମଧ୍ୟ ପୂରା ଦରମା ଗଣି ନେଉଛନ୍ତି । ଏହା ସବୁ ତ ନିଃସ୍ୱାର୍ଥ ପରୋପକାର ବା ନିଷ୍କାମକର୍ମ ! ଏହିପରି ସ୍ୱାର୍ଥୀଙ୍କଦ୍ୱାରା କାର୍ଯ୍ୟ ଶୃଙ୍ଖଳା ହେବା ମା ଗଙ୍ଗା ଜାଣେ । ସୁତରାଂ ସାଧାରଣ ଲୋକେ ଚପିହୋଇ ସାରଶୋଷିତ ହେବାର ସମ୍ପୂର୍ଣ୍ଣ ସମ୍ଭାବନା । ଏ ଦର୍ପକୁ ସୃଷ୍ଟିକର୍ତ୍ତା ସହିବା ଅସମ୍ଭବ । 'କପଟକୁ ଚପଟ, ସାଫିକୁ ମାଫି' । "ଅତିଦର୍ପେ ହତା ଲଙ୍କା ଅତିମାନେ ଚ କୌରବାଃ, ଅତିଦାନେ ବଳିର୍ବଦ୍ଧ ସର୍ବମତ୍ୟନ୍ତ ଗର୍ହିତଂ ।" ଅତଃ ସବୁ ବିଭାଗ ନାନାପ୍ରକାର କର ବସାଇ ଗରିବଙ୍କୁ ଚପି ଅର୍ଥ ସଂଗ୍ରହ ସକାଶେ ରହ୍ଲାଳ ହେଉଛନ୍ତି । ସତ୍କର୍ମହୀନ ନୈଷ୍ଠିକ-ମାନେ ସ୍ୱସ୍ୱ ପିତୃଗଣ ଓ ପୂର୍ବାର୍ଜିତ ସତ୍କର୍ମବଳରୁ ଉତ୍କୃଷ୍ଟତା ଲଭି ଭାବୁଛନ୍ତି, 'ଅମ୍ଭ ବଂଶଧରମାନେ କାଳକାଳକୁ ଗରିବ ହେବେ ନାହିଁ । ଅମ୍ଭେ ଦେଖିଲ କାମ କରିନେବା ।' ଏହା ଗୋଟିଏ ମହତ୍ ଭ୍ରମ ନୁହେଁ କି ? ପୃଥ୍ୱୀ ଦେଖି ହସୁଛି ।

"ମାନ୍ଧାତାଦ୍ଧ ମହୀପତିଃ କୃତଯୁଗାଲଙ୍କାର ହ୍ରୀଗେଗତାଃ
ସେତୁର୍ଯେନ ମହୋଦଧୌ ବିରଚିତଃ କ୍ୱାସୌ ଦଶାସ୍ୟାନ୍ତକଃ ?
ଅନ୍ୟେ ଚାପି ଯୁଧିଷ୍ଠିରାଃ ପ୍ରଭୃତୟଃ ଯେ ଗୃଭୂବନ୍ ଭୂତଲେ
ନୈକେନାପି ଗତା ସମଂ ବସୁମତୀ ମନ୍ୟେ ତ୍ୱୟା ଯାସ୍ୟତ ॥"

'ବେଙ୍ଗ ବୋଲେ ବେଙ୍ଗୁଲି ଲୋ ପୃଥ୍ୱୀ କ୍ଷଣକ୍ଷଣକେ ଆନ।' ଏହି ସହର ନ୍ୟୂନସଂଖ୍ୟକ ଜନତା ସମୟେ ସଡ଼କ ବା ରାସ୍ତାରେ ପାଞ୍ଚଆଇନ ଏପରି ଜାରି ଥିଲା ଯେ, କେହି ପ୍ରସା କରୁ ନ ଥିଲେ। ନଦୀର ଏ ପାରି କଥା କିଏ ପଚାରେ ? ଜଳଧାର ଆରପାଖରେ ମଇଳା ଦେଖା ନ ଥିଲା। ନିରୂପିତ ସମୟ ବ୍ୟତୀତ ଗୋରୁଗାଈ ସହରମଧ୍ୟରେ ଦେଖା ହେଉ ନ ଥିଲେ। ବର୍ତ୍ତମାନ୍ ସାଇକେଲ୍, ମଟର, ରିକ୍ସା, ଗାଡ଼ି ପ୍ରଭୃତି ଓ ଜନାକୀର୍ଣ୍ଣ ସମୟେ ସହରତମାମ ମୂତ୍ରଗନ୍ଧମୟ। ସହରର କେତେକାଂଶ, ନଦୀକୂଳ, ବାଟ, ଘାଟ, ସିଢ଼ୀ ଓ ନଦୀତମାମ ମଇଳାମୟ। କୁଣ୍ଠମ୍ୱାନୁଯାୟୀ ପ୍ରତ୍ୟେକ ଗୃହୀର ଯେତେ ଜଳ ବ୍ୟବହାର ହୁଏ ଓ କୂପ ନିକଟରେ ଯେତେ ଜଳ ବ୍ୟର୍ଥ ହୋଇଥାଏ, ବିଶେଷତଃ ଯେଉଁମାନଙ୍କର ବ୍ୟବହାସ୍ୱୟ ମଇଳା ପାଣି ରାସ୍ତା ନଳାରେ ପଶି ରାସ୍ତାତମାମ ଦୁର୍ଗନ୍ଧ ହେଉଛି, ଏବଂ ମଶକାଦ୍ଦି ଜାତ ହେଉଛନ୍ତି, ତହିଁରୁ ସଡ଼ା ପଙ୍କ ବାହାରି କେତେକ ରାସ୍ତାରେ ଓ କେତେକ ସେହି ନଳାରେ ପଶୁଛି, ମଇଳାପାଣି ଏପାଖ ସେପାଖ ହେଉଛି ଏବଂ ରାସ୍ତାରେ ଛୁଆଁ ହୋଇ ସହରତମାମ ଅସ୍ୱାସ୍ଥ୍ୟକର ହେଉଛି; ତତ୍ପରିବର୍ତ୍ତେ ସେ ପାଣି ମଡ଼ାହୋଇ ନିଜ ନିଜର ଅଗଣ୍ଡ ମଧ୍ୟସ୍ଥ କିଛି ସ୍ଥାନରେ ବା ଅଭାବପକ୍ଷେ ପଡ଼ଶାଘର ବାଡ଼ିରେ ସେ ପାଣିତକ ମଡ଼ାହୋଇ ଫଳ, ମୂଳ, ଶାକସବଜୀ, ପୁଷ୍ପାଦ୍ଦି ଯଦ୍ଦି ଆମଦାନି ହେଉଥାନ୍ତା, ତେବେ ନିଜର ଓ ସାଧାରଣର ମହୋପକାର ଏବଂ ସହର କେଡ଼େ ସ୍ୱାସ୍ଥ୍ୟକର ହେଉ ନ ଥାନ୍ତା!

କି ? କେବଳ ବର୍ଷା ଜଳ ରାସ୍ତା ନଳାରେ ବହି ଯାଉଥାନ୍ତା । ଏତଦ୍ଦ୍ୱାରା କେତେକ ଖର୍ଚ୍ଚର ମଧ୍ୟ ଲାଘବ ହୁଅନ୍ତା । "ଏକକ୍ରିୟା (ତ୍ୟର୍ଥ ବା ) ଦ୍ୟର୍ଥକରୀ ବହୁବ ।" ତାହା ହେଉ ନାହିଁ । ଯେଉଁମାନେ ଭାରତୀୟଙ୍କ ଅବସ୍ଥା ସ୍ୱଚକ୍ଷୁରେ ଦେଖି ଅନୁମାନ କଲେ କିଛି ବା ଶ୍ରେୟ ହେଉଥାନ୍ତା, ସେ ଲାଟ ପ୍ରଭୃତି ଯେଉଁ ରାସ୍ତାରେ ଯିବାଆସିବା କରନ୍ତି ( କି ସହର କି ମଫସଲ ) ସେ ପକ୍କାରାସ୍ତାମାନ ଉପର ଶାସକଙ୍କ ସଙ୍କେତାନୁଯାୟୀ ଏପରି ଚକ୍‌ଚକ୍‌, ସଫା ସୁନ୍ଦର ହୋଇଥାଏ ଯେ, ସେମାନେ ଦେଖି ଅନୁମାନ କରନ୍ତିଅନ୍ତି, ସବୁ ଭାରତୀୟମାନେ ବେଶ୍ ସୁଖ ଓ ଆସ୍ୱା-ସରେ ଚଳୁଛନ୍ତି । ତେଣୁ ଯାହା କିଛି ଶ୍ରେୟ ହେଉଥାନ୍ତା ତାହା ହୋଇପାରେ ନାହିଁ । ( କେହି ଲାଟ ଓ ଖୋଦ ବ୍ରିଟିଶ ସମ୍ରାଟ କହିଥିଲେ ଯେ, 'ଅମ୍ଭଙ୍କୁ ଏପରି ରାସ୍ତାରେ ନେବା ଅଣିମା କର ଯେ, ଭିତର କଥା କିଛି ବୁଝି ହୁଏ ନାହିଁ' । ମଧ୍ୟ କେହି ଗୁପ୍ତରେ ମଫସଲକୁ ବୁଲି ଯାଇଥିବାର ଶୁଣା ଅଛି ) । ( ପୂର୍ବେ ଭାରତୀୟ ପ୍ରଜାଶାସକ ଓ ପାଳକମାନେ ଚରଚକ୍ଷୁଦ୍ୱାରା ଏବଂ ପରଂପରାଗତ ଅତର୍କିତ ବା ଗୁପ୍ତଭାବରେ ଭ୍ରମଣ କରି ସାଧାରଣଙ୍କ ଅବସ୍ଥା ଓ ଖଳଲୋକଙ୍କ କୁଟିଳତା ଯେପରି ଜାଣୁଥିଲେ ଏବଂ ନିଜେ ଦେଖୁଥିଲେ ସେ ରାମରାଜତ୍ୱ ନଦାରଦ ) । ଉତ୍କଳମଣି ଲାଟଙ୍କ ଓଡ଼ିଶାକୁ ଅଣିବା ଏବଂ ଗାନ୍ଧୀ ଗୋଲ୍‌ଟେବୁଲ୍ ବୈଠକକୁ ବିଲାତକୁ ଯିବା ସମୟରେ ସେଠା ସଭା ବିଶେଷରେ କହିଥିବା ସେଠା ଗରିବ ଓ ଏଠା ବଡ଼ଲୋକଙ୍କ ଅବସ୍ଥା ସ୍ମରଣୀୟ । ଖାଦ୍ୟ-ଶସ୍ୟାଦି ସୁଲଭ ସମ୍ବନ୍ଧରେ ତଳୁ ଉପର୍ଯ୍ୟପରି ଯେପରି କାଟଛାଣ୍ଟଦ୍ୱାରା ଉତ୍କର୍ଷତା ବୃଦ୍ଧି ରିପୋର୍ଟ ଯାଇଥାଏ, ତା ଅନୁସନ୍ଧେୟ ।

ସହରମଧ୍ୟରେ ରକ୍ଷକ ବିନା ଗୋରୁ ସବୁବେଳେ ବୁଲୁଛନ୍ତି । ଖଜଣା ଓ ନାନାପ୍ରକାର ଟିକସ ପ୍ରଭୃତି ଚତୁର୍ଗୁଣ ଗରିବଙ୍କଠାରୁ ଅଦାୟ ହୋଇ କର୍ମଚାରୀସଂଖ୍ୟା ଓ ବେତନ ଢେର ବେଶୀ ।

ତୋଷିଶପା ଧନରେ ଧନୀଙ୍କ ଯାନ ବାହନ ଟିବାଅସିବା ପାଇଁ ସହରତମାମ ଚକଚକମୟ । ଗରିବମାନେ ଙ୍କର ଏପାଖ ସେପାଖ କରୁ ବାଟରେ ଭୟଭୀତ ଗମନ ଓ ସେ ସୁଖରୁ ବଞ୍ଚିତ ଓ ହଟହଟା । ପ୍ରାୟ ଅଧିକାଂଶ ଅଫିସରେ ‑ଦିବସରେ ମଧ୍ୟ ବିଜୁଳିଆଲୋକ । ଗୃହଅଣା ସ୍ଥଳେ ଟଙ୍କାଏ ଖର୍ଚ୍ଚ ହୋଇ ସର୍କାର ଗୃକର ଓ ବଡ଼ଶାଳୀଙ୍କ ଉପଭୋଗ-ବ୍ୟୟ ବଢ଼ୁଛି । ଇହଜନ୍ମରେ ଜନ୍ମଜନ୍ମାର୍ଜିତ ପାପ ବା ପୁଣ୍ୟ ଅୟ ବା ଅପବ୍ୟୟାଦି କରିବାକୁ ଓ ସୁଖ ଦୁଃଖାଦି ଭୋଗ କରି ଜୀବିତ ରହିବାପାଇଁ ଯାହା ଯାହା ନିର୍ଦ୍ଦିଷ୍ଟ ଅଛି, ତାହା ପୂର୍ତ୍ତି ନ ହେଲେ ଶରୀର ପତନ ହୋଇ ନ ପାରେ । ସବିଶେଷ କାରଣ ନେଇ କ୍ୱଚିତ୍ ବ୍ୟତିକ୍ରମ ମଧ୍ୟ ଘଟିଥାଏ । ଶାସ୍ତ୍ର ନିର୍ଦ୍ଦେଶମତେ କର୍ତ୍ତୃଭିଶକ୍ତି ବିବେକଦ୍ୱାରା ସତ୍ପଥରେ ରହି ପ୍ରତିକାର କଲେ ବା ଲଙ୍ଘନଦ୍ୱାରା ଅନ୍ୟାୟ କଲେ ସୁଖ ଦୁଃଖାଦି ମାତ୍ରା ନ୍ୟୂନାଧିକ ହୋଇପାରେ । ଅନ୍ୟାୟଦ୍ୱାରା ଅଳ୍ପାୟାସରେ ନିର୍ଦ୍ଦିଷ୍ଟ ଫଳ ଶୀଘ୍ର ମିଳେ; କିନ୍ତୁ ସେ କ୍ଷଣସ୍ଥାୟୀ । ନ୍ୟାୟରେ ବହୁଶ୍ରମଦ୍ୱାରା ନିର୍ଦ୍ଦିଷ୍ଟ ଫଳ ମିଳିଲେହେଁ ସେ ବହୁକାଳସ୍ଥାୟୀ ଓ ଶାନ୍ତିପ୍ରଦ । ହିତସାଧନ ସକାଶେ ଯେଉଁମାନଙ୍କ ଭୋଟ ବଳରେ ଯେଉଁମାନେ ରକ୍ଷା-ଶାସନ-ପାଳନ ପାଇଁ କ୍ଷମତା ପାଇଥାନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ସେହି ସାଧାରଣଙ୍କ ବିଶେଷତଃ ଗରିବମାନଙ୍କର ସର୍ବପରି ସବୁ ପ୍ରକାର ଅନିଷ୍ଟ କରିଥାନ୍ତି । ବିଶେଷ ଦୁଃଖର କାରଣ, ବର୍ତ୍ତମାନ ଅଧିକାଂଶ ବା ପ୍ରାୟ ସମସ୍ତେ ଦରିଦ୍ର ବା ଅବନତମାନଙ୍କ ଅବସ୍ଥାକୁ କିମ୍ବା ତଳକୁ ଆଦୌ ନ ଚାହିଁ କେବଳ ଧନୀ ଓ ନାମଯାଦା ଏବଂ ବଡ଼ଲୋକଙ୍କ ଆଡ଼ମ୍ବରକୁ ବା ଉପରକୁ ଚାହୁଁଥିବାରୁ ଦରିଦ୍ରତା ଓ ଅଶାନ୍ତି ବଢୁଛି । "ଅଧୋଧଃ ପଶ୍ୟତଃ କସ୍ୟ ମହିମାନୋପଚୀୟତେ । ଉପର୍ଯ୍ୟୁ-ପରିପଶ୍ୟନ୍ତଃ ସର୍ବ ଏବ ଦରିଦ୍ରତି" । ବହୁମୂଲ୍ୟ ବା ଅମୂଲ୍ୟ

ସମସ୍ତଙ୍କୁ ଆଳସ୍ୟାଦିଦ୍ୱାରା ବୃଥା ବ୍ୟୟ ନ କରି ଦେହ ଓ ଦେହର ଉନ୍ନତି ସକାଶେ ସମୁଚିତ ଭାବରେ ଲାଗି ସାମାନ୍ୟ ହେଉ ବା ବେଶୀ ହେଉ ଯାହା ପ୍ରାପ୍ତ ହେବ, ଈଶ୍ୱରଦତ୍ତ ବୋଲି ଭାବି ଆନନ୍ଦରେ ଚଳିଲେ ଉନ୍ନତି ଓ ସର୍ବଶ୍ରେଷ୍ଠ ସୁଖ ଏବଂ ଶାନ୍ତି ମିଳିବାଇ ମିଳିବ ।

ପ୍ରତିକାର

ଏକମାତ୍ର ମାତା କ୍ଷୀରଦ ଦେଇ ଜନ୍ମିତ ଶିଶୁ-ସନ୍ତାନକୁ ପାଳିବାପରି ଅତି ଉପାଦେୟ ସର୍ବୋତ୍କୃଷ୍ଟ ଖାଦ୍ୟପଦାର୍ଥାଦି ପ୍ରସବିନୀ ମା-ଟି ବା ଭୂ-ମାତା ଓ ଗୋ-ମାତାଠାରୁ ଉପଯୁକ୍ତ ପବିତ୍ର ଖାଦ୍ୟ ଉପଯୁକ୍ତ ଭାବରେ ଆମଦାନୀ ହେଲେ ସର୍ବସାଧାରଣ ଯେ ସୁଖ ସ୍ୱଚ୍ଛନ୍ଦରେ ଚଳନ୍ତେ, ତତ୍‌ପ୍ରତି ସମ୍ୟକ୍‌ଯୁକ୍ତ ଯତ୍ନ ହେଉ ନାହିଁ । ଓଡ଼ିଶାର ବନ୍ୟା ନିବାରଣପାଇଁ ହୋ ହୋ ଲାଗିଛି । କେନ୍ଦ୍ର-ସର୍କାର, ଓଡ଼ିଶାସର୍କାର, ଗାନ୍ଧିଙ୍କ ଯତ୍ନଦ୍ୱାରା ବ୍ୟକ୍ତି ବିଶେଷଙ୍କଠାରୁ, ଉପରାଞ୍ଚଳ ଓ ଗଡ଼ଜାତରୁ ବହୁତ ଟଙ୍କା ଆଦାୟ ହୋଇପାରେ । ତହିଁରୁ ଅଧିକାଂଶ ଧୋବଲିଠକ ଗିଳିବେ, କିନ୍ତୁ ସଫଳ ହେବ ନାହିଁ । ସାମାନ୍ୟ କେତେକାଂଶ ବ୍ୟତୀତ ପୂର୍ବ କାଳବାସୀ ବନ୍ୟା କଣ ଆଗେ ଜାଣୁ ନ ଥିଲେ; କିନ୍ତୁ କଟକ ଜିଲ୍ଲା ହୁଲ୍‌ସ୍ଥୁଲ୍ ହେଉଥିଲା । କାଠଯୋଡ଼ି ନଦୀ ଗର୍ଭ ବାଲିପଠା ହୋଇ କଟକ ଜିଲ୍ଲାର ଅଧିକାଂଶରେ ଖାଲି ଡିପ ହେତୁ ବର୍ଷେ ବର୍ଷେ କେତେକ କୁଆ ବେଉଷଣ ବନ୍ଧ । ଧୋଇ ଯାହା ହେଉ ଘର ଗ୍ରାମ ସମ୍ବନ୍ଧରେ ଏବେ ତେତେ ହଟହଟା ଅଛି କି ? କୁଆଖାଇରେ ବେଶୀ ପାଣି ଯାଇ ଏବେ ପୂର୍ବ ଜିଲ୍ଲାରେ ଅଧିକାଂଶ ହୁଲ୍‌ସ୍ଥୁଲ୍ । ଏ ବର୍ଷ ତାର ପ୍ରତ୍ୟକ୍ଷ ପ୍ରମାଣ । କେନାଲ୍ ହେତୁ ମହାନଦୀ ବନ୍ୟାରେ କେତେକାଂଶ ହୁଲ୍‌ସ୍ଥୁଲ୍ । ଏ କଥା କିଏ ଭାବୁଛି କି ? ଅହରହ ପଙ୍କରେ ପଶି ଗୋଡ଼ ଧୋଉଥିଲେହେଁ ଗୋଡ଼

ସଢ଼ି ସଢ଼ି ଯାହା ହୋଇଥାଏ । ବର୍ତ୍ତମାନ ନାନାପ୍ରକାର ପ୍ରତିକାର ହେଉଥିଲେହେଁ ଓଡ଼ିଶା ସର୍କାରର ବାରକମିସ୍ନି ଓ ବୋର୍ଡ଼ର ଅବସ୍ଥା ବନ୍ୟାସାହାଯ୍ୟରେ ତାହା ନୁହେ କି ? ବର୍ଷେ ବର୍ଷେ ସମୟେ ସମୟେ ପ୍ରବଳ ବର୍ଷା ଓ ବନ୍ୟା ହୋଇଥାଏ, ସେପରି ହେଲେ ବର୍ତ୍ତମାନ ଶୁଣାଯାଉଥିବା ପ୍ରତିକାରକୁ ଧ୍ୱସ୍ତ ନଷ୍ଟ କରି ଅପେକ୍ଷାକୃତ ବାଲୁକାମୟ ହୋଇ ଅତି ହୁଲୁସ୍ଥୁଲୁ କରିଦେବ— ଏହା ନିଶ୍ଚୟ । ( ନିବେଦନ ପୁସ୍ତକ ପ୍ରଜାପାଳନ ଓ ବନ୍ୟା ପ୍ରତିକାର ଦ୍ରଷ୍ଟବ୍ୟ ) । ପ୍ରଧାନତଃ ଆମ୍ଭର ଏହି କୃଷିପ୍ରଧାନ ପ୍ରଦେଶରେ କୃଷିର ଉନ୍ନତି ନ କରାଇ ନେତାମାନେ ସାଧାରଣଙ୍କୁ ସ୍ୱୀକୃତ ଦେଇଥିବା ଠିକସ ଛାଡ଼ ବା ଖଜଣା କମାଇଦେଲେ କିମ୍ବା ବରାବର ଛାଡ଼ିଦେଲେ ଲୋକେ ଯେ ସୁଖୀ ହୋଇଯିବେ ତାହା ଭାବିବା ବୃଥା । ହାରାହାରି ପ୍ରତ୍ୟେକ କୃଷକଙ୍କୁ ବର୍ଷକେ ଯେତେ ଖଜଣା ଦେବାକୁ ପଡ଼େ ତହିଁରେ ସେ ୧୫।୨୦ ଦିନ ଚଳିପାରିବ କି ? ଅତଃ ଇନ୍ଦ୍ରିୟଲାଳସାରୁ ନିବୃତ୍ତ ହୋଇ, ଶରୀରକୁ ପବିତ୍ର ରଖି ଶୀତୋଷ୍ଣାଦିଦ୍ୱନ୍ଦ୍ୱସହନଶୀଳ କଲେ ସବୁ ଦୁଃଖ ଦୂର ହୋଇ ଅତି ଉତ୍କୃଷ୍ଟ ସୁଖ ପ୍ରାପ୍ତ ହୋଇଥାଏ । ଏହା ଅଧିକାଂଶ ବୁଝି ପାରୁ ନାହାନ୍ତି ।

ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣସୁଖଦୁଃଖଦାଃ
ଆଗମାପାୟିନୋଽନିତ୍ୟାସ୍ତାଂ ସ୍ତିତିକ୍ଷସ୍ୱ ଭାରତ ! ଗୀତା ୨।୧୪
ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖଯୋନୟ ଏବ ତେ ।
ଆଦ୍ୟନ୍ତବନ୍ତଃ କୌନ୍ତେୟ ନ ତେଷୁ ରମତେ ବୁଧଃ । ଗୀତା ୫।୨୨

ବର୍ତ୍ତମାନ କେତେକ ସ୍ୱଚ୍ଛନ୍ଦରେ ନିଜେ ନିଜେ ଯାଇ-ଆସିପାରିବା ସବିଶେଷ ସାମାନ୍ୟ ରାସ୍ତାକୁ ରିକ୍ସା, ସାଇକେଲ, ଗାଡ଼ି, ମଟରାଦି ବ୍ୟତୀତ ଯିବାଆସିବା କରୁ ନାହାନ୍ତି । ନିଜ କର୍ମେନ୍ଦ୍ରିୟ ସାଧିତ ଯଥୋପଯୁକ୍ତ ସାମାନ୍ୟ କର୍ତ୍ତବ୍ୟ-କାର୍ଯ୍ୟକୁ ନିଜେ ନ କରି ଅନ୍ୟଦ୍ୱାରା କରାଇ ବାହାଦୁରୀ ମଣୁଛନ୍ତି ।

'ନିକଟପୂର୍ବେ ତାହା ବରାବର ହେଉଥିଲା'। ଅପବିତ୍ର ଅବସ୍ଥାରେ ଇନ୍ଦ୍ରିୟଲାଳସାମୂଳକ ଭୋଗ ଡେଜପାରୁ ନାହାନ୍ତି । ଫଳତଃ ଇନ୍ଦ୍ରିୟମାନେ ସବଳତା ପରିବର୍ତ୍ତେ ଦୁର୍ବଳ ଏବଂ ରୋଗଗ୍ରସ୍ତ, ନିକମା ଓ ସୁଖ ପରିବର୍ତ୍ତେ ଦୁଃଖମୟ ସନ୍ତାପାନଳରେ କଳବଳ ହେଉଛନ୍ତି । କାଷ୍ଠାଦି ଆଧାରଦ୍ୱାରା ଅଗ୍ନିପରି ଶାନ୍ତିଜନକ ସତ୍ସୁଖ ପରିବର୍ତ୍ତେ ଦୁଃଖଜନକ ଅପୂରଣ ଇନ୍ଦ୍ରିୟଲାଳସା ବଢ଼ୁଛି ମାତ୍ର । 'ଶରୀରର ନାମ ମହାଶୟେ, ଯାହା ସୁହାଇବ ତା ସହେ'। "ନ ହି ସୁଖଂ ଦୁଃଖୈର୍ବିନା ଲଭ୍ୟତେ"। ସିଦ୍ଧ-ପୁରୁଷମାନଙ୍କର ଆଦେଶ ଅଛି, ବିଦ୍ୟାଭ୍ୟାସ ଓ ଅର୍ଥଚିନ୍ତା ବିଷୟରେ ଭାବିବ,—ମୁଁ ବୁଢ଼ା ହେବି ନାହିଁ କି ମରିବି ନାହିଁ । ଆଉ ଧର୍ମ ସାଧନ ବିଷୟରେ ଭାବିବ,—ହେଇଟି ମୃତ୍ୟୁ ଆସି ମୋର 'କେଶାକର୍ଷଣ କରି ଧଇଲାଣି ତ; କିଛି ହେଲେ ଧର୍ମକାର୍ଯ୍ୟ କରିପକାଏ । ( ରାବଣଠାରୁ ଶ୍ରୀରାମଚନ୍ଦ୍ରଙ୍କର ରାଜନୀତି ଉପଦେଶ ପ୍ରବାଦ ସ୍ମରଣୀୟ )। ଅତଃ ଧର୍ମକାର୍ଯ୍ୟରେ ହେଳା କରିବ ନାହିଁ । ଶକ୍ତ୍ୟନୁଯାୟୀ ସତ୍ପାତ୍ରରେ ଦାନ, ସାଧାରଣରେ ଦୟା, ସର୍ବଦା ଭଗବଲ୍ଲୟ ପ୍ରଧାନ ।

ଅଜରାମରବତ୍ ପ୍ରାଜ୍ଞୋ ବିଦ୍ୟାମର୍ଥଞ୍ଚ ଚିନ୍ତୟେତ୍ ।
ଗୃହୀତ ଇବ କେଶେଷୁ ମୃତ୍ୟୁନା ଧର୍ମମାଚରେତ୍ ॥

ଆଉ ବର୍ତ୍ତମାନ କେତେକ ଯେଉଁ ସାମ୍ୟବାଦରେ ମାତିଛନ୍ତି, ନାମରୂପାତ୍ମକ ସାଧାରଣ ଜଗତରେ ତାହା ଯେ ଆଦୌ ହୋଇ ନ ପାରେ, ତା ଭାବିପାରୁ ନାହାନ୍ତି । 'ଜଗତସ୍ଥ କୋଟି କୋଟି ଲୋକମଧ୍ୟରେ' ପରସ୍ପର ପ୍ରତ୍ୟେକର ବା କାହାର ସହିତ କାହାର ରୂପ ଓ ସ୍ୱର ସମାନ ଅଛି କି ? ସେମାନେ ମଧ୍ୟ ଦ୍ୱିତଳ-ତ୍ରିତଳ ହର୍ମ୍ୟରେ ରହି ଲକ୍ଷ ଲକ୍ଷ ମୁଦ୍ରା ରଖି ମହାବୈଭୋଗରେ ବୁଲୁଉଛନ୍ତି; କିନ୍ତୁ ପଡ଼ଶାବାସୀ ଭଙ୍ଗା କୁଡ଼ିଆରେ ପଡ଼ି ପେଟରେ ଓଦାକନା ପକାଇ ସଢ଼ୁଥିବାର

ଦେଖୁଛନ୍ତି କି ? ସେ ଶୁଣିଛନ୍ତି ମାତ୍ର, ପରୋପକାର ଓ ନିଷ୍କାମ-କର୍ମ କରିବାକୁ ଶାସ୍ତ୍ରରେ ଲେଖାଅଛି; କିନ୍ତୁ ସେ ଶାସ୍ତ୍ର କେଉଁ କର୍ମକୁ ଓ କାହା ସମ୍ବନ୍ଧରେ କାମନା ରହିତ ହୋଇ କରିବାକୁ କହୁଛି, ତାହା ବୁଝି ନାହାନ୍ତି । ନିଜର ଯାହା ଅଛି ବା ଯାହା ଠକାଠକି କରି ଅର୍ଜୁ କରୁଛନ୍ତି, ତହିଁରୁ ନିଜର ସ୍ୱକୀୟଙ୍କ ପାଇଁ ଖର୍ଚ୍ଚ ହେଉଅଛି କେତେ ? ସାଧାରଣଙ୍କ ସକାଶେ ବ୍ୟୟ ହେଉଅଛି କେତେ ?—ଭାବୁ ନାହାନ୍ତି । କେବଳ ସାଧାରଣ ଶ୍ରେୟ ବାହାନାରେ ମେଣ୍ଢା ପୂରାଇ ମୁହଁରେ ହୋ ହୋ ହେଉଛନ୍ତି । ଯେତେବେଳେ ହେଲେ ଏ କପଟକୁ ଚପଟ ପଡ଼ିବଇ ପଡ଼ିବ । ସିଦ୍ଧ ବାକ୍ୟ ଅଛି, 'କପଟକୁ ଚପଟ; ସାଫିକି ମାଫି' । ସମଭାବ କଣ ସହଜ କଥା ନା ମୁହଁର କଥା ? ସମଭାବାତ୍ମକ ମହାପୁରୁଷଙ୍କର ବାକ୍‌ପ୍ରଭାବରେ ମନୁଷ୍ୟ କି ଛାର, ଜଗତ ଭସ୍ମ ହୋଇ ଯାଇପାରେ । ଅତଃ ଯାହା ଯେତକି ହୋଇପାରେ, ସବୁଆଡ଼କୁ ଭାବ ଚିନ୍ତି କହିବା ଓ କରିବା ଉଚିତ । ପୁଣି କେତେକ ନିଜ ସମ୍ପତ୍ତିକି ସ୍ୱ-ସମ୍ପର୍କୀୟଙ୍କ ନାମରେ ବେନାମୀ କରି ଦେଇ ସାମ୍ୟବାଦରେ ମାତିବାର ଶୁଣାଯାଏ । ଅଧିକନ୍ତୁ ଗୋଟିଏ ହାସ୍ୟର କଥା; ଯଥା—ସାଧାରଣଙ୍କ ଶ୍ରେୟ ବାହାନାରେ ପଞ୍ଚାଏ ସ୍ୱେଚ୍ଛାସେବକ ଓ ନେତା ମୁଖା ପୂରାଇ ମେହେନ୍ତରର ବା ହରିଜନ ପଡ଼ା ଓ ମଇଳା ସଫା କରିବାର ଶୁଣାଯାଏ; କିନ୍ତୁ ସାଧାରଣ ପାଇଖାନା ଓ ଡ୍ରାଣ୍ଡ ବା ସଡ଼କ ସଫା କଲେ ସାଧାରଣ ଲୋକେ ପାଇଖାନା ଟିକସଦାୟରୁ ମୁକ୍ତ ହେଲେ ମହୋପକାର ହୁଅନ୍ତା ନାହିଁ କି ? ଏହିପରି କେତେକ ଯେ ବିଶୃଙ୍ଖଳା ଓ ବିଭ୍ରାଟରେ ମାତିଛନ୍ତି,—ଏହା ମହତ୍ ଭ୍ରମ ନୁହେ କି ?

---

# ଦେହୀବିଭାଗ

## ସନାତନ ଧର୍ମୋକ୍ତ ,ବୈଦକ-ଦୈବକ କର୍ମ

ବୈଦିକ କର୍ମ ମାନବମାନଙ୍କ ପକ୍ଷରେ ଯପୃରୋନାସ୍ତି ମହୋପକାରକ, ଉପାଦେୟ, ଶ୍ରେୟସ୍କର, ବାଞ୍ଛିତଫଳପ୍ରଦ, ସର୍ବାରିଷ୍ଟନିବାରକ, ଜନ୍ମଜନ୍ମାନ୍ତର ପାପର ପ୍ରତିକାରକ, ଭବିଷ୍ୟତ ଜନ୍ମସୁଖକର, ଧନାଦି ଚତୁର୍ବର୍ଗ, ଧର୍ମାଦି ଚତୁର୍ବର୍ଗ-ସାଧକ, ଅମୃତତ୍ୱ ବା ମୋକ୍ଷପ୍ରଦାୟକ । ପଞ୍ଚକ୍ଳେଶ (୧), ତ୍ରିତାପ (୨) ନିବାରକ, ଷଡ଼୍ରିପୁ (୩) ଜୟପୂର୍ବକ ତ୍ରିବିଧ ସୁଖ (୪) ପ୍ରଦାୟକ, ଇତ୍ୟାଦି ଇତ୍ୟାଦି ସୁଖ ସ୍ୱଚ୍ଛନ୍ଦରେ କାଳ ଯାପନ କରିବା ନିମିତ୍ତ ଯେ ସବୁ ବିଧି ଏବଂ ଦେବପିତୃପ୍ରତିକାରକ ନିତ୍ୟ (୫) ନୈମିତ୍ତିକ (୬) ସ୍ମାର୍ତ୍ତକର୍ମ ନିରୂପଣ ଅଛି; ତହିଁ ମଧ୍ୟରୁ

---

୧ । ପଞ୍ଚକ୍ଳେଶ=ଅବିଦ୍ୟା, ଯଥା—ଦେହରେ ଆତ୍ମବୁଦ୍ଧି; ଅସ୍ମିତା =ଶରୀର ବ୍ୟତୀତ ଆତ୍ମା ନାହିଁ; ରାଗ=ଅନୁରାଗ; ଦ୍ୱେଷ=ଈର୍ଷା; ଅଭିନିବେଶ=ମୃତ୍ୟୁଭୟ । (୨) ତ୍ରିତାପ=ଅର୍ଶଜ୍ୱରଅଜୀର୍ଣ୍ଣାଦି ବ୍ୟାଧିଜନିତ ଶାରୀରିକ ପୀଡ଼ାଦି ଦୁଃଖ ଆଧ୍ୟାତ୍ମିକ ତାପ । ବ୍ୟାଘ୍ର ସର୍ପ ବୃଶ୍ଚିକବିଷ ଶତ୍ରୁପୀଡ଼ାଦି ଦୁଃଖ ଆଧିଭୌତିକ ତାପ । ଅତିବୃଷ୍ଟି ଅଗ୍ନି ହିମତାପ ଗ୍ରହବୈଗୁଣ୍ୟାଦିଜନିତ ଦୁଃଖ ଆଧିଦୈବିକ ତାପ । (୩) ଷଡ଼୍ରିପୁ=କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ । (୪) ତ୍ରିବିଧ ସୁଖ=ପ୍ରିୟବସ୍ତୁ ଚନ୍ତା, ପାଣ୍ଡିତ୍ୟାଦି ଅଭିମାନ, ମନୋନୀତ ଶାସ୍ତ୍ରାଲୋଚନାଦି ସୁଖ ଆଧ୍ୟାତ୍ମିକ ସୁଖ । ସ୍ତ୍ରୀ ପୁତ୍ର ମିତ୍ର ସୁହୃଦାଦି ଜନିତ ସୁଖ ଆଧିଭୌତିକ ସୁଖ । ବସନ୍ତବାୟୁ, ଶୀତ ସମୟେ ଅଗ୍ନି ରବିତାପ ଚନ୍ଦ୍ରାଲୋକାଦିଜନିତ ସୁଖ ଆଧିଦୈବିକ ସୁଖ । (୫) ନିତ୍ୟକର୍ମ= "ଅକରଣେ ପ୍ରତ୍ୟବାୟ ସାଧନାନି ସନ୍ଧ୍ୟାବନ୍ଦନାଦୀନି" ସନ୍ଧ୍ୟା-ବନ୍ଦନାଦି । (୬) ନୈମିତ୍ତିକ କର୍ମ="ପୁତ୍ରଜନ୍ମାଦ୍ୟନୁବନ୍ଧିଜାତେଷ୍ଟ୍ୟାଦିନି"; ପୁତ୍ରାଦି ଜନ୍ମହେତୁ ଜାତକର୍ମାଦି ସଂସ୍କାରକର୍ମ । (୭) କାମ୍ୟକର୍ମ=ସ୍ୱର୍ଗଭୋଗାଭିଳାଷାଦି ବା

ଦେଶକାଳପାତ୍ର ବ୍ୟତିକ୍ରମହେତୁ ଯଦି କୌଣସି କାମ୍ୟ (୭) କର୍ମର ଫଳ ବ୍ୟତିକ୍ରମ ହେଲା ତେବେ ଦାଣ୍ଡରେ, ହାଟରେ, ସଭା ସମିତିରେ ଓ ସମ୍ବାଦପତ୍ର ଏବଂ ପୁସ୍ତକାଦିରେ ପ୍ରଚାର ହେଉଛି, ଏ ସବୁ ଠକେଇ କାର୍ଯ୍ୟ, ଏଥିରେ କିଛି ମାତ୍ର ଫଳ ନାହିଁ । କେବଳ ବ୍ରାହ୍ମଣ ବଂଶୀୟମାନେ ଆଳସ୍ୟରେ ବସି ସୁଖସ୍ୱଚ୍ଛନ୍ଦରେ ପୋଷି ହେବାପାଇଁ ଫେଞ୍ଚକାମୀ ବିଧିବିଧାନ ନାନାପ୍ରକାର ଶାସ୍ତ୍ରରେ ଉଲ୍ଲେଖ ଅଛି ମଧ୍ୟ ତାହା ସବୁ ସେହି ବ୍ରାହ୍ମଣ ବଂଶୀୟମାନେ ଲେଖିଛନ୍ତି । ଆଜିକାଲି ଏହି ହୋହୋରେ ରାଜ୍ୟତମାମ ଡିଣ୍ଡିମ ବାଜୁଛି । ଯେ ସବୁ ସବିଧି ସାଧିତ କାମ୍ୟକର୍ମର ପ୍ରତ୍ୟକ୍ଷ ଫଳ ହେଉଛି, ତେବେ ତାକୁ 'କାକତାଳୀୟ ନ୍ୟାୟ' ବୋଲି କହି ଉପହାସ ଓ ଫୁତ୍କାରରେ ଉଡ଼ାଇ ଦେଉଛନ୍ତି । ତେଣୁକରି ସନାତନ ଧର୍ମଶାସ୍ତ୍ରର ପଠନ, ପାଠକ ସଂଖ୍ୟା ଏବଂ କ୍ରିୟା କଳାପ ଆଚାର ବ୍ୟବହାର ଅତି ଉପାଦେୟ ହେଲେହେଁ ଅଳ୍ପ ପକ୍ଷରେ ( ପାଞ୍ଚମୁଖରେ ଛେଳି କୁକୁର, ପାଞ୍ଚମୁଣ୍ଡିଆରେ ପଥର ଠାକୁର ) ପରି ଶତ ଶତ ବା ସହସ୍ର ସହସ୍ର ଗୁଣରେ କମି ଯାଇଛି ଓ ଯାଉଛି ବା ଲୁପ୍ତ ପ୍ରାୟ କହିଲେ ଚଳେ ।

ସ୍ୱର୍ଣ୍ଣ, ରତ୍ନ ପ୍ରଭୃତି ଯାହାର ଯେତେ ବିଶେଷତ୍ୱ ବା ମାହାତ୍ମ୍ୟ ଏବଂ ଯେ ଯେତେ ଉତ୍କୃଷ୍ଟ ଓ ବହୁ ମୂଲ୍ୟବାନ୍, ସେ ଅତି ଯତ୍ନ ଓ ଗୁପ୍ତରେ ରହିବାପରି ଦେଶ-କାଳ-ପାତ୍ର ନେଇ ବୈଦିକ-ତାନ୍ତ୍ରିକ-ମନ୍ତ୍ର-ଯନ୍ତ୍ରାଦି ବିଧି ପ୍ରଭୃତି "ଷଟ୍‌କର୍ଣ୍ଣୋଭିଦ୍ୟତେ ମନ୍ତ୍ରଃ" ପବିତ୍ର ଏବଂ ଗୁପ୍ତଭାବରେ ସୁସିଦ୍ଧ ହେଉଥିବାରୁ ଅଧିକାଂଶ ଲୋକେ ଜାଣି ନ ପାରି ଅବିଶ୍ୱାସ କରୁଛନ୍ତି । ତଥାପି ଅପବିତ୍ରତାତ୍ମକ ନାଗାନ୍ତ୍ରବିଦ୍ୟା ବା ଗୁଣୀ-ଗାରଡ଼ୀ କୁହୁକ

---

ଈପ୍‌ସିତ ଫଳ ସିଦ୍ଧ୍ୟର୍ଥେ ଜ୍ୟୋତିଷ୍ଟୋମଯାଗାଦି ଯଜ୍ଞକର୍ମାଦି । ( ବେଦାନ୍ତସାର ) ( ଗୀତା ତୃତୀୟ ଅଧ୍ୟାୟ ଦ୍ରଷ୍ଟବ୍ୟ ) ।

କ୍ରିୟାର କେତେକ ମାହାତ୍ମ୍ୟ ଓ ଅଦ୍ଭୁତ ଘଟନାମାନ ସାଧାରଣ ଲୋକେ ତ ଅନୁଭବ କରୁଛନ୍ତି (ଉକ୍ତ ପୁସ୍ତକଲିଖିତ ଶିକ୍ଷାନ୍ତର୍ଗତ ୫ ପୃଷ୍ଠା ଦ୍ରଷ୍ଟବ୍ୟ)। ତେବେ ପବିତ୍ରତାତ୍ମକ ବୈଦିକତାନ୍ତ୍ରିକ ବିଧିବିଧାନ ସାଧିତ ସତ୍କର୍ମର ଫଳ ବା କ୍ରିୟାକୁ ଅବିଶ୍ୱାସ କରାଯାଇପାରେ କି ? ପ୍ରଭେଦ ଏହି ଯେ, ଅପବିତ୍ରତା ହେତୁ ସୁଖସାଧ୍ୟ ନାଗାନ୍ତ-ବିଦ୍ୟା ବା କ୍ରିୟା ପରକାଳ ସଦ୍‌ଗତିରୋଧକ କିନ୍ତୁ ଦୁଃଖସାଧ୍ୟ ବୈଦିକ ବିଧି-ସାଧିତ ବଧି ବା କ୍ରିୟା ଇହ-ପରକାଳରେ ଶୁଭଫଳ ଓ ସଦ୍‌ଗତି ବିଧାୟକ। (ଗୀତୋକ୍ତ ସତ୍ତ୍ୱଗୁଣାତ୍ମକ ସାଧନା ଦ୍ରଷ୍ଟବ୍ୟ)। ସନାତନ ଧର୍ମର ବିଧିବିଧାନୋକ୍ତ କ୍ରିୟାକଳାପ ସବୁ ଗୁପ୍ତ, ସଂଯତ, ପବିତ୍ର ଏବଂ ନୈଷ୍ଠିକ ଭାବରେ ସାଧିତ ହେଲେ ସୁସିଦ୍ଧ ହୋଇଥାଏ ମଧ୍ୟ ବର୍ତ୍ତମାନ ଯାହା ସେହିପରି ସାଧିତ ହେଉଛି ତାହା ନିଶ୍ଚୟ ସିଦ୍ଧ ହେଉଛି; କିନ୍ତୁ ତାହା ସାଧାରଣରେ ପ୍ରକାଶ ପାଉ ନାହିଁ।

କ୍ଷଣଜନ୍ମା କ୍ଷଣେ ମାତ୍ର ସମସ୍ତର ଓ ପ୍ରତ୍ୟେକ କାର୍ଯ୍ୟର ସର୍ବତ୍ର ବିଖ୍ୟାତ ସତ୍‌କ୍ରିୟାନିଷ୍ଠ ଅତିବୃଦ୍ଧ ମଦନମୋହନ ମାଳବ୍ୟଙ୍କର ବୃଦ୍ଧାବସ୍ଥା ଦେଶ-କାଳ-ପାତ୍ରାନୁଯାୟୀ ସାଧିତ ହେବାରୁ ଯୌବନରେ ପରିଣତ ହୋଇଛି। ତାଙ୍କୁ ବିଦେଶୀ-ସର୍କାର, କଂଗ୍ରେସଦଳ ଓ ଅନ୍ୟାନ୍ୟ ଦେଶୀୟମାନେ ଖାତିର ଓ ମାନ୍ୟ କରୁଥିବାରୁ ସବୁ ସମ୍ବାଦପତ୍ରମାନଙ୍କରେ ତାଙ୍କର କ୍ଷଣିକ-କାର୍ଯ୍ୟ ଏବଂ ଭାରତୀୟ ବିଭ୍ରାଟ ଅନ୍ଦୋଳନାଦି ସମସ୍ତ କାର୍ଯ୍ୟ ସଙ୍ଗେ ସଙ୍ଗେ ଅତି ଉତ୍ସାହସହ ଛିନ୍ନଭିନ୍ନ ହୋଇ ପ୍ରକାଶ ପାଉଥିଲା; କିନ୍ତୁ ତାଙ୍କ ପକ୍ଷରେ ଏତେବଡ଼ ଆଶ୍ଚର୍ଯ୍ୟ କାର୍ଯ୍ୟ ବା ଶାରୀରିକ ପରିବର୍ତ୍ତନ ବିଷୟ ଦାମ୍ଭିକପ୍ରକୃତିର କେତେକ ସମ୍ବାଦ-ପତ୍ରରେ ପ୍ରକାଶ ପାଇଲା ନାହିଁ। ଏହାର କାରଣ କଣ ? କାଳେ କେହି ଲୋକ ସନାତନ ଧର୍ମର କ୍ରିୟାକଳାପପ୍ରତି ସ୍ନେହୀ ବା ଆକୃଷ୍ଟ ହୋଇପଡ଼ନ୍ତେ।

ସନାତନ ଧର୍ମବିରୁଦ୍ଧ ବିଧବା ବିବାହ ଓ ବାଲ୍ୟବିବାହ ମକଦ୍ଦମା ଦଣ୍ଡ ପ୍ରଭୃତି ଘଟିଥିଲେ ଗୋତ୍ର-ପ୍ରବର ସହ ବନେଇ ବାନେଇ ଛିନ୍ନ ଭିନ୍ନ ହୋଇ ପ୍ରକାଶ ପାଇଥାନ୍ତା । "କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ" ।

ଶୁଣାଅଛୁ ଗୋଟିଏ ୨୦।୨୫ ବର୍ଷର ଯୁବକ ଗୃହ-ବିଭ୍ରାଟ ଅଶାନ୍ତିହେତୁ ସାଂସାରିକ-ମମତା ଛାଡ଼ିଦେଇ ସ୍ୱେଚ୍ଛା ଭ୍ରମଣରେ ହିମାଳୟସ୍ଥ କୌଣସି ମହାପୁରୁଷଙ୍କ କୃପାଦୃଷ୍ଟି ଯତ୍ନରେ ୭୦।୮୦ ବର୍ଷ ପରେ ପୂର୍ବ-ଯୌବନାବସ୍ଥାରେ ଥିଲେ କିନ୍ତୁ ଗୃହମମତା ସ୍ମରଣ କରି ଫେରିଆସି ପୁଣି ସେଠାକୁ ଯାଇ ସେ ସ୍ଥାନ ବା ସେ ମହାପୁରୁଷଙ୍କ ଭେଟ ନ ପାଇ ବିଫଳମନୋରଥ ହୋଇଥିଲେ । ଏହିପରି ବହୁସଂଖ୍ୟକ ବିଷୟ ଶୁଣାଗଲେହେଁ ଯେ ନ ଫେରେ ତା କଥା ଅପ୍ରକାଶ । ମହତ୍ ମହତ୍ ବ୍ୟକ୍ତି ରାଜନୀତି-ନିପୁଣ ଓ ତତ୍ତ୍ୱାନ୍ୱେଷୀ ସମୁଚିତ ସାଧକ ମହାତ୍ମାଙ୍କପାଇଁ ମାଳବ୍ୟଙ୍କ ପରି 'କଳ୍ପ ଚିକିତ୍ସା' କରିବାକୁ ଯତ୍ନବାନ୍ ହୋଇ ସମୁଚିତ କିମ୍ବା ବ୍ୟତିକ୍ରମରୁ 'ହୋଇପାରିବ ନାହିଁ' ବୋଲି ଉତ୍ତର ପାଇ ବ୍ୟର୍ଥମନୋରଥ ହୋଇଛନ୍ତି । ଏ ସବୁକୁ ଅନୁମାନ କଲେ ସୃଷ୍ଟିକର୍ତ୍ତା ଜଗତର ଧ୍ୱଂସ ସକାଶେ ମାନବମାନଙ୍କ କ୍ଷୀଣରୁ କ୍ଷୀଣତର, କ୍ଷୀଣତମ ଓ ମ୍ଳେଚ୍ଛ କରିବାପାଇଁ ଅତି ଉତ୍କଟ ତମାଚ୍ଛନ୍ନ ମଳିମ୍ଲୁଚ ମାୟାକୁ ଅଧିକାଂଶଙ୍କ ହୃଦୟରେ ପ୍ରବେଶ କରାଇଦେଇ ଏପରି ଛନ୍ଦ ଦେଇଛନ୍ତି ଯେ, ଜ୍ଞାନାଲୋକ ବରାବର ଲୁପ୍ତ ହୋଇ-ଯାଉଛି । ଯତଃ ସଭ୍ୟସମାଜ-ଭୋଜରେ ଅପେକ୍ଷାକୃତ କ୍ଲାମ୍ବର୍ତ୍ତିଦ୍ୱାରା, ଅନ୍ୟନ୍ୟ ହରିଜନ ବା ମେହେନ୍ତରକୁ ସଫାଲୁଗା ପିନ୍ଧାଇ ପରିବେଷଣ କରାଇବାର ମଧ୍ୟ ଶୁଣାଯାଏ । ଧନ୍ୟ ଏ ଦାମ୍ଭିକ, ବଞ୍ଚକ, ଧୃଷ୍ଟ, ବିଷଦାତାଙ୍କୁ ! ଏହା ମହାତ୍ମାଙ୍କ ମତ ବୋଲି ସମ୍ଭବ ହେଉ ନାହିଁ । ଯତଃ ତାଙ୍କର ପ୍ରଥମ ଆଜ୍ଞା

ସାଧାନସାରେ ବିଦେଶୀ-ଜିନିଷ ପରିବର୍ତ୍ତରେ ସ୍ୱଦେଶୀ-ବସ୍ତୁ ଓ ଅରଟକଟା ସୂତା ଲୁଗା ବ୍ୟବହାର । ଦ୍ୱିତୀୟ ଅଞ୍ଚଳ ଗ୍ରାମ ପଞ୍ଚାୟତଦ୍ୱାରା ବିବାଦୀୟ ଦ୍ୱନ୍ଦ୍ୱ ନିଷ୍ପତ୍ତି । ତୃତୀୟ ଉଚ୍ଚ-ନୀଚ ସ୍ପର୍ଶଦୋଷ ତ୍ୟାଗ । ରୁଟୀ-ବେଟୀ ଯାହା ଚଳିଆସୁଅଛି ତାହା । ଏହା ପ୍ରଥମ ପ୍ରଚାରବେଳେ କେହି ରାଜନୈତିକ କହିଥିଲେ, ତେବେ ଭାରତ ଏକାବର୍ଷକେ ସ୍ୱାଧୀନ ହେବ; ମଧ୍ୟ ଅନ୍ୟ ଏକ କହିଥିଲେ ଏକାଦିନକେ ହେବ । ମହାତ୍ମାଙ୍କର ଏହି ସୁଖସାଧ୍ୟ ଉପଦେଶକୁ ମାନି କଂଗ୍ରେସୀୟମାନେ ପ୍ରତ୍ୟେକ ଗ୍ରାମରେ ବୁଲି ( ନିବେଦନ ପୁସ୍ତକ ନିର୍ଦ୍ଦେଶାନୁସାରେ ) ଗ୍ରାମସମିତି ପ୍ରଭୃତି ଗଠନଦ୍ୱାରା ଦ୍ୱନ୍ଦ୍ୱ ନିଷ୍ପତ୍ତି, ସ୍ୱଦେଶୀଦ୍ରବ୍ୟ ଆମଦାନୀ ଓ ବ୍ୟବହାର ଏବଂ ସାଧାନୁସାରେ ବିଦେଶୀ ଜିନିଷ ବର୍ଜ୍ଜନ, ବନ୍ୟା ପ୍ରତିକାର, ସବିଧି-ଶସ୍ୟ ଆମଦାନୀ କରାଇଥିଲେ ଭାରତ କେଉଁକାଳରୁ ସ୍ୱାଧୀନ ହୋଇସାରନ୍ତାଣି । କିନ୍ତୁ ଏହା ସବୁ ନୋହି ଯାଚ୍ଛାତା ହାତରେ ଖାଇବା, ପରଦାପ୍ରଥା ଉଠାଇବା, ଅସବର୍ଣ୍ଣ ବିବାହାଦି ଅତି ଉତ୍କଟ ଲୋକବିରୁଦ୍ଧ, ଶାସ୍ତ୍ରବିରୁଦ୍ଧ ଯାହାର କି ପରିଣାମେ; 'ଅନିଷ୍ଟକର' କାର୍ଯ୍ୟ ହେଉଥିବାରୁ ସବୁ ବିଭ୍ରାଟ ଲଗିଛି । 'କପଟକୁ ଚପଟ,ସାଫିକି ମାଫି' ।

କେତେକ ଅଧୁନିକ ଫୁଟୁକିରିଆ ନବ୍ୟସଭ୍ୟ ଆର୍ଯ୍ୟଭୂମି ଭାରତବର୍ଷରେ ଲକ୍ଷ ଲକ୍ଷ କୋଟି କୋଟି ବର୍ଷ ବା ଅନନ୍ତ-କାଳରୁ ଯେ ସବୁ ଶ୍ରୁତି, ସ୍ମୃତି, ପୁରାଣ, ଦର୍ଶନ, କାବ୍ୟ, ନାଟକାଦି ଶାସ୍ତ୍ର ମତକୁ ସମୂଳେ ପୋଡ଼ି ପୋଡି ଧ୍ୱଂସ କରି ବିଦେଶୀୟ ବିଧର୍ମୀ ମତାନୁସାରେ ଚଳିବାକୁ ଏବଂ ବିଦେଶୀୟଙ୍କୁ ତୁଷ୍ଟ କରି ଗୋବିନ୍ଦ ରଥଙ୍କ 'ଫିଡ଼ଟର ସାହେବ' ବନିବାକୁ ଏବଂ ଭାରତୀୟଙ୍କୁ ବନାଇବାକୁ ଲଳାୟିତ ଓ ଭାରି ଉତ୍ସାହରେ ପ୍ରାଣପାତୃଷ୍ଟିତ ହୋଇ ଲଗିଛନ୍ତି । ସେମାନେ ଯେ କେଡ଼େ ଭୁଲ୍ କରୁଛନ୍ତି ତାହା ଭାବିଲେ କ୍ଷୋଭ ଆସେ । କିନ୍ତୁ

ସମସ୍ତକମେ ମନବଚନକର୍ତ୍ତବ୍ୟରେ ସେହି ବିଦେଶୀୟଙ୍କର ଯଦି ଅବମାନନା ବା ବିଦ୍ରୋହାଚରଣ କରନ୍ତି ତେବେ ସେ ଗୁରୁଦ୍ରୋହୀ ପାପଲିପ୍ତ ହେବେ ତାହା ଭାବୁ ନାହାନ୍ତି । କାଳର ଗତିକି ଧନ୍ୟ ! ବର୍ତ୍ତମାନ ଅଧିକାଂଶ ଭାରତ—ନେତାଙ୍କୁ ଅତି ଉତ୍କଟ ଅଜ୍ଞାନାନ୍ଧକାର ଘୋଟିଛି ଯେ, ଭାରତର ନାମ ଓ ମାହାତ୍ମ୍ୟ ବିଷୟ ଏପରି ଗର୍ବାଉଛି କି ଯେପରି ତାଙ୍କ ନାକ ଫାଟିଯାଉଛି; ତେଣୁ ସେ କିପରି ସମୂଳେ ଲୋପ ପାଇବ ତାହାର ଯଥୂରୋନାସ୍ତି ଚେଷ୍ଟାରେ ମଗ୍ନ ଅଛନ୍ତି । ଅଥଚ ମୁହଁରେ ପ୍ରଚାର କରୁଛନ୍ତି—'କିପରି ଭାରତୀୟଙ୍କ ଶ୍ରେୟ ହେବ ଏବଂ ଭାରତର ନାମ ଜଗତରେ ବିଖ୍ୟାତ ହେବ' । ଯଥା—ଶିକ୍ଷା-ବିଭାଗର ପାଠ୍ୟପୁସ୍ତକରେ ଭାରତର ବିଗତ ହିନ୍ଦୁଶାସକ-ପାଳକ, ମହତ୍ ମହତ୍ ରାଜା, ରାଜଚକ୍ରବର୍ତ୍ତୀମାନଙ୍କ ନାମ, ସଂସ୍କୃତ-ଭାଷା ଓ ମହତ୍ ବିଷୟ ଏବଂ ସାଧକ ଯୋଗୀ, ଋଷି; ସିଦ୍ଧ-ପୁରୁଷମାନଙ୍କ ଅଦ୍ଭୁତ-ଶକ୍ତି, ମାହାତ୍ମ୍ୟ, ସାଧନା ଓ ତାଙ୍କ ନାମ, ଶ୍ରୁତି, ସ୍ମୃତି, ପୁରାଣ, ଦର୍ଶନ, କାବ୍ୟ, ନାଟକ, ଅଳଙ୍କାରାଦି ଶାସ୍ତ୍ର-ନିର୍ଦ୍ଦିଷ୍ଟ ତତ୍ତ୍ୱବିଷୟ ଓ ନାମ ବିଶେଷତଃ ଭଗବାନଙ୍କ ଲୀଳାବତାର ଏବଂ ସର୍ବଶକ୍ତିମାନାତ୍ମକ କାର୍ଯ୍ୟ ଅତି ସାକ୍ଷାତ୍ ଜଡ଼-ବିଜ୍ଞାନାତ୍ମକ ଅମାନୁଷିକ କୀର୍ତ୍ତି ଓ ହିନ୍ଦୁଧର୍ମ ସମ୍ବନ୍ଧୀୟ ଆଚାର, ବ୍ୟବହାରାଦି ସ୍ଥାନ ନ ପାଇ ତଦ୍‌ବିପରୀତ ଅର୍ଥାତ୍ ଭାରତର ଶାନ୍ତିମୂଳକ ବିଷୟ ପରିବର୍ତ୍ତରେ ଯେପରି ବିପ୍ଳବ ବଢ଼ିବ ସେହି ସବୁ ବିଷୟ ଯଥା—ଭାରତବିରୋଧୀ ବିଦେଶୀ, ବିଧର୍ମୀମାନଙ୍କର ନାମ ଓ ବିଷୟକୁ ଜନେଇ ନାନେଇ, ବନେଇ ବାନେଇ ସନ୍ନିବେଶିତ ହୋଇ ପାଠ୍ୟପୁସ୍ତକ ମନୋନୀତର ଉଦ୍‌ଯୋଗ ହେଉଛି । ଯେପରି କି ପରପୁରୁଷମାନଙ୍କୁ ଭାରତ ବିଷୟ ଗର୍ବେଇ ଉଠିବ । ଧିକ୍ ରେ ଭାରତୀୟ କୁଳାଙ୍ଗାର, ଧିକ୍ ଧିକ୍ ! ପୁଣି ମହତ୍ ମହତ୍ ହର୍ମ୍ୟ ବିଦ୍ୟାଳୟ, ଛାତ୍ରାବାସ,

ଆଡ଼ମ୍ବରାଚ୍ଛାଦନାଦ୍ ବୈଭୋଗମଯୁରେ; ବ୍ରହ୍ମଚର୍ଯ୍ୟାଶ୍ରମାବସ୍ଥାତ୍ମକ ଛାତ୍ର ସମାଜକୁ ଯେପରି ଚଳାଉଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଅବସ୍ଥା ଯେ କଣ ହେବ ଭାବୁ ନାହାନ୍ତି । ସ୍ତ୍ରୀ-ଶିକ୍ଷା ତ ଗୃହିଣୀରୁ ଖାରଜ । ସୁତରାଂ ମନରେ ଦୁଃଖ ଆସେ । ଅତଏବ ଅକର୍ମୀ ସଂଖ୍ୟାକୁ ଅନୁସନ୍ଧାନ କର୍ତ୍ତବ୍ୟ ।

ଭାରତକୁ ସ୍ୱର୍ଗ ସମ କରିଦେବାପାଇଁ ଯେଉଁ ପ୍ରତିଭାଶାଳୀ କଂଗ୍ରେସ ନେତାମାନେ ପ୍ରାଣପ୍ରାୟଶ୍ଚିତ୍ତ ହୋଇ ଲାଗିଛନ୍ତି, ସେମାନେ ତା ପରିବର୍ତ୍ତେ ବିଦେଶୀ, ବିପ୍ଳବୀ, ବିଧର୍ମିଙ୍କର ଉତ୍କଣ୍ଠ କାଣ୍ଡର ଅଙ୍କୁରାରୋପଣ କରୁଛନ୍ତି , ଏହା ନିଶ୍ଚୟ । ଏମାନେ କଣ କାଳକାଳକୁ ତମ୍ବାମୂର୍ତ୍ତି ବାଜି ରହିଥିବେ କି ? ଯେ ଉପାଦେୟ ବୃକ୍ଷଟିଏ ଲଗାଏ, ସେ ତାକୁ ନାନାପ୍ରକାର ଯତ୍ନରେ ରକ୍ଷାପାଳନ କରି ପତ୍ରଟିଏ ଛିଣ୍ଡାଏ ନାହିଁ; କିନ୍ତୁ ଯେ ପରବର୍ତ୍ତୀ ସେ ଗଛର ଫଳ ଭୋଗ କରେ, ସେ ସମୟକ୍ରମେ ସେ ବୃକ୍ଷକୁ ସମୂଳେ ହାଣିବାର ମଧ୍ୟ ଦେଖାଯାଏ । ଯଥା—ଓଡ଼ିଶାରେ ସର୍ବ-ପ୍ରଧାନ ଏକମାତ୍ର କାରଖାନା 'ପ୍ରିଣ୍ଟିଂକମ୍ପାନୀ' ତଳକୁ ଯେତେ ଉପରକୁ ତେତେ ବୋଲି କଳ୍ପନା ହେଉଥିଲା । ଉଦ୍ଭାବକମାନେ ଯତ୍ନରେନାସ୍ତି ଶୃଙ୍ଖଳାରେ ଚଳାଉଥିଲେ, ପରେ ନାମଯାଦା ଶିକ୍ଷିତଙ୍କଦ୍ୱାରା କଣ ଘଟିଛି ? ଅନୁସ୍ମରଣୀୟ । ବିଶେଷତଃ ଯଦିଚ ବର୍ତ୍ତମାନର ପ୍ରଚ୍ଚରିତ ସତ୍ୟ, ଅହିଂସା, ଏକତାଭାବ, ସଂଘବନ୍ଧନ ବା ସଂଗଠନ କିଛି କାଳ ଜାଗ୍ରତ ରହିପାରେ, ( ପ୍ରତ୍ୟକ୍ଷ ଅସମ୍ଭବ ) ତେବେ ଆଜିକାଲିର ବିଦେଶୀ, ବିଧର୍ମୀ, ବିପ୍ଳବ ବା ଦୌରାତ୍ମ୍ୟ ସମୟକ୍ରମେ ପୂର୍ଣ୍ଣମାତ୍ରାରେ ଘଟିବାର ଘଟିବ । କେଉଁ ଅଭାବରୁ ସେ ଦେଶରେ ଜନକ୍ଷୟ ବିଭ୍ରାଟ ଘଟୁଛି କେହି ଭାବୁଛନ୍ତି କି ? ପାଗଳ ଓ ବାଳକମାନେ ସତ୍ୟ କହିଥାନ୍ତି; ମନୋମୀତାନୁଯାୟୀ ବ୍ୟଭିଚାରାତ୍ମକ କାର୍ଯ୍ୟ ମଧ୍ୟ କରିଥାନ୍ତି । ସେ କଥାକୁ କେତେକ ଖୁସିରେ ଶୁଣିଥାନ୍ତି କିନ୍ତୁ

ତଦ୍ଦ୍ୱାରା କୌଣସି ସାଧାରଣ ଭୌତିକ ଦେହ ଓ ଦେହୀର ଶ୍ରେୟ ସାଧନ ହୋଇଥାଏ କି ? ଅତଃ ସତ୍ୟ କହନ୍ତି ସାଧୁସିଦ୍ଧ-ପୁରୁଷ, ତାଙ୍କ କଥା ଶୁଣି ସମସ୍ତେ ଆନନ୍ଦ ଓ ଶ୍ରେୟ ଲଭନ୍ତି । ଅତଃ ଯେଉଁ ସାଂସାରିକ ଲୋକେ ସତ୍ୟ କହନ୍ତି, ତାହା ଶ୍ରେୟ ଓ ଆନନ୍ଦଜନକ ହେଲେହେଁ ତଦ୍ଦ୍ୱାରା କେହି କେହି ଓ ସେ ନିଜେ ସବିଶେଷ କାର୍ଯ୍ୟ ନେଇ ବିପଦରେ ପଡ଼ିବା ଅସମ୍ଭବ ନୁହେ । ବିଶେଷତଃ 'ସତ୍ୟଠାରୁ ଧର୍ମ ନାହିଁ, ମିଥ୍ୟାଠାରୁ ପାପ ନାହିଁ' । "ନ ସତ୍ୟାତ୍ ପରମୋ ଧର୍ମଃ, ନ ମିଥ୍ୟାତ୍ ପାତକଂ ପରଂ" ନିରୂପଣ ଥିଲେହେଁ ଦେଶ-କାଳ-ପାତ୍ର ନେଇ ସତ୍ୟକୁ ଲଙ୍ଘନ କରାଯାଇପାରେ ବୋଲି ଶାସ୍ତ୍ରରେ ଅନୁମତି ଅଛି । କିନ୍ତୁ ପରଂପରାଗତ ଧର୍ମକ୍ରିୟାକୁ ଲଙ୍ଘନ କରାଯାଇ ପାରେ ନାହିଁ ! ସନାତନ 'ଧର୍ମଶାସ୍ତ୍ରୋକ୍ତ କ୍ରିୟାକଳାପର ଉପଦେଶ ଏବଂ ଆଚରଣଦ୍ୱାରା ଇହଜନ୍ମକୃତ ପାପ ପୁଣ୍ୟର ଫଳ ( ବିଧର୍ମୀ ମତରେ ଥରେ ଜନ୍ମ ଥରେ ମୃତ୍ୟୁ ଭ୍ରାନ୍ତ ଧାରଣା ) ଜନ୍ମଜନ୍ମାନ୍ତରେ " ନ ହି କର୍ମାଣି କ୍ଷୀୟନ୍ତେ କଳ୍ପ-କୋଟି ଶତୈରପି" ନିଶ୍ଚୟ ଭୋଗ କରିବାକୁ ହେବ,—ଏ ଭାବ ହୃଦୟରେ ଜାଗ୍ରତ ହେଲେ ସେ କଦାଚ ବିପ୍ଳବରେ ପ୍ରବୃତ୍ତ ହେବ ନାହିଁ । "ଅତ୍ୟୁତ୍କଟୈଃ ପାପପୁଣ୍ୟୈରିହୈବ ଫଳମଶ୍ନୁତେ । ତ୍ରିଭି-ର୍ମାସୈଃ ତ୍ରିଭିର୍ବର୍ଷୈଃ ତ୍ରିଭିଃପକ୍ଷୈସ୍ତ୍ରିଭିର୍ଦିନୈଃ ।" ପାପ ବା ପୁଣ୍ୟ ଅତ୍ୟନ୍ତ ହେଲେ ଇହ ଜନ୍ମରେ ଫଳପାରେ । ବିଦେଶୀୟ ବିପ୍ଳବଙ୍କ ଇତିହାସରୁ ଅକାଟ୍ୟ ପ୍ରମାଣ ମିଳେ ଯେ; ସେ ସବୁ ଦେଶରେ ପୂର୍ବେ ସତ୍ୟ, ଅହିଂସା, ଏକତା, ସଂଗଠନ, ପରସ୍ପର ସହାନୁଭୂତି ପୂର୍ଣ୍ଣ ମାତ୍ରାରେ ଥିଲା; କିନ୍ତୁ 'ସନାତନଧର୍ମ ଶାସ୍ତ୍ରୋକ୍ତ ସତ୍‌କ୍ରିୟା କଳାପ ବିଧିବିଧାନ' କଦାଚ ନ ଥିଲା । ତେଣୁ ସେମାନଙ୍କର ବଂଶଧରମାନେ ବର୍ତ୍ତମାନ ବିପ୍ଳବ ଓ ବିଭିନ୍ନ-କ୍ରିୟାରେ ପରିଣତ ହୋଇଛନ୍ତି । ତାଙ୍କର ଧର୍ମୋପଦେଶ ଅଛି, 'କେହି ତୁମ୍ଭ ଗାଲକୁ

ଗୁପୋଡ଼େ ମାଇଲେ ଆର ଗାଲ୍ ଦେଖାଇଦେବ’ । ବର୍ତ୍ତମାନ କଣ ହେଉଛି ? ଆଜି ଯେଉଁମାନଙ୍କ ପ୍ରତି ଆଜ୍ଞା ବା ଆଦେଶ ଅଛି, ‘ଅମାନିଆ ହେଲେ ଖଣ୍ଡାରେ ପ୍ରତିକାର କରିବ’ ଯାହା ଭାବିଲେ ରକ୍ତ ଗରମ ହୋଇଯାଏ । କିନ୍ତୁ କେତେକ ତାଙ୍କୁ କୋଡ଼ରେ ପରାଇବାକୁ ଅତି ଉତ୍ସୁକ ସୁତରାଂ ପୂର୍ବର ବ୍ୟକ୍ତି-ବିଶେଷଙ୍କ ଦୌରାତ୍ମ୍ୟ ସ୍ମରଣ ହେଉ ନାହିଁ । ଅଜିକାଲି ସନାତନଧର୍ମର ଅବନତି ଘଟିଥିଲେହେଁ ଖେଚଡ଼ ବ୍ୟତୀତ ହିନ୍ଦୁରକ୍ତଗତ-ସନ୍ତତିଙ୍କଦ୍ୱାରା ତାହା ହୋଇପାରିବ କି ? ଏହାର ପାର୍ଥକ୍ୟ କେଉଁଠାରେ ? ହିନ୍ଦୁବଂଶଧର ସ୍ମରଣ କରୁଛନ୍ତି କି ? ବରଂ ଚ ବିପ୍ଲବର ବୀଜାରୋପଣ ହେଉଛି । ଅତଃ ସାବଧାନ ।

ଅଜିକାଲି କେତେକ କର୍ମଯୋଗକୁ କପଟାର୍ଥ କରି କହିଥାନ୍ତି, ଯଥା—କର୍ତ୍ତା ଯାହା କରେ ତାହା ତ କର୍ମ; ତତଃ ନିଜର ଓ ଅନ୍ୟମାନଙ୍କର ନଶ୍ୱରଦେହ ଆଉ ତୁଚ୍ଛ ଇନ୍ଦ୍ରିୟ-ଲାଳସା ଚରିତାର୍ଥପାଇଁ ବାହ୍ୟ-ଭୌତିକ-କର୍ମରେ ମଜ୍ଜିଛନ୍ତି, ମଧ୍ୟ ଅନ୍ୟମାନଙ୍କୁ ସେହି ଶିକ୍ଷା ଦେଇ କୃତାର୍ଥ ମଣୁଛନ୍ତି । କିନ୍ତୁ ଦେହୀ ସକାଶେ କିଛି ନାହିଁ । ବିଶିଷ୍ଟ-ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି, ଚତୁର୍ଦ୍ଦଶ ଭୁବନାନ୍ୟତମ ମର୍ତ୍ତ୍ୟଲୋକାନ୍ତର୍ଗତ ଭାରତବର୍ଷସ୍ଥ ଚତୁର୍ବିଧ-ଶରୀରଧାରୀମାନଙ୍କ ମଧ୍ୟରେ କେବଳ ମାନବମାନଙ୍କପାଇଁ କର୍ମଯୋଗ ନିର୍ଦ୍ଦିଷ୍ଟ ଅଛି । ମର୍ତ୍ତ୍ୟ-ଲୋକରେ ମନୁଷ୍ୟ ଭଲ ବା ମନ୍ଦ ଯାହା କରିଥାଏ, ସ୍ୱର୍ଗାଦି ବା ନର୍କଲୋକାଦିରେ ତତ୍‌ଫଳ ସୁଖ ବା ଦୁଃଖାଦି ଭୋଗ କରେ । ଅନ୍ୟାନ୍ୟ ଲୋକରେ କର୍ମଯୋଗ ନାହିଁ । ସତ୍କର୍ମାନୁ-ଯାୟୀ ସ୍ୱର୍ଗ-ସୁଖ ଏବଂ ମୋକ୍ଷଲାଭ ମଧ୍ୟ ହୋଇଥାଏ । ତତଃ ସୁଖଭୋଗୀ ସ୍ୱର୍ଗସ୍ଥାୟୀମାନେ ଭାରତବର୍ଷସ୍ଥ ମନୁଷ୍ୟ ଜନ୍ମକୁ ପ୍ରଶଂସା କରିଥାନ୍ତି । ତିର୍ଯ୍ୟକ୍‌ଯୋନିଜାତ ପ୍ରାଣୀଙ୍କର ଭବିଷ୍ୟତ-କାଳ-ଚିନ୍ତା କିଛିମାତ୍ର ନ ଥାଏ; କିନ୍ତୁ ମନୁଷ୍ୟମାନେ

ଭବିଷ୍ୟତରେ ଉପଭୋଗ କରିବାପାଇଁ କଷ୍ଟ ସ୍ୱୀକାର କରି ଆଗରୁ ଆୟୋଜନ କରି ନ ଥାନ୍ତି କି ? ତତଃ ଶରୀରାନ୍ତେ ଯାହା ଭୋଗ କରିବାକୁ ହେବ ତାହାର ଚିନ୍ତା କରିବା ସର୍ବତୋଭାବେ ପ୍ରଧାନ କର୍ତ୍ତବ୍ୟ ନୁହେ କି ? କିନ୍ତୁ ପ୍ରତ୍ୟକ୍ଷ କଣ ଦେଖା ଯାଉଛି ? ତିର୍ଯ୍ୟକ୍‌ଯୋନିଜ ପ୍ରଭୃତିଙ୍କ ପରି ବିଧର୍ମିଙ୍କର କର୍ମଯୋଗ ସମ୍ବନ୍ଧରେ ଗନ୍ଧସମ୍ବନ୍ଧ ଅଛି କି ? ଯତଃ ବିଶେଷ କ୍ଷୋଭର ବିଷୟ, ଭାରତୀୟ ହିନ୍ଦୁ ବଂଶଧର-ମାନଙ୍କ ମଧ୍ୟରୁ କେତେକ କର୍ମଯୋଗର ବିରୁଦ୍ଧାଚରଣଦ୍ୱାରା (ଗୀତା ୩ୟ ଅଧ୍ୟାୟ ଦ୍ରଷ୍ଟବ୍ୟ) ଅମୃତକୁ ଢାଳିଦେଇ ବିଷ ବା ଅମେଧ୍ୟ ପାନ କରି ସେହି ଅନୁକରଣରେ ତନ୍ମୟ ହୋଇ ମଜ୍ଜିଛନ୍ତି । କିମାଶ୍ଚର୍ଯ୍ୟମତଃ ପରଂ । ସେ ଯାହା ହେଉ କୌଣସି ସନାତନୀବଂଶୀୟ ନିରାକାରବାଦୀ ତତ୍ତ୍ୱଦର୍ଶୀ ବା ବ୍ରାହ୍ମ ଗୋଷ୍ଠୀର ପ୍ରଧାନ ନିୟନ୍ତା ବ୍ରାହ୍ମ ପରଂପରାଗତ ଓ ସ୍ୱଧର୍ମବିଧି ତ୍ୟାଗ କରି ସନାତନଧର୍ମର ବ୍ୟତିକ୍ରମାତ୍ମକ ଶେଷସ୍ତରର ଅବଲମ୍ବନଦ୍ୱାରା ବରାବର ଚଳି ଆସିଥିଲେହେଁ ଶେଷରେ କୌଣସି କୂଳ କିନାରା ନ ପାଇ ମୁମୂର୍ଷୁ ବା ମୃତ୍ୟୁ ପର୍ବରୁ ଅଧିକ ଶିକ୍ଷିତ ସ୍ୱ ପୁତ୍ରକୁ କହିଗଲେ, 'ଅନ୍ୟାନ୍ୟ କିଛି କର ବା ନ କର ଗୟାରେ ପିଣ୍ଡ ଦେବ ।' ଏହିପରି ବିଭିନ୍ନ ମତାବଲମ୍ବୀ ବହୁସଂଖ୍ୟକ ତତ୍ତ୍ୱଦର୍ଶୀ ସତ୍ପଥ ନ ପାଇ ଶେଷରେ ସନାତନଧର୍ମ ମତକୁ ଆଶ୍ରୟ କରିଥିବାର ଶୁଣା ଯାଇଥାଏ । 'ଅରେ ତମଣା, ବୁଲି ବୁଲି ଆସି ସେହି ଅଗଣା ।'

ଜାଣିବା, ଶୁଣିବା ଓ ଅନୁମାନରେ ପ୍ରମାଣ ମିଳେ ଯେ ଚାରି ବେଦ, ଊନବିଂଶତି ସ୍ମୃତି, ଅଷ୍ଟାଦଶ ପୁରାଣ, ରାମାୟଣ, ମହାଭାରତ, ଶ୍ରୀମଦ୍ଭାଗବତ, କାବ୍ୟନାଟକାଦି ସମସ୍ତ ମହତ ମହତ୍ ଶାସ୍ତ୍ର ଓ ତ୍ରିକାଳଦର୍ଶୀ ଦେବତା, ଋଷି, ସିଦ୍ଧମହାତ୍ମା-ମାନେ ବଜ୍ରନିନାଦରେ ପ୍ରଚାର କରିଛନ୍ତି ଯେ, ମାନବମାନେ

ଦେବତା, ଋଷି, ପିତୃଗଣଙ୍କଠାରେ ଋଣୀ । ତତଃ ଋଣମୁକ୍ତ ଉପାୟ, ଯଥା—ଅତିଥି ସତ୍କାର, ଯଜ୍ଞ, ବେଦାଧ୍ୟୟନ ଏବଂ ସବିଧି ସନ୍ତାନୋତ୍ପାଦନ ବୋଲି ତହିଁରେ ନିର୍ଦ୍ଦିଷ୍ଟ ହୋଇଛି । ଗୃହସ୍ଥାଶ୍ରମିର 'ନିତ୍ୟବୈଶ୍ୱଦେବ' ତାହାର ସୂଚନା ମାତ୍ର । କିନ୍ତୁ ଆଜକାଲିର କେତେକ ନବ୍ୟସଭ୍ୟ ନିଜ ନିଜର ପିତୃ ପିତାମହାଦିଙ୍କ ଆଚରିତ ପରଂପରାଗତ ପବିତ୍ର କ୍ରିୟା ଓ ବିଧିବିଧାନକୁ ସମୂଳେ ତ୍ୟାଗ କରି ଅର୍ଥାତ୍ ତାଙ୍କୁ ପୁଡ଼ାତଳେ ଗଳାଇଦେଇ ବିରୁଦ୍ଧ ବା ବିପରୀତାଚରଣ କରୁଛନ୍ତି । ଅତଃ ସେମାନେ ପିତୃଲୋକାଦିରୁ ଅଲକ୍ଷିତ ଭାବରେ ତାହା ଦେଖି ସେମାନଙ୍କ ପ୍ରଦତ୍ତ ଅଗ୍ରାହ୍ୟ-ଜଳ-ପିଣ୍ଡାଦିରେ ନୈରାଶ୍ୟ ହୋଇ ନୟନରୁ ଉତ୍ପ୍ତୋଦକ ନିକ୍ଷେପ କରୁ ନ ଥିବେ କି ? ଆଉ ନିଜର ଇନ୍ଦ୍ରିୟାଧିଷ୍ଠାତୃ ଦେବତାମାନେ ସ୍ୱାଦେଶ-ବିଧିର ବିପରୀତାଚରଣ ଦେଖି ଅସନ୍ତୁଷ୍ଟ ହେତୁ ସେ ଇନ୍ଦ୍ରିୟଙ୍କଦ୍ୱାରା ଇହ-ପରକାଳ ଶ୍ରେୟ ସାଧନ କାର୍ଯ୍ୟ ହୋଇପାରିବ କି ? କିନ୍ତୁ ବର୍ତ୍ତମାନ ଇନ୍ଦ୍ରିୟଚରିତାର୍ଥ ବିଭ୍ରାନ୍ତ-କ୍ରିୟା ହେତୁ କେବଳ ବିକୃତାତ୍ମକ ଦେବ-ପିତୃ-ଧର୍ମ-ବିରୋଧୀ ସନ୍ତାନଗୁଡ଼ାଏ ଆମଦାନୀ ହେଉଛନ୍ତି ମାତ୍ର । ତାଙ୍କର ସେବା ଶୁଶ୍ରୂଷା ଲାଳନ ପାଳନ ଓ ଉନ୍ନତ ପାଇଁ ମୋହବଶରେ ସମସ୍ତେ ମଜ୍ଜିଛନ୍ତି । କିନ୍ତୁ ପରକାଳ ଜଳପିଣ୍ଡ ଦେବାର ଶିକ୍ଷା ନ ଦେଇ ( ନିଜେ ତ ନଦାରଦ ) କେବଳ ଶେଷାବସ୍ଥାକୁ 'ପୋଷାକୁକୁର ପାଳନ ସମ' ସେବାଶାରେ ଆଶାନ୍ୱିତ । ନିଜ ଶକ୍ତି ରହିତ ହେଲେ ତାହା ମଧ୍ୟ ଅଧିକାଂଶଙ୍କ ଭାଗ୍ୟରେ ବ୍ୟତିକ୍ରମ ବା ବିପରୀତ ଘଟିଥାଏ । ଯଥା—ଶଙ୍କରାଚାର୍ଯ୍ୟଃ ;—"ଯାବଦ୍ୱିତ୍ତୋପାର୍ଜ୍ଜନ ଶକ୍ତ-

ସ୍ତାବନ୍ନିଜପରିବାରୋ ରକ୍ତଃ

ତଦନୁ ଚ ଜରୟା ଜର୍ଜ୍ଜରଦେହେ

ବାର୍ତ୍ତାଂ କୋଽପି ନ ପୃଚ୍ଛତି ଗେହେ ।"

ତେଣୁ ତତ୍ସଂବର୍ଦ୍ଧୀୟ ଓ ନିଜର ନଶ୍ୱର-ଶରୀର ରକ୍ଷା ଏବଂ ପୁଷ୍ଟି ପାଇଁ ସମସ୍ତେ ବ୍ୟସ୍ତ । ଯାହାର ପରିଣାମ ଭସ୍ମ ବା ବିଷ୍ଠା କିମ୍ବା କୀଟ; କିନ୍ତୁ ଯାହା ବିଦ୍ୟମାନରୁ ସେ ଦେହ ଜୀବିତ ସେ ଦେହୀ ସକାଶେ କିଛି ନାହିଁ କହିଲେ ଚଳେ । ଜଗତସ୍ଥ ଅଧିକାଂଶ ବିଶେଷତଃ ଅଧୁନିକ ଶିକ୍ଷିତ ମାନେଇ ଅନୁସରଣ କରନ୍ତି । ଯେ ଦେହର ସେବା ସକାଶେ ବହୁସଂଖ୍ୟକ ଦାସଦାସୀ ନିଯୁକ୍ତ, ଅତର, ଲଭେଣ୍ଡରାଦି ବୋଲା ହୁଏ, ଧୂଳି ଲଗିଲେ ପାଠକିନାରେ ପୋଛି ଯାଇଥାଏ, ବହୁମୂଲ୍ୟାଚ୍ଛାଦନାଦିଦ୍ୱାରା ଶୋଭିବର୍ଦ୍ଧନ କରାଯାଏ, ତାହାର ପରିଣାମ କିଣ ହୋଇଥାଏ ? କିଏ ଭାବୁଛି କି ? ରୂପ-ଗୁଣ ସୁନ୍ଦର ଅତି ସ୍ନେହ ବାତ୍ସଲ୍ୟ ଲାଳିତ ପ୍ରତିପାଳିତ ନିଜର ପୁଅ ନାନାପ୍ରକାର ଯତ୍ନ କଲେହେଁ ମରିଯିବାରୁ ପିତା ଅତ୍ୟନ୍ତ ବିକଳ ହୋଇ ଉଲେ ମୁଣ୍ଡ ମାରି ହାତ ବାଡ଼େଇ ସହସ୍ର ବୃଷ୍ଚିକଦଂଶନ ବ୍ୟଥା ପରି ବେଦନା ଲଭି ଶବକୁ କୁଣ୍ଢାଇ ଆଉଁସି କ୍ରନ୍ଦନ କରୁଛି । ଚତୁର୍ଦ୍ଦଶ ଭୁବନ ଶୂନ୍ୟ ବୋଧହେଉଛି । ଯାହାକୁ ପୁଅ ବୋଲି ମଣି ମଣ୍ଡିଥିଲା, ସବୁ ଅବୟବଯୁକ୍ତ ସେ ତ ସାକ୍ଷାତରେ ପଡ଼ିଛି, ତେବେ ଏଡ଼େ ବିକଳ କାହିଁକି ? ଶ୍ମଶାନ କିମ୍ବା ପରେ ମଧ୍ୟ ତାହାର ଅନ୍ତ୍ୟେଷ୍ଟିଙ୍କୁ ବାହୁନି ମୋହ ଯାଉଛି । ଯେଉଁ ଦେହରେ ଧୂଳି ଲଗିଲେ ପୋଛୁଥିଲା, ନାନାପ୍ରକାର ସୁବାସଦ୍ରବ୍ୟାଦି ଘଷି ଧୋଉଥିଲା, ବସ୍ତ୍ରାଲଙ୍କାରାଦିଦ୍ୱାରା ମଣ୍ଡନ କରୁଥିଲା, ସେ ଦେହରୁ ଯେ ବାହାରି ଯିବାରୁ ଏହା ଘଟିଲା, ତାଙ୍କୁ ଦିନେ ପୁଅ ବୋଲି ଭାବିଥିଲା କି ? ଭାବିଥିଲେ ଏତେ ଦୁଃଖ ସହିଥାନ୍ତା କି ?

ସେ ଯାହା ହେଉ ବିଧର୍ମୀଙ୍କ ମଧ୍ୟରେ ସାଂସାରିକ-ସମ୍ବନ୍ଧି-କାର୍ଯ୍ୟକୁଶଳ କେତେକ ଥାଇପାରନ୍ତି; ସେମାନେ ଜନ୍ମାନ୍ତରେ ଭାଗ୍ୟବାନ୍ ହେବା ନିଶ୍ଚୟ; କିନ୍ତୁ ସନାତନ

ଧର୍ମକ୍ରିୟା ଓ ଲକ୍ଷ୍ୟଲଭ ଦୁର୍ଲ୍ଲଭ । ଆମ ଦେଶରୁ ପୂର୍ବପ୍ରଚଳିତ କେତେକ ଜଡ଼ବିଜ୍ଞାନାତ୍ମକ ଯୁଦ୍ଧ-ତତ୍ତ୍ୱ ଜର୍ମାନୀ ଯୁଦ୍ଧ ପୂର୍ବରୁ ସେ ଦେଶରେ ପଶିବାରୁ ଖେଚଡ଼ ବନି ଜର୍ମାନୀ ଯୁଦ୍ଧ ଏବଂ ପରେ ଅନ୍ୟାନ୍ୟ ଦେଶରେ ଅତି ଉତ୍କଟ ବିପ୍ଳବ ଘଟୁଛି । ଆମ ଦେଶରେ ସନାତନ ଧର୍ମକ୍ରିୟା ବିଧର୍ମୀ ଶାସନହେତୁ କ୍ରମେ କ୍ରମେ ଶିଥିଳ ହୋଇ ଆସୁଥିଲେହେଁ ନନ୍-କୋ-ଅପରେସନ୍ ସମୟରୁ କଂଗ୍ରେସୀୟ ମତ ପ୍ରଚାର ଜୋରରେ ସମୂଳେ ଧ୍ୱଂସ ହେବାର ଉପକ୍ରମ ହେଉଛି । ବିଧର୍ମୀତ୍ମକ-ମତ ପରିବର୍ତ୍ତରେ ଆମ ଦେଶୀୟ ପୂର୍ବ-ପ୍ରଚଳିତ ସନାତନ ଧର୍ମଶାସ୍ତ୍ରୋକ୍ତ କ୍ରିୟା-କଳାପ ଜାଗ୍ରତ ନ ହେଲେ ସମୟକ୍ରମେ ଭାରତୀୟମାନେ ବିଦେଶୀୟ ବିପ୍ଳବୀଙ୍କ ପରି ବିପ୍ଳବୀ ବନି ଅପଣା ଆପଣା ଭିତରେ ଧ୍ୱଂସ ହେବା ନିଶ୍ଚୟ, ଅତଏବ ସାବଧାନ !

---

## ୭ । ସନାତନ ଧର୍ମ ବିଭ୍ରାଟ

ଅନ୍ୟାନ୍ୟ ମହାଦେଶ, ଦେଶସ୍ଥ ଶରୀରୀ ବା ଜୀବାତ୍ମାନଭିଜ୍ଞ ବିଧର୍ମୀତ୍ମକ ମାନବମାନେ ନିଜର ଓ ସ୍ୱ-ଗୋଷ୍ଠୀୟମାନଙ୍କର ସ୍ଥୂଳ-ଶରୀର ପୁଷ୍ଟି ସକାଶେ ଅତି ନିରୀହ ଅର୍ଥାତ୍ ସ୍ତ୍ରୀ, ବାଳକ, ରୋଗଶୋକାକୁଳ ଏବଂ ପ୍ରତିକାରରହିତ ରାଜ୍ୟରାଜ୍ୟସ୍ଥ ମହାପ୍ରାଣୀ ଓ ଗୃହ-ଅଟ୍ଟାଳିକାସହ ଗ୍ରାମ ନଗରମାନ ବିନା ଦୋଷରେ ଯେପରି ଧ୍ୱଂସ କରୁଛନ୍ତି, ବର୍ତ୍ତମାନ ସନାତନ ଧର୍ମର ଶିଥିଳତା ଘଟିଥିଲେହେଁ କେତେକ ରାକ୍ଷସ-ପ୍ରକୃତିକ, ବିଧର୍ମୀତ୍ମକ ଶିକ୍ଷିତମାନଙ୍କ ବ୍ୟତୀତ ସନାତନୀ ରକ୍ତଗତ-ସମ୍ଭୂତ ଭାରତୀୟଙ୍କ ହୃଦୟରେ ତାହା ହୋଇପାରିବ କି ? ଜନ୍ମାନ୍ତରକୁ ତାଙ୍କର ଆଦୌ ଭ୍ରୂକ୍ଷେପ ନାହିଁ । ସେମାନଙ୍କ ମତରେ ମନୁଷ୍ୟର ଥରେ ଜନ୍ମ, ଥରେ ମୃତ୍ୟୁ । ସମସ୍ତ ଜଗତ ମଧ୍ୟରେ

କେବଳ ଅମ୍ଭର ଏହି ପବିତ୍ର ଉଭୟ ବିଜ୍ଞାନବେତ୍ତା ଭାରତୀୟ ହିନ୍ଦୁମାନଙ୍କ ଗୌଣପକ୍ଷ ହେଲେହେଁ ସର୍ବକର୍ମ-ସାଧନକ୍ଷେତ୍ର ଶରୀର-ସମ୍ବନ୍ଧୀୟ ସମୁପଯୁକ୍ତ ସ୍ୱାସ୍ଥ୍ୟ ଏବଂ ସେହି ସ୍ଥୂଳ-ଶରୀରସ୍ଥ ନିତ୍ୟନ୍ତ୍ରା ଜୀବାତ୍ମାର ଭବିଷ୍ୟତ ସଦ୍ଗତି ସକାଶେ ଯେ ସବୁ ବିଧାନାତ୍ମକ କ୍ରିୟାକଳାପ ନିରୂପିତ ଥିଲା, ତାକୁ ସମୂଳେ ଧ୍ୱଂସ କରି ଭବିଷ୍ୟତକୁ ଜଗତ-ସ୍ରଷ୍ଟା ଭକର୍ତ୍ତା ମନୁ, ପରାଶର ପ୍ରଭୃତିଙ୍କ ପରି ଋଷି, ମୁନି ବନିବା ପାଇଁ ଆମ ଦେଶୀୟ କେତେକ ସଙ୍କଳ୍ପସମ୍ଭୂତ ଦାମ୍ଭିକମାନେ ପ୍ରାଣପ୍ରାୟୁଷ୍ଟିତ ହୋଇ ଲଗିଛନ୍ତି । "ଅହୋ ! କମାଶ୍ଚର୍ଯ୍ୟମତଃ ପରଂ" ଅଭୂତ ପ୍ରକାଣ୍ଡ କୁତ୍ସିତ-କ୍ରିୟା ! ଦେବତା-ପିତୃ ପ୍ରଭୃତିଙ୍କ ସତ୍କାର୍ଯ୍ୟ ସକାଶେ ସକ୍ଷମ ହେବା ପାଇଁ ପୁତ୍ର-କନ୍ୟାମାନଙ୍କର ସଂସ୍କାର ସମ୍ବନ୍ଧରେ ବିରୁଦ୍ଧ (ଯଦ୍ଦ୍ୱାରା ଧର୍ମକାର୍ଯ୍ୟ ପରମ୍ପରାଗତ ପବିତ୍ର-ରକ୍ତଗତ ସମାଜରେ ବ୍ୟଭିଚାର ଓ ଭ୍ରଷ୍ଟ ହେବାର ସମ୍ଭାବନା) ଚତୁର୍ଦ୍ଦଶବର୍ଷୀୟା-ବିବାହ-ଆଇନ (ପ୍ରୌଢ଼ାକନ୍ୟା ବିବାହ ଅପକାରିତା ହେତୁ ତଦ୍‌ବିରୁଦ୍ଧରେ ଓ ଭାରତୀୟ ପିଲା-କନ୍ୟା ବିବାହ ଉପକାରିତା ହେତୁ ତତ୍ ସପକ୍ଷରେ କେତେକ ବିଦେଶୀୟ ମନୀଷୀମାନେ ଏବେ ମତ ପ୍ରକାଶ କରିବାର ଶୁଣାଯାଏ । 'ଉଭୟ ବିବାହର ନିର୍ଯ୍ୟାସ ନିବେଦନ ପୁସ୍ତକରେ ଦ୍ରଷ୍ଟବ୍ୟ') ଛାଡ଼ପତ୍ର ଆଇନ, ସ୍ପର୍ଶୀୟାସ୍ପର୍ଶୀୟ ଏକ ହେବା ଆଇନ, 'ମାଇଲା-ଘରେ ଭୂତ ନ ପଶେ' ପ୍ରବାଦ ପରି ଠେଙ୍ଗା ଭୟରେ ପିତୃବ୍ରତ ସମ୍ବନ୍ଧରେ ଊଁ ଚୁଁ ନୋହୁଁ (ଶୀତ-ଚତୁର୍ମାସ୍ୟା ପ୍ରବାଦ ପରି) ବହୁକାଳାତୀତ, ହିନ୍ଦୁରାଜ-ପ୍ରଦତ୍ତ, ବିଧର୍ମୀ ରାଜସମ୍ମତ ହିନ୍ଦୁ ଦେବୋତ୍ତର ଓ ମଠ-ମନ୍ଦିର ସମ୍ପତ୍ତି ଉପରେ ଅଧିକାର ଆଇନ (କେତେକ ବ୍ୟତିକ୍ରମ ହେଲେହେଁ କେତେକ ସୁବିଧାରେ ଚାଲୁଥିଲା; କିନ୍ତୁ ସବୁର ଉପରେ ଏକ ଠେଙ୍ଗା), ସବର୍ଣ୍ଣଙ୍କ ଦେବମନ୍ଦିରରେ ହରିଜନ ପ୍ରବେଶ

ଅଇନ ଇତ୍ୟାଦି ଇତ୍ୟାଦି ପାସଦ୍ୱାରା ସମସ୍ତ ଜଗତରେ "ଏକମେବାଦ୍ୱିତୀୟଂ" ସନାତନଧର୍ମାତ୍ମକ ସ୍ମୃତି-ପୁରାଣୋକ୍ତ ବିଧିବିଧାନକୁ ସମୂଳେ ଉଚ୍ଛେଦନ କରିବାରେ ଲାଗିଛନ୍ତି । ଯାହା କି ସମସ୍ତ ଜଗତସ୍ଥ ଅନ୍ୟାନ୍ୟ ବିଧର୍ମୀ, ଅଦୂରଦର୍ଶୀ, କାଲଜ୍ଞାନଶୂନ୍ୟ, ଜୀବାତ୍ମାନଭିଜ୍ଞ ଆତ୍ମଘାତୀ-ମାନବମାନଙ୍କ ପକ୍ଷରେ 'ଭାରତୀୟ ସନାତନଧର୍ମାତ୍ମକ ସ୍ମୃତି-ଶ୍ରୁତି-ପୁରାଣୋକ୍ତ ବିଧିବିଧାନ ପେଚକ ପ୍ରକୃତ ରାତ୍ରିଚରମାନଙ୍କ ପକ୍ଷରେ ସୂର୍ଯ୍ୟ ସ୍ୱରୂପ' ହୋଇ ପଡ଼ୁଛି । ହେଲେହେଁ ତାହା କଦାପି ଲୋପ ହେବ ନାହିଁ । ଯତଃ ସେ 'ସନାତନବିଧି', ଅନନ୍ତକାଲସ୍ଥାୟୀ । କେବଳ ଜାତି ଯିବ ପେଟ ପୂରିବ ନାହିଁ । ବିଧର୍ମୀମାନେ କୂଟ-ନୀତିଦ୍ୱାରା 'କାଠକୁଠାର' ପ୍ରବାଦ ପରି କେତେକ ଦାମ୍ଭିକ ଭାରତୀୟଙ୍କ ସାହାଯ୍ୟରେ ସେ ସନାତନ ବିଧିକି ସମୂଳେ ଧ୍ୱଂସ କରିବାପାଇଁ ଲାଗିଛନ୍ତି । 'ଅଲେ ମୂତୁସି ସୋଇବା, ତୁ ତ ମୂତୁସି ମୁଁ ତ ମୂତୁସି, ହେଁସ କାହିଁପାଇଁ ଧୋଇବା' । ସଦ୍‌ବଂଶଜ ଉମାପ୍ରସନ୍ନ, ସଦନଭିଜ୍ଞମାନେ ବିଧର୍ମୀ ଶିକ୍ଷିତ ହେତୁ ତାହା ଆଦୌ ବୁଝିପାରୁ ନାହାନ୍ତି । ଅଗ୍ନିରେ ପତଙ୍ଗ ପରି ପଡ଼ୁଛନ୍ତି । ପ୍ରଜାପାଳନୋପଦେଶକ, ସନାତନ ଧର୍ମନେତା କେତେକ ବ୍ରାହ୍ମଣବଂଶୀୟ ଯେପରି ସଦାଚାରଭ୍ରଷ୍ଟ ଏବଂ ଜିହ୍ୱୋପସ୍ଥବଶବର୍ତ୍ତୀ ଦେଖାଯାନ୍ତି, ପୁଣି ଅଧିକାଂଶ ସମୟ ଗ୍ରାମ୍ୟଗଳ୍ପ ଏବଂ ସାଂସାରିକ-କାର୍ଯ୍ୟପ୍ରତି ଉତ୍ସାହ ଓ କଠିନ-ପରିଶ୍ରମରେ ପ୍ରବୃତ୍ତ ହେଉଥିଲେହେଁ ସଦାଚାର ସମନ୍ୱିତ, ସ୍ୱକୁଳ-ବୈଦିକ-ଦୈବାନୁଷ୍ଠାନ ଏବଂ ଇଷ୍ଟଦେବତା ସେବା ପ୍ରତି 'ଜଳଚ୍ଛଗଳ ପରି' କୁଣ୍ଠିତ ହେଉଥିବାରୁ ଅନୁମାନ କଲେ କାଳର ପ୍ରବର୍ତ୍ତନାରେ ସନାତନଧର୍ମ ଲୋପ ହୋଇଯିବ କି ? କିନ୍ତୁ ଏହା ନିଶ୍ଚୟ କଥା, ସେମାନଙ୍କ ବଂଶରେ ବ୍ୟଭିଚାର ବଢ଼ିବ ଆଉ ପିତୃଗଣ ଓ ନିଜେ ଜଳପିଣ୍ଡ ରହିତ ହେବେ !

ଅନୁମାନ କରାଯାଉ; ଯତଃ ସୁଖ୍ୟାତ ନାମଯାଦା ଗୃହମାନଙ୍କର

ଇଷ୍ଟଦେବତା ଓ ପିତୃଗଣାଦି ସବଧିରେ ଅଗ୍ରାଧୃତ ହୋଇଥାନ୍ତି କିନ୍ତୁ ପତନ ପୂର୍ବରୁ ସେ ବିଧିର ବ୍ୟତିକ୍ରମ ଘଟିଥାଏ ।

ଭାରତୀୟଙ୍କ ଶ୍ରେଷ୍ଠ ସକାଶେ ରାଜନୈତିକ-କ୍ଷମତା ଆପତ୍ତି ସମ୍ବନ୍ଧରେ ବିଲାତର କେହି କେହି କ୍ଷମତାପନ୍ନ ଅଧିକାରୀ ସମୟକ୍ରମେ କହିଥିଲେ, 'ସେ ଭୂକି ହେଉଥାନ୍ତୁ, ଆମ୍ଭର ବିପଣୀ ଚାଲିଥାଉ' । ସେହିପରି ଜଗତର ଶ୍ରେଷ୍ଠ ଓ ଆମ୍ଭୋନ୍ନତିର ସନାତନ ଧର୍ମ-ଶାସ୍ତ୍ରୋକ୍ତ-କ୍ରିୟାକଳାପ ସପକ୍ଷ ଓ ବିପକ୍ଷ ସମ୍ବନ୍ଧରେ କେହି କିଛି ଆପତ୍ତି ବା ମନ୍ତବ୍ୟ ପ୍ରକାଶ କଲେ, କେତେକ ବିଧର୍ମୀମାନଙ୍କ ପ୍ରତାପଶାଳୀ ତଦନୁରୂପ (ରାଜନୈତିକ ମନ୍ତବ୍ୟ ପରି) ମନେ କରି ସେ ବିଧିର ଧ୍ୱଂସ ସକାଶେ ଆପତ୍ତିକୁ ଦାବିଦେଇ ଯଥେଚ୍ଛାଚାର ଓ ବିପରୀତ କ୍ରିୟାର ପ୍ରଚାର କରୁଛନ୍ତି ଏବଂ ନିଜେ ଯାହା ତା କରି ଯାଉଛନ୍ତି । କିନ୍ତୁ ସନାତନଙ୍କ କୃପାରୁ ସେ ସନାତନଧର୍ମବିଧି ସମୂଳେ ଲୋପ ନ ପାଇ ସମୟକ୍ରମେ ସାମାନ୍ୟ ବଟବୀଜରୁ ତଦ୍ରୂପ ମହାଦ୍ରୁମ ପରି ଦେଦୀପ୍ୟମାନ ହେବଇ ହେବ । ବିପରୀତ-ମତାବଲମ୍ବୀ ବଂଶଧରମାନେ ବିପ୍ଲବୀ ହୋଇ ଅଧୋଗତି ଲଭିବେ । ଏହା ନିଶ୍ଚୟ ! ଅନନ୍ତକାଳରୁ ଅନନ୍ତକାଳସ୍ଥାୟୀ ସନାତନଧର୍ମ ଲୁପ୍ତ ହୋଇ ନ ପାରେ କି ଅନ୍ୟ କେହି ବିଭ୍ରାଟ କରି ନ ପାରେ । ଯାହା ଯାହା ବ୍ୟତିକ୍ରମ ବା ବିଭ୍ରାଟ କରିଛନ୍ତି ବା କରିବେ ସେହି ସନାତନୀବଂଶୀୟ କୁଳାଙ୍ଗାର-ମାନେ । ସନାତନ ବଂଶୋଦ୍ଭବ କଳାପାହାଡ଼ ପ୍ରଭୃତି ବିଭ୍ରାଟ କରିଥିଲେ । ଆଉ କାଉନ୍‌ସିଲ୍ ମେମ୍ବର ଓ କଂଗ୍ରେସୀୟମାନେ ନାନାପ୍ରକାର ବ୍ୟତିକ୍ରମ କରିଛନ୍ତି, ବର୍ତ୍ତମାନ ମଧ୍ୟ କରୁଛନ୍ତି, ଆହୁରି ମଧ୍ୟ କରିବା ସମ୍ଭାବନା । ସେ ହାଣ-କୁରାଢ଼ୀ ନିଜ ଗୋଡ଼ରେ ପକାଇ ଜନ୍ମାନ୍ତରକୁ ଜଳ-ପିଣ୍ଡ ରହିତ ହେବେଇ ହେବେ । ରୌରବ ନର୍କ ଭୋଗ ତ ନିଶ୍ଚୟ ! ସେହି ଦଳଙ୍କ

ଶ୍ରୁତି-ପ୍ରିୟକର ଭୌତିକ-ଉନ୍ନତି ବା ମହାକାଳଫଳୋପମ ସ୍ୱାଧୀନତା ସକାଶେ ବାଗାଡ଼ମ୍ବରଜନକ କୁହୁକ-କ୍ରିୟା ଯାହା ଯାହା ପ୍ରଚୁର ହେଉଛି ଓ କେତେକ ମ୍ଳେଚ୍ଛବିଧି କାର୍ଯ୍ୟରେ ପରିଣତ ହେଉଛି ; ଯଥା—ସଦ୍‌ବଂଶରେ ବିଧବା ଦ୍ୱିତୀୟ, ସବିଶେଷ ଜାତିଗତ କାର୍ଯ୍ୟ ବିଭ୍ରାଟ, ବିଜାତୀୟ-ବିବାହ, ଏକତ୍ର ଭୋଜନ, 'ସର୍ବଧୋଟ ଦିବାକର' ହୋଟେଲ୍‌ଖାନା, ଜମିଦାରୀ-ମହାଜନୀ ବିଭ୍ରାଟ, ମଠ-ମନ୍ଦିର ଅଧିକାର, ଦେବାଳୟରେ ଅନ୍ତ୍ୟଜ-ଚଣ୍ଡାଳ ପ୍ରବେଶ, ସମ୍ପତ୍ତିରେ ସ୍ତ୍ରୀ-ସନ୍ତାନାଦିଙ୍କ ସତ୍ତ୍ୱ, ନିଜ ସ୍ୱାମୀକୁ ଛାଡ଼ିବା ଛାଡ଼ପତ୍ର, ଅର୍ଦ୍ଧ-ଉଲଙ୍ଗ ବା ଲୁଙ୍ଗୀ, ସନାତନବିଧିବିଧ୍ୱଂସନ ପ୍ରଭୃତି ଆର୍ଯ୍ୟଭୂମି ଭାରତରେ ଆର୍ଯ୍ୟବଂଶଧର ରକ୍ତଗତସମ୍ଭୂତ ଭାରତୀୟଙ୍କ ଉନ୍ନତି ପରିବର୍ତ୍ତିରେ ଅବନତି ବିଭ୍ରାଟ ଓ ଧ୍ୱଂସର ଅକାଟ୍ୟ-କାରଣ । ବିଶେଷତଃ ଭାରତୀୟଙ୍କ ଅବସ୍ଥାକୁ ଅନୁମାନ କଲେ କେତେକ ଶାସନ-ଆଇନ ପରିବର୍ତ୍ତନ ବ୍ୟତୀତ ବହୁକାଳ ସମ୍ବନ୍ଧ ସବିଶେଷ ବଳଶାଳୀ ବ୍ରିଟିଶ ସମ୍ପର୍କରୁ ଉଚ୍ଛେଦ ଉଚିତ ନୁହେ । ଭାରତଲୋଲୁପ ଅନ୍ୟାନ୍ୟ ସମସ୍ତ ବିଭ୍ରାଟ ରାଜଶକ୍ତି ମଧ୍ୟରୁ ଯେ କେହି ଭାରତକୁ ମାଡ଼ିବସିଲେ ଭାରତୀୟଙ୍କ ଅବସ୍ଥା ଅତି ଶୋଚନୀୟ ହେବାର ନିଶ୍ଚୟ । ଅତଃ ସାବଧନ !

"ଏକମେବାଦ୍ୱିତୀୟଂ" ଏକମାତ୍ର ସ୍ୱଚ୍ଛ-ସମୁନ୍ନତ ସନାତନଧର୍ମ ବିଧି ବା କର୍ମଯୋଗକୁ ପ୍ରଥମରେ ବୁଦ୍ଧଦେବ ବ୍ୟତିକ୍ରମ କରିଥିଲେ । ପରେ ବ୍ୟକ୍ତିବିଶେଷ ବିଧର୍ମୀଶାସକ ଖଣ୍ଡା ବଳରେ ଅସଂଖ୍ୟ ହିନ୍ଦୁଙ୍କ ଧ୍ୱଂସ ଓ ଅନିଚ୍ଛାସତ୍ତ୍ୱେ ଯବରଦସ୍ତ ବହୁପରିମାଣରେ ମୁସଲ୍‌ମାନ କରି ଦେବାଳୟ, ଦେବବିଗ୍ରହଙ୍କୁ ବିକଳାଙ୍ଗ ଓ ବିଘ୍ନ କରିଥିଲେ । ଇଂରେଜ-ମାନେ ସୂତ୍ରଧରୋପମ କୂଟନୀତିରେ କ୍ରମେ କ୍ରମେ ବ୍ୟତିକ୍ରମ

କରୁଥିଲେହେଁ କାଉନ୍‌ସିଲ୍ ବସାଇ କେତେକ ହିନ୍ଦୁଙ୍କ ସହ-ଯୋଗରେ ଅପେକ୍ଷାକୃତ ବେଶୀ ବ୍ୟତିକ୍ରମ କରାଉଥିଲେ । ପୁଣି ଭାରତର ଉନ୍ନତି ମୋହରେ କଂଗ୍ରେସ ବସାଇ ଓ ଧର୍ମହୀନ ଶିକ୍ଷା ଦେଇ ଆହୁରି ଅଧିକ ପରିମାଣରେ ବ୍ୟତି-କ୍ରମର ସୋପାନ ଗଢ଼ିଦେଲେ । ତତ୍ପରେ ଅସହଯୋଗ-ନୀତିରେ ଆହୁରି ଅଧିକ ବ୍ୟତିକ୍ରମ ହେଲା । ପୁଣି ଅଗ୍ନିକ ବାୟୁ ସହାୟ ପରି ଭାରତୀୟମାନେ କେତେକାଂଶରେ ମହାକାଳ ଫଲୋପମ ନାମ ମାତ୍ରକ ଶାସନକ୍ଷମତା ପାଇବାରୁ ସନାତନ-ଧର୍ମ କିପରି ସମୂଳେ ଧ୍ୱଂସ ହେବ, ତାହାର ଯଥୋଚିତ ଉଦ୍ୟମ ଓ ଯତ୍ନରେ ମଜ୍ଜିଛନ୍ତି । "ଅପରେ କିଂ ଭବିଷ୍ୟତି" । କିନ୍ତୁ ସନାତନଙ୍କ କୃପାରୁ ବଟ ବୃକ୍ଷସ୍ଥ ଅସଂଖ୍ୟ ବଟଫଳ ମଧ୍ୟରୁ ଏକମାତ୍ର ଫଳାନ୍ତର୍ଗତ ଏକମାତ୍ର ବୀଜରେ ସେହି ମହତ୍ ବଟଦ୍ରୁମ ନିହିତ ଥାଇ ସମୟାନୁସାରେ ଯେପରି ତଦ୍ରୂପ ବଟଦ୍ରୁମ ପ୍ରକାଶ ପାଇଥାଏ, ଆଉ ଅନ୍ୟାନ୍ୟ ସବୁଫଳ ନଷ୍ଟ ହୋଇଥାଏ, ସେହିପରି ସନାତନଧର୍ମବିଧି ଅତି କ୍ଷୀଣାବସ୍ଥାରେ ରହିଲେ ମଧ୍ୟ ସମୟକ୍ରମେ ସୁମହତ୍ ହେବଇ ହେବ । ଯତଃ ସେ "ସନାତନ" ଅର୍ଥାତ୍ ଅନନ୍ତକାଳରୁ ଅନନ୍ତକାଳସ୍ଥାୟୀ । ସନାତନଧର୍ମନିଷ୍ଠ ବଂଶଧରମାନେ ଉପରୋକ୍ତ ବଟ ବୀଜାନୁସାରେ ବୃଦ୍ଧିପ୍ରାପ୍ତ ହୋଇ ଅକ୍ଷୟ ଏବଂ ଦେଦୀପ୍ୟମାନ ହେବେଇ ହେବେ । ଏହା ନିଶ୍ଚୟ ।

'ଅତୀତାନୁଭବ' ଯଥା—ଅଜ୍ଞାନ ବାଲକାବସ୍ଥାରେ କେହି ବାଳକ ଅସ୍ପୃଶ୍ୟ ବିଷ୍ଠାଦି ସ୍ପର୍ଶଦ୍ୱାରା ଛୁଆଁ ହେଲେ ବା କେହି କାହାକୁ ଛୁଇଁଲେ, ସେ ସ୍ୱଭାବସିଦ୍ଧ ଅହଂକାରାନୁରାଗ ବା କୌତୁକରେ ଗୋଡ଼ାଇ କରି ଅନ୍ୟମାନଙ୍କୁ ଛୁଆଁ କରିଥାନ୍ତି; କିଏ ବା କାହାକୁ ଛୁଇଁ ନ ପାରିଲେ ତାର ଘର ଲୁଗାପଠା ସବୁ ଛୁଇଁ ଛୁଆଁ କରିଥାଏ । ବୟସ୍ଥ ଧର୍ମଭୀରୁ ତାହା ଜାଣିପାରିଲେ

ସବୁ ଧୂଅଧୋଇ କରିଥାନ୍ତି; ଜାଣି ନ ପାରିଲେ ଗୁପ୍‌ଚୁପ୍‌ରେ ଯାଇଥାଏ । କିନ୍ତୁ ଯେ ପ୍ରଥମ ପ୍ରଥମ ଛୁଆଁ ବାଳକ ଅନ୍ୟାନ୍ୟଙ୍କୁ ଛୁଇଁ ଛୁଆଁ କରିଥାନ୍ତି, ସେ ତ ପବିତ୍ର ହୋଇପାରନ୍ତି ନାହିଁ; କେବଳ ଅନ୍ୟାନ୍ୟଙ୍କୁ ଛୁଆଁ କରନ୍ତି ମାତ୍ର । ସେହିପରି ନଷ୍ଟା, କୁଳଟା ବା ସମାଜତ୍ୟକ୍ତା ଓ ପତିତାମାନେ ବିଶୁଦ୍ଧ ସମାଜକୁ ଗୋଳିଆ ପୋଳିଆ କରିବାକୁ ଚେଷ୍ଟା କରିଥାନ୍ତି । ସେ ଯାହାହେଉ ବର୍ତ୍ତମାନ ସନାତନଧର୍ମବିରୋଧୀ, ଅନ୍ତ୍ୟଜାଦି ସଂସର୍ଗୀ, ଯଥେଚ୍ଛାଗୁରୁମାନେ ପବିତ୍ର କିମ୍ବା ସ୍ଥିତିମାନଙ୍କୁ ଏବଂ ଦେବବିଗ୍ରହମାନଙ୍କୁ ସ୍ପର୍ଶାଦିଦ୍ୱାରା ପତିତ କରି, ନିଜ ଗୋଷ୍ଠିକି ଟାଣି ସ୍ୱଗୋଷ୍ଠୀ ବୃଦ୍ଧିଦ୍ୱାରା ସନାତନଧର୍ମକୁ ଭ୍ରଷ୍ଟ କରିବାପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ ଯଥୋଚିତ ଚେଷ୍ଟାରେ ମଜ୍ଜିଛନ୍ତି । ଅତଃ ଅନ୍ୟକୁ ଅପବିତ୍ର କରିବେ ସିନା ନିଜେ ପବିତ୍ର ହୋଇପାରିବେ କି ? ଅତଏବ ହେ ବିଶୁଦ୍ଧ ସନାତନୀ ବଂଶଧରମାନେ, ସାବଧାନ ।

---

## ୮ । ଦେବସ୍ୱ ମଠ ମନ୍ଦିର

ଅସ୍ମମାନଙ୍କର ଆର୍ଯ୍ୟାବର୍ତ୍ତ ପୁଣ୍ୟଭୂମି ଭାରତବର୍ଷରେ ଧର୍ମନିଷ୍ଠ ଶାସକ ପାଳକମାନେ ମହତ୍ ମହତ୍ ଦେବାଳୟ ଏବଂ ଦେବତା ପ୍ରତିଷ୍ଠିତ କରି ଦେବସେବା ପ୍ରଭୃତି ସକାଶେ ବହୁତ ବହୁତ ଭୂ-ସମ୍ପତ୍ତି ଖଞ୍ଜି ଯାଇଛନ୍ତି । ଆଉ କେତେକ ସିଦ୍ଧ ପୁରୁଷମାନେ ନିଜର ମାହାତ୍ମ୍ୟବଳରେ ବିତ୍ତଶାଳୀ ଭକ୍ତମାନଙ୍କ ପ୍ରଦତ୍ତ ଭୂ-ସମ୍ପତ୍ତି ଓ ବିତ୍ତ ସାହାଯ୍ୟରେ ନାନା ମନ୍ଦିର ଓ ଦେବତା ସ୍ଥାପନ କରି ଦେବତା, ଅତିଥି, ଅଭ୍ୟାଗତ, ସାଧୁ ସେବା ଓ ବିଦ୍ୟାଦାନ ସକାଶେ ପୀଠ ବା ମଠ ନାମରେ ଆଶ୍ରମ ସ୍ଥାପନ କରି ସାଧାରଣଙ୍କୁ ସଦ୍ଧର୍ମର ଶିକ୍ଷା ଦେଇ ସୁଚାରୁ ରୂପେ ଚଳାଇ ଆସୁଥିଲେ । ସ୍ଥଳବିଶେଷରେ ସତ୍‌ସ୍ୱଭାବ ଓ ଶୃଙ୍ଖଳାର ଅନୁମାନ କରି ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିମାନେ ଅର୍ଥ ଓ

ଭୂସମ୍ପତ୍ତି ଖଞ୍ଜି ଦେଇଥିଲେ, ବର୍ତ୍ତମାନ ମଧ୍ୟ ଦେଉଛନ୍ତି । ସ୍ଥଳ ବିଶେଷରେ ସେହି ସମ୍ପତ୍ତି ବୃଦ୍ଧି ପାଇ ଢେର ବେଶୀ ହୋଇଛି । ସତ୍‌ସ୍ୱଭାବାତ୍ମକ ଶକ୍ତିଶାଳୀ ଗୃହୀମାନେ ମିଳିମିଶି ଗ୍ରାମରେ ମଧ୍ୟ ନିଜେ ନିଜେ ଦେବମନ୍ଦିର ଏବଂ ଦେବତା ସ୍ଥାପନ କରି ନ୍ୟୂନାଧିକ ଭାବରେ ଭୂ-ସମ୍ପତ୍ତି ଖଞ୍ଜି ନିଜେ ନିଜେ ବା ଅନ୍ୟଦ୍ୱାରା ଚଳାଉଛନ୍ତି ।

ଦେଶ-କାଳ ପାତ୍ର ନେଇ ସ୍ଥଳବିଶେଷରେ କେତେକ ବ୍ୟତିକ୍ରମ ଘଟିବାରୁ ସାଧାରଣ ଲୋକେ ଅସନ୍ତୁଷ୍ଟ ହେଉଥିଲେହେଁ କେତେକ ଅଞ୍ଚଳର ସୁବିଧା ଓ ସୁନାମ ହେତୁ ଭଲ-ମନ୍ଦ ହୋଇ ଏକପ୍ରକାର ଚଳି ଆସୁଥିଲା । ହିନ୍ଦୁ ମୁସଲମାନ ସଂଘର୍ଷ ହେତୁ ନାନାପ୍ରକାର ବିପ୍ଳବ ସତ୍ତ୍ୱେ ଓ ଦେବାଳୟ, ମଠ ମନ୍ଦିର ସମ୍ପତ୍ତି ବଞ୍ଚାଯାଇ ଥିଲା । ଦେବସେବାଦି ଅଧିକାଂଶ କାର୍ଯ୍ୟ ସୁରୁଖୁରୁରେ ଚଳି ଆସୁଥିଲା । ବର୍ତ୍ତମାନ ମଧ୍ୟ ଅଧିକାଂଶ ଚଳୁଛି । ପରେ ବିଧର୍ମୀମୂଳକଶିକ୍ଷା ଓ ଶାସନ ହେତୁ କୁଟମୋହନ୍ତ- ଦ୍ୱାରା କେତେକ ଇନ୍ଦ୍ରିୟଲାଳସାର ବଶବର୍ତ୍ତୀ ହେବାରୁ ଦୃଷ୍ଟି- କଟୁ ହୋଇ ପଡ଼ିଲା । ଭଲ ଓ ମନ୍ଦର ଦୁର୍ନାମ ରଟିଲା । କେତେକ ମଠର ବହୁ ସ୍ୱ-କୁଟୁମ୍ବ ଓ ଇନ୍ଦ୍ରିୟ ଲାଳସାରେ ଅପବ୍ୟୟ ହେଲା । ତହିଁରେ ସାଧାରଣ ଲୋକେ ଚୁପ୍ ଥିଲେହେଁ ଆଧୁନିକ ଶିକ୍ଷିତ ଅଦୂରଦର୍ଶୀଙ୍କ ଉତ୍ତେଜନାରେ କେତେକ ମଠ ଓ ଦେବତା ବିଷୟ ବିଗ୍ରହ ବିଭାଗର ଆଂଶିକ ଛଳନା ଅନାହାସ୍ତ ଅଧୀନ ହୋଇଛି । ବର୍ତ୍ତମାନ ସମସ୍ତ ଦେବାଳୟ ଓ ମଠ ଖୋଦ୍, ବିଧର୍ମୀ ସର୍କାରର ଏକ ସମ୍ପତ୍ତି ହୋଇ ପୂର୍ତ୍ତିହାସ୍ତ ଧୋବାଲଠଙ୍କର କବଳୋପଯୋଗୀ ହେବା ପାଇଁ ଉପକ୍ରମ ହେଉଛି । ଯେଉଁସବୁ ମଠ ବା ଦେବାଳୟ ଆଂଶିକ ଭାବରେ ପରାଧୀନ ହୋଇଛି, ତହିଁ ମଧ୍ୟରୁ ଅଧିକାଂଶର ବ୍ୟତିକ୍ରମ ଘଟି ନାହିଁ କି ? ପୂର୍ଣ୍ଣ ପରାଧୀନ ହେଲେ ଯାହା ହୋଇପାରେ

ଅନୁମାନ କରାଯାଉ । ପୂର୍ବେ ଯେତେ ପରିମାଣରେ ଅପବ୍ୟୟ ହେଉଥିଲା ତାହା ଅପେକ୍ଷା ଅଧିକ ଧୋବଳଠଙ୍କ ପୋଷଣରେ ଯିବ । ସମୁଚିତ କାର୍ଯ୍ୟ ଯେ ହେବ ତାହା କଦାଚ ନୁହେ । 'ଈଶ୍ୱର ନ କରନ୍ତୁ' ସମୟକ୍ରମେ ଦେଶ ଯଦି ଅନ୍ୟ ବିଧର୍ମୀ-କରଗତ ହୁଏ, ତେବେ କଣ ହୋଇପାରେ ଅନୁମାନ କରାଯାଉ । ବିଶେଷତଃ ପୂର୍ବ ମଠାଧୀଶମାନେ ମଠର ଯାବତୀୟ କାର୍ଯ୍ୟ ସାଧନ ସକାଶେ ନିଜର ଇଲାକା ବା ସମ୍ପ୍ରଦାୟଭୁକ୍ତ ସ୍ୱୀକୃତ ଲୋକଙ୍କୁ ସାମୟିକ ଅଭାବ ପୂରଣ ଓ ସାମାନ୍ୟ ବେତନରେ ନିଯୁକ୍ତ କରି ଜଗନ୍ନାଥଙ୍କ ମହାପ୍ରସାଦ ସମଧିକ ପରିମାଣରେ ଦେଉଥିବାରୁ ସେମାନେ ତାହା କାରବାରଦ୍ୱାରା କିଛୁ କିଛୁ ଲାଭ କରି ଯଥାଶକ୍ତିରେ ଚଳି 'ଆମ୍ଭର ମଠ' ବୋଲି ଭାବି ସମୁଚିତ କାର୍ଯ୍ୟ କରୁଥିଲେ । ଆଉ ଅତିଥି ଅଭ୍ୟାଗତ, ସାଧୁ ପାଠକ ଓ ବିଶିଷ୍ଟ ବ୍ୟକ୍ତି ବିଶେଷରେ ମହାପ୍ରସାଦ ନ୍ୟସ୍ତ ହେଉଥିବାରୁ ମଠର ପ୍ରାୟ ସମସ୍ତ ବିତ୍ତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସମର୍ପଣ ହେଉଥିଲା । ବର୍ତ୍ତମାନ କର୍ମଚାରୀଙ୍କି ବହୁ ପରିମାଣରେ ଟଙ୍କା ଗଣିବା ସଙ୍ଗତ କି ?

'ବେଙ୍ଗ ବୋଲେ ବେଙ୍ଗୁଲି ଲୋ ପୃଥ୍ୱୀ ଷଣଷଣିକେ ଅଛି'; ବର୍ତ୍ତମାନ ରାଜନୀତି କ୍ଷେତ୍ରରେ ଯେପରି ଅବୈଧାନିକ ପ୍ରଥା ଚଳୁଛି ସେପରି ହେଲେ ମଧ୍ୟ 'ଘୋଡ଼ା ଛଟଙ୍କା ଦାନା ନଟଙ୍କା' ପରି ଘଟିବଇ ଘଟିବ । ଅବୈଧାନିକ କାର୍ଯ୍ୟକୁ ଅନୁସନ୍ଧାନ କରାଯାଉ । ଉପରୋକ୍ତ ମଠ ମନ୍ଦିରାଦି କାର୍ଯ୍ୟର ମୁହିଁ ତ ଅସଂଖ୍ୟ, ପୁଣି ସେ ଖୋଲା । ବିଶେଷତଃ ଧୋବଳଠକ ମାନେଇ ବିଧର୍ମୀମୂଳକ ଶିକ୍ଷିତ । ଏଣୁ ଅନାଚନ ମନ୍ଦିର ବା ପୀଠକୁ ସାହାଯ୍ୟ ପ୍ରଥା ତ ଦେଖା ଶୁଣା ନାହିଁ । ( ଏ ସବୁର ପ୍ରତିକାର ନିବେଦନ ପୁସ୍ତକାନ୍ତର୍ଗତ ଉପାସନା ଓ ଦେବସ୍ୱ ପରିଚ୍ଛେଦରେ ଦ୍ରଷ୍ଟବ୍ୟ) । ଏ ସବୁ କାର୍ଯ୍ୟ ବା ଅବୈଧାନିକ କାର୍ଯ୍ୟରେ ଉତ୍ତମ ଲୋକଙ୍କୁ

ବଳେ ଚୁଞ୍ଜିଲେ ଅଧିକାଂଶ ପଶନ୍ତି ନାହିଁ । କିନ୍ତୁ କେତେକ ବହୁବ୍ୟୟ, ସୁପାରସ ଓ ନାନାପ୍ରକାର ଗୃଢ଼ ବିନତ ଏବଂ କପଟ ଷଡ଼ଯନ୍ତଦ୍ୱାରା ପଶିବାର ଯାହା ଦେଖାଯାଏ, ତାହାର ଭିତର ମର୍ମକୁ ଅନୁସନ୍ଧାନ କରିପାଉ ।

## ପୀଠାଧୀଶ

ଗୃହସ୍ଥାଶ୍ରମତ୍ୟାଗୀ ପୀଠାଧୀଶ ପ୍ରଭୃତି ଦେବସ୍ୱାଦ ସମ୍ପତ୍ତିକି ଦେବସେବାଦି ସମୁପଯୁକ୍ତ ସଦ୍‌ବ୍ୟୟ ପରିବର୍ତ୍ତେ ଯଦି ବିଭିନ୍ନ ଇନ୍ଦ୍ରିୟଲାଳସାରେ ଅପବ୍ୟୟ କରନ୍ତି, ତେବେ ସେମାନଙ୍କର ନର୍କଗତି ତ ନିଶ୍ଚୟ । ଯତଃ "ଅତୋଭ୍ରଷ୍ଟସ୍ତତୋ ଭ୍ରଷ୍ଟଃ" । ସେ ଯେତେ ଅନ୍ୟାୟ ବା ପାପକାର୍ଯ୍ୟ କରି ଛପାଇଲେହେଁ ଅନ୍ୟାନ୍ୟମାନେ କାନାକାନି ଭାବରେ ତାହା ସବୁ ବରାବର ଜାଣନ୍ତି; କିନ୍ତୁ ମୋହମତରେ ପ୍ରକାଶ କରନ୍ତି ନାହିଁ । ବ୍ୟକ୍ତି ବିଶେଷ ସମୟକ୍ରମେ ସର୍ବଜ ଉକ୍ତିମ ବଳାନ୍ତି ।

ଆଦିତ୍ୟଚନ୍ଦ୍ରାବନିଳୋଽନଳଶ୍ଚ ଦ୍ୟୌର୍ଭୂମିରାପୋ ହୃଦୟଂ ଯମଶ୍ଚ ।
ଅହଶ୍ଚ ରାତ୍ରିଶ୍ଚ ଉଭେ ଚ ସନ୍ଧ୍ୟେ ଧର୍ମଶ୍ଚ ଜାନାତି ନରସ୍ୟ ବୃତ୍ତଂ ॥

ଜନନ ମରଣାଦି ତ୍ରିତାପାନ୍ୱିତ ଓ ପଞ୍ଚକ୍ଲେଶାତ୍ମକ ମୋହମୟ ଦୁଃଖଜନକ ସଂସାରରୁ ଉଦ୍ଧାରାଭିଳାଷୀ ଗୃହସ୍ଥାଶ୍ରମ-ତ୍ୟାଗୀମାନଙ୍କ ମଧ୍ୟରୁ କେତେକ ଗୁପ୍ତଭାବେ କୁତ୍ସିତ ଇନ୍ଦ୍ରିୟ ଲାଳସାରେ ରତ ଥାଇପାରନ୍ତି । ପୁଣି କେହି କେହି ସନାତନ ଧର୍ମଦ୍ୱେଷୀ ମୃତ୍ୟୁଭୟ ଦର୍ଶକଙ୍କ ମିଥ୍ୟା କୁହୁକୋପଦେଶରେ ସ୍ୱାସ୍ଥ୍ୟ ବାହାନାରେ ବିପରୀତାତ୍ମକ କୁତ୍ସିତ କ୍ରିୟା କରିବାର ମଧ୍ୟ ଅସମ୍ଭବ ନୁହେ । ସେ ଯେ ଚିରନର୍କଭୋଗକୁ ପଥ ପରିଷ୍କାର କଲେ, ତାହା ଅପେକ୍ଷା ସ୍ୱଧର୍ମରେ ସଂଯତ ରହି ମରିଯାଇଥିଲେ, ଜଗତ କଣ ଅଶେଇ ହୋଇ ପଡ଼ିଯାଇଥାନ୍ତା ? ବିଶେଷତଃ ସେ କି ସଦ୍‌ଗତି ଲାଭ ନ ଥାନ୍ତେ ! ଜ୍ଞାନେନ୍ଦ୍ରିୟ-ମାନଙ୍କୁ ସଂଯତ କରି କର୍ମେନ୍ଦ୍ରିୟଙ୍କଦ୍ୱାରା ଯଥୋପଯୁକ୍ତ ଇନ୍ଦ୍ରିୟ-

ଭୋଗ୍ୟ ବିଷୟ ଭୋଗ କରାଯାଇପାରେ । କେତେକ ସାଂସାରିକ ବିଷୟ କାର୍ଯ୍ୟ ଓ ପରାନିଷ୍ଟକର ପାପ ଅନ୍ୟଦ୍ୱାରା ସାଧନ କରାଯାଇ ପାରେ । ନିଜର ଯଥୋପଯୁକ୍ତ ଇନ୍ଦ୍ରିୟଙ୍କଦ୍ୱାରା ଭୌତିକ ବିଷୟ ସାଧନ ଓ ଭୋଗ ଏବଂ ଭଗବାନଙ୍କପ୍ରତି ଅଭିଳାଷାକର୍ଷଣ ହୋଇଥାଏ । ଅନ୍ୟଦ୍ୱାରା ହୋଇ ନ ପାରେ । ଦେଶକାଳପାତ୍ର ନେଇ କେବଳ ବୈଦିକ ସକାମକର୍ମ ଅନ୍ୟଦ୍ୱାରା ସାଧନ ହୋଇପାରେ ମାତ୍ର; କିନ୍ତୁ ଭଗବତ୍‌ପ୍ରାପ୍ତି ନିଜ ସ୍ୱସାଧନ ବ୍ୟତୀତ ଅନ୍ୟଦ୍ୱାରା କଦାପି ହୋଇ ନ ପାରେ ।

ମଠାଧୀଶ ବା ବୈଷ୍ଣବମାନେ ଉତ୍ତରାଧିକାରୀ ହୋଇ ସମ୍ପତ୍ତି ଭୋଗ କରିବାକୁ ସ୍ୱ-ସମ୍ପ୍ରଦାୟ ଗୃହସ୍ଥାଶ୍ରମୀ ବା ଅନ୍ୟାନ୍ୟ ବର୍ଣ୍ଣରୁ ଶିଷ୍ୟ ବା ଚେଲା ଗ୍ରହଣ କରୁଥିଲେହେଁ ଅଧିକାଂଶ ବ୍ରାହ୍ମଣ ବର୍ଣ୍ଣରୁ ଗ୍ରହଣ କରିଥାନ୍ତି । କିନ୍ତୁ ସାମ୍ପ୍ରଦାୟିକ ଭାବ ନେଇ ନିଜ ନିଜ ସମ୍ପ୍ରଦା ମଧ୍ୟରେ ସବିଶେଷ ମମତା ସତ୍ତ୍ୱେଓ କେତେକଙ୍କର ବ୍ରାହ୍ମଣ ବର୍ଣ୍ଣ ପ୍ରତି କଟାକ୍ଷ ବା ବେଖାତିର ଦେଖାଯାଏ । ବିଶେଷତଃ ବର୍ଣ୍ଣ-ଟେକ ରଖିଥିବା ନୈଷ୍ଠିକଙ୍କ ପ୍ରତି ବିଶେଷ ବେଖାତିର ଓ ବିଦ୍ୱେଷ ଦେଖା ଯାଇଥାଏ । ସେମାନଙ୍କର ହୃଦ୍‌ଗତ ଭାବ ଯେ ଶ୍ରେଷ୍ଠବର୍ଣ୍ଣ ଓ ବୟୋଧିକ ହେଲେହେଁ ତାଙ୍କୁ ସମସ୍ତେ ଗୁରୁମାନ୍ୟ କରନ୍ତୁ ଏବଂ ତାଙ୍କ ସଙ୍ଗତ ସିଦ୍ଧ ପଂକ୍ତିରେ ଖାନ୍ତୁ । କିନ୍ତୁ ଶରୀରାଭିମାନ ଥିବାତକ ତାଙ୍କର ସେମାନେ ଯେ ମାନନୀୟ ତାହା ବରାବର ଭୁଲିଯାଇଥାନ୍ତି । ଉଚ୍ଚସ୍ତର ବା ଶରୀରାଭିମାନ ପରେ ସେ ଅବଶ୍ୟ ସାଧାରଣଙ୍କର ପୂଜନୀୟ । ଆଉ କେତେକ ବୈଷମ ଅଛନ୍ତି, ସେ ଶୈବାଦ ସ୍ମାର୍ତ୍ତ-ଚିହ୍ନ ଦେଖିଲେ ତାଙ୍କ ଦେହ ଜଳିଉଠେ । କିନ୍ତୁ ସ୍ମାର୍ତ୍ତ ପରିପାଳକ ଯେ ବୈଷ୍ଣବାଦ ବା ପରମାର୍ଥ ବା ଅଦ୍ୱୈତ କିମ୍ବା ବିଶିଷ୍ଟାଦ୍ୱୈତମତ ତାହାର ମର୍ମ ତାଙ୍କୁ ଆଦୌ ଜଣା ନାହିଁ । ଆଉ କେତେକ ସନାତନୀ ବଂଶୀୟ କୌଣସି ବ୍ୟକ୍ତିବିଶେଷର

ସବିଶେଷ ଭୌତିକ ମାହାତ୍ମ୍ୟ ଅନୁମାନ କଲେ ବା ଦେଖିଲେ କିମ୍ବା ସେହି ଦଳର କାହାରଠାରୁ ତତୋଽଧିକ ଶୁଣି ତାଙ୍କୁ ସାକ୍ଷାତ୍ ଭଗବାନ୍ ବୋଲି ମନେକରି ଅତି ଦୃଷ୍ଟି କଟୁ ଆଚରଣ କରିଥାନ୍ତି ।

"ଏକମେବାଦ୍ୱିତୀୟଂ" । ସୃଷ୍ଟିକର୍ତ୍ତା ସୃଷ୍ଟି ସର୍ଜନ-ପାଳନ-ଧ୍ୱଂସ ପ୍ରକାଶେ ବା ସୃଷ୍ଟିଲୀଳା ବ୍ୟତିକ୍ରମର ନିବାରଣ ପାଇଁ ସବିଶେଷ ଗୁଣାତ୍ମକ ବିଭୂତି ବା ଐଶ୍ୱର୍ଯ୍ୟ କିମ୍ବା ମାଧୁର୍ଯ୍ୟ-ବିଗ୍ରହ ଧାରଣ କରି ସମୁପଯୁକ୍ତ କାର୍ଯ୍ୟ ସାଧନ କରିଥାନ୍ତି । ଏହା ତ ନିଷ୍ପୃହ କଥା । କିନ୍ତୁ କେତେକ ସାମ୍ପ୍ରଦାୟିକ ଯେ କୌଣସି ଅବତାର ବା ତତ୍ପ୍ରତିଷ୍ଠିତ ବିଗ୍ରହଙ୍କୁ ଏକମେବାଦ୍ୱିତୀୟଂ ମନେ-କରି ଉପାସନାଦି କରୁଥିଲେହେଁ ତନ୍ମଧ୍ୟରୁ କେତେକ ଅଜ୍ଞ ବା ଅଗଡ଼ଧତ୍ତୁ ଅନ୍ୟାନ୍ୟ ଅବତାର ଓ ତତ୍ପ୍ରତିଷ୍ଠିତ-ବିଗ୍ରହଙ୍କୁ ଅବମାନନା ଏବଂ ନିନ୍ଦା କରୁଥିବା ହିନ୍ଦୁଧର୍ମର ଅଧୋଗତିର କାରଣ ନୁହେ କି ? ଅତଃ ହିନ୍ଦୁଧର୍ମର ବିଭ୍ରାଟ ଘଟୁଛି । ତତଃ ବିଧର୍ମୀ-ଶିକ୍ଷିତ ଅବିଶ୍ୱାସୀ ବିଧର୍ମୀମାନେ ହେୟଜ୍ଞାନ କରି ନାନାପ୍ରକାର କୁତ୍ସା ରଚନା କରନ୍ତି । ଧିକ୍ ରେ ବିତଣ୍ଡାବାଦ ! ( ଗୁରୁ-ଶିଷ୍ୟ ତତ୍ତ୍ୱସଂହିତା ଦ୍ରଷ୍ଟବ୍ୟ ) । ସେ ଯାହାହେଉ, ଉପରୋକ୍ତ ଅଗଡ଼ଧତ୍ତୁମାନେ ବୋଲକ୍ଷାଣ୍ଡି ବା ନିମ୍ବଲୀ ଲତା ପରି ପଲ୍ଲବିତ । ଆଉ ଅନ୍ୟେତର ଯେଉଁମାନେ ଜାତିଭେଦାଦି ନ ମାନନ୍ତି ତାଙ୍କ କଥା ଛାଡ଼ । ଯେଉଁ ସାଧାରଣମାନେ ମାନନ୍ତି ତାଙ୍କ ମଧ୍ୟରୁ କେତେକଙ୍କର ମନୋଗତ ଭାବ ନିଜ ବ୍ୟବହାର୍ଯ୍ୟ କାର୍ଯ୍ୟ ବ୍ରାହ୍ମଣ ପକ୍ଷରେ ଅକରଣୀୟ ହେଲେହେଁ ତାଙ୍କ ପକ୍ଷରେ କରନ୍ତୁ । ବ୍ରାହ୍ମଣ ବର୍ଣ୍ଣ ପବିତ୍ର ରହିଲେ କି ଗୃହୀ କି ଗୃହ-ତ୍ୟାଗୀ ସମସ୍ତେ ଯେ ଉତ୍ତରୋତ୍ତର ପବିତ୍ର ରହିବେ ଏବଂ ତାଙ୍କଦ୍ୱାରା ନିଜର ପିତୃକ୍ରିୟାଦି ଓ ଇଷ୍ଟଦେବତାନୁଷ୍ଠାନାଦି କର୍ମ ଏବଂ ତାଙ୍କ ସିଦ୍ଧ-ପକ୍ୱାନ୍ନ ଯେ ଇଷ୍ଟଦେବତାଙ୍କର ନୈବେଦ୍ୟ-

ଯୋଗ୍ୟ ଓ ନିଜର ଗ୍ରହଣୀୟ ତାହା ଭାବପାରନ୍ତ ନାହିଁ । ସୁତରାଂ ବ୍ରାହ୍ମଣ ବର୍ଣ୍ଣପ୍ରତି ଜାଗ୍ରତ ରହିବା ଏବଂ ସେ ବିପକ୍ଷଗାମୀ ହେଲେ ପାରୁପର୍ଯ୍ୟନ୍ତ ଯତ୍ନଦ୍ୱାରା ସତ୍‌ପଥରେ ରଖାଇବା ହିନ୍ଦୁମାନଙ୍କର ସମସ୍ତଙ୍କର ଯଥାସମ୍ଭବ କର୍ତ୍ତବ୍ୟ । ବିଶେଷତଃ ପୀଠାଧୀଶମାନେ ପୀଠର ନିୟମାନୁସାରେ ସମ୍ମତ ପବିତ୍ର ଅହାର ବିହାରାଦିଦ୍ୱାରା ଯଦି ସଂଯତ ରହନ୍ତେ ତେବେ ଜଗତରେ ତାଙ୍କର କଣ୍ଟ ଅସାଧ ରହନ୍ତା କି ? ସଂପ୍ରଦା ଦୁର୍ନାମ ନେଇ କେତେକ ସମ୍ପ୍ରଥାନୁବର୍ତ୍ତୀ ନୈଷ୍ଠିକମାନେ ଉପରୋକ୍ତ ବ୍ୟତିକ୍ରମ ଦେଖି ସନ୍ତପ୍ତ ହେଉଥିବାର ମଧ୍ୟ ଅନୁମାନ ହୁଏ । କେତେକ ସନାତନଦ୍ୱେଷୀ ଦଳଙ୍କୁ ତାଲୋପମ ବା ସାଂସାରିକ ବିଷୟ ନେଇ ବା ନିଜେ ଲଗାଇଦେଇ ସମସ୍ତଙ୍କ ନାମରେ ଦୁର୍ନାମ ରଚନା କରିବାର ଜଣାଯାଏ ।

### ଶୈବାଦି ମତ ମାହାତ୍ମ୍ୟ

'ସମସ୍ତ ଶ୍ରୁତି-ସ୍ମୃତି-ପୁରାଣାଦି ମହାଭାରତ, ରାମାୟଣ ପ୍ରଭୃତିରେ ଏବଂ ସମସ୍ତ ଧର୍ମଶାସ୍ତ୍ରର ସଂକ୍ଷେପ-ତତ୍ତ୍ୱ ଓ ସବିଶେଷ କୃଷ୍ଣଲୀଳାତ୍ମକ ନିର୍ମଳଭକ୍ତି ସମ୍ବଳିତ ଶ୍ରୀମଦ୍ଭାଗବତାଦି ସମସ୍ତ ଗ୍ରନ୍ଥରେ ଅନିର୍ଦ୍ଦେଶ୍ୟ ପରାତ୍ପର ପରଂବ୍ରହ୍ମଙ୍କର ଲୀଳାମୟ ତ୍ରିଗୁଣାତ୍ମକ ମୂର୍ତ୍ତି ବ୍ରହ୍ମା-ବିଷ୍ଣୁ-ଶିବ ଏକ ବୋଲି ନିରୂପଣ ହୋଇଛନ୍ତି । ଏମାନଙ୍କ ମଧ୍ୟରେ ସବିଶେଷ ଲୀଳା ନେଇ ସମୟ-କ୍ରମେ ସାମାନ୍ୟ ମନୋମାଳିନ୍ୟ ଘଟିଥିଲେହେଁ ପରସ୍ପର ପରସ୍ପରଙ୍କୁ ମାନ୍ୟ ଏବଂ ଆରାଧନା କରିବାର ଉଲ୍ଲେଖ ଅଛି । ସବିଶେଷ ଲୀଳାବତାର ରାମ ଓ କୃଷ୍ଣ ଆଉ ଏହାଙ୍କର ଗୁରୁପମ ବଶିଷ୍ଠ, ବ୍ୟାସ,ନାରଦାଦି ସମସ୍ତ ଯୋଗୀ,ଋଷି,ସିଦ୍ଧ,ଗନ୍ଧର୍ବ, ଇନ୍ଦ୍ରାଦି ଦେବତାମାନେ ସର୍ବଶକ୍ତିମାନ୍ ଜଗଦ୍‌ଗୁରୁ ଶିବଙ୍କୁ ଗୁରୁଜ୍ଞାନରେ ଆରାଧନା କରିଥାନ୍ତି । ବିଷ୍ଣୁଙ୍କ ଦଶାବତାରାନ୍ତର୍ଗତ ଷଷ୍ଠାବତାର ପର୍ଶୁରାମ ଶିବଙ୍କୁ ଏକମାତ୍ର ଗୁରୁଜ୍ଞାନରେ ଆରାଧନା କରୁଥିଲେ । ରୁଦ୍ରାଂଶ ଦୁର୍ବାସାଙ୍କ ସହଧର୍ମିଣୀ ରୁକ୍ମିଣୀଙ୍କ ସହ କୃଷ୍ଣ ଦୃଢ଼ଭକ୍ତ

ସହକାରେ ଆରାଧନା ଓ ସେବା କର, ତାଙ୍କଠାରୁ ଅତି କନ୍ଦର୍ପ ଲାଞ୍ଛନା ସହି ଏବଂ ଯଦୃଚ୍ଛୋନାସ୍ତି ବିଶଙ୍କଠିଆ ଶାସ୍ତ୍ରକ ପୀଡ଼ା ଲଭିଲେହେଁ ବିମନ ନୋହି ଇପ୍ସିତ ଫଳ ଲଭିଥିଲେ । (ମହାଭାରତ ଶାନ୍ତିପର୍ବ ଦ୍ରଷ୍ଟବ୍ୟ ) । ସବିଶେଷ ଲୀଳାବତାର ରାମ ଓ କୃଷ୍ଣ ଦୁଃସାଧ୍ୟ କାର୍ଯ୍ୟ ସାଧନ ସକାଶେ ଶିବ ଓ ଦୁର୍ଗାଙ୍କୁ ଆରାଧନା କରି ତାଙ୍କ ସାହାଯ୍ୟରେ ସାଧନ କରିଥିଲେ । ଗୋପ-ଗୋପାଙ୍ଗନାମାନେ ଉମା-ମହେଶ୍ୱରଙ୍କୁ ଆରାଧନା କରି କୃଷ୍ଣଙ୍କୁ ଲଭିଥିଲେ । ସ୍ୟମନ୍ତକାପବାଦ ନିବାରଣାର୍ଥେ କୃଷ୍ଣ ଜାମ୍ବବ ସହ ଯୁଦ୍ଧ-ନିର୍ବନ୍ଧନ ହେତୁ ବହୁକାଳ ଅଦୃଶ୍ୟ ହେବାରୁ ଯଦୁବଂଶୀୟ ପ୍ରଭୃତି ଅତି ଆତୁର ହୋଇ ଭକ୍ତିସହକାରେ ଶିବ-ଦୁର୍ଗାଙ୍କୁ ଆରାଧନାଦ୍ୱାରା ବର ପାଇ କୃଷ୍ଣଙ୍କୁ ଦେଖିଥିଲେ । ଆଦ୍ୟଶକ୍ତି ଓ ଶିବଙ୍କ ଉପାସନା ବ୍ୟତୀତ ବିଷ୍ଣୁଙ୍କ ଉପାସନା ବା ତାଙ୍କୁ ପାଇବା ଅର୍ଥାତ୍ ଜନନ ମରଣାତ୍ମକ-ସଂସାରରୁ ଉଦ୍ଧାର ମିଳି ନ ପାରେ । ସ୍ୱୟଂ କୃଷ୍ଣ କହିଛନ୍ତି :—

ମଦ୍ଭକ୍ତଃ ଶଙ୍କରଦ୍ୱେଷୀ ମଦ୍ଦ୍ୱେଷୀ ଶଙ୍କରପ୍ରିୟଃ ।
ଉଭୌ ତୌ ନରକଂ ଯାତୋ ଯାବଚ୍ଚନ୍ଦ୍ରଦିବାକରୌ ॥

ଅତଃ ବର୍ଣ୍ଣଗୁରୁ ଧର୍ମନେତା ବ୍ରାହ୍ମଣମାନେ ପ୍ରତ୍ୟହ ପଞ୍ଚଦେବତାଙ୍କୁ ଉପାସନା କଲେହେଁ ଶୈବ ଓ ଶାକ୍ତ ବୋଲନ୍ତି । "ଶୈବଶାକ୍ତା ଦ୍ୱିଜାଃ ପ୍ରୋକ୍ତାଃ ।" ଶ୍ରୀମଦ୍ଭାଗବତାଦି ସମସ୍ତ ଶାସ୍ତ୍ରରେ ଏବଂ ପଞ୍ଚମବେଦ ଅଷ୍ଟାଦଶ ପର୍ବାତ୍ମକ ମହାଭାରତା-ନ୍ତର୍ଗତ ଶ୍ରେଷ୍ଠ ଅନୁଶାସନ ପର୍ବରେ ମହାତ୍ମା ଭୀଷ୍ମାଦି ପାଣ୍ଡବ ଏବଂ ସମସ୍ତ ଯୋଗୀ, ଋଷି, ସିଦ୍ଧ ଓ ରାଜା, ମହାରାଜାଦି ଭକ୍ତମାନଙ୍କ ସମକ୍ଷରେ ଭଗବାନ୍ ସ୍ୱୟଂ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ଶିବଙ୍କ ତତ୍ତ୍ୱ ଓ ମାହାତ୍ମ୍ୟ ପ୍ରଚ୍ଛନ୍ନ-ଭାବରେ ଯାହା ଯାହା କହିଛନ୍ତି ତାହା ସବୁ ଅନୁସନ୍ଧାନ କରିବା ସାଧୁ ଓ ଭକ୍ତମାନଙ୍କ ପକ୍ଷରେ ସର୍ବତୋ ଭାବେ ବିଧେୟ । ଶ୍ରୀକୃଷ୍ଣ ଉପମନ୍ୟୁଙ୍କ ଦୀକ୍ଷାବେ

ଛମାସ କଠୋର ଉପାସନା କରି ତାଙ୍କଠାରୁ ଷୋଡ଼ଶସଂଖ୍ୟକ ବର ଏବଂ ପାର୍ବତୀଙ୍କଠାରୁ ଷୋଡଶସଂଖ୍ୟକ ବର ପାଇ ଅଭିଷ୍ଟ ଫଳ ଏବଂ ଅସାଧ୍ୟ କାର୍ଯ୍ୟ ସାଧନ କରିଥିଲେ । ମଧ୍ୟ ମହାଭାରତ ଯୁଦ୍ଧବେଳେ କୃଷ୍ଣାର୍ଜୁନ ଶିବଙ୍କ ଉପାସନାଦ୍ୱାରା ତାଙ୍କ ସାହାଯ୍ୟରେ ଭାରତ ଯୁଦ୍ଧରେ ଜୟ କରିଥିଲେ । ( ଦ୍ରୋଣପର୍ବ ଦ୍ରଷ୍ଟବ୍ୟ ) ।

ପ୍ରଥମଯୁଗାବଧି ରାକ୍ଷସାସୁରମାନେ ସପୃଥାବଲମ୍ବୀ ଦେବତା ଓ ଶାନ୍ତିପ୍ରିୟ ମାନବମାନଙ୍କୁ ନାନାପ୍ରକାର ପୀଡ଼ିଲେ, ସେମାନେ ସମୁଚିତ ପ୍ରତୀକାରରେ ପରାସ୍ତ ହେଲେ ସୃଷ୍ଟିକର୍ତ୍ତାଙ୍କୁ ନିବେଦନ କରିଥାନ୍ତି । ସେ ଗୁଣାତ୍ମକ ଶରୀର ଧାରଣ କରି ବିପ୍ଲବିମାନଙ୍କୁ ଧ୍ୱଂସ ଓ ସବିଶେଷଙ୍କୁ ପୁଣ୍ୟଭୂମି ଭାରତବର୍ଷରୁ ବହିର୍ଗତ କରି ସନାତନ ଧର୍ମ ଓ ଦେବତାଦି ବିଶିଷ୍ଟ ମାନବମାନଙ୍କୁ ରକ୍ଷା କରିଥାନ୍ତି ।

ଯଦା ଯଦା ହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ ।
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ॥
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ ।
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ॥ [ଗୀତା

ଅତଃ କଳିଯୁଗରେ ସନାତନ ଧର୍ମ ପ୍ରତି ବାଧା ଘଟନ୍ତେ; "ଶଙ୍କରଃ ଶଙ୍କରଃ ସାକ୍ଷାତ୍" ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଆବିର୍ଭୂତ ହୋଇ ହିନ୍ଦୁଧର୍ମ ଲୁପ୍ତପ୍ରାୟ ହେବା ସମୟେ ନାସ୍ତିକମାନଙ୍କୁ ପରାସ୍ତ ଓ ଦୂରୀଭୂତ କରି ସନାତନଧର୍ମର ମୂଳଭିତ୍ତି ସ୍ୱରୂପ ଗଣେଶ-ନାରାୟଣ-ରୁଦ୍ର-ଦୁର୍ଗା ଭାସ୍କର ପଞ୍ଚଦେବତାଙ୍କର ଅର୍ଚ୍ଚନାଦି ଉପାସନା ବିଧି ବାନ୍ଧି ଦେଇଥିଲେହେଁ ବିଶେଷତଃ ଶୈବ ଓ ଶାକ୍ତ ମତରେ ସମସ୍ତଙ୍କୁ ଦୀକ୍ଷିତ କରାଇଥିଲେ । ସୁତରାଂ ପ୍ରତି ଗ୍ରାମରେ ଶିବଲିଙ୍ଗ ଏବଂ ଗ୍ରାମଦେବତୀ ସ୍ଥାପନା ଓ ଉପାସନା ହେଉଛି ତାହାର ଜ୍ୱଳନ୍ତ

ବା ପ୍ରତ୍ୟକ୍ଷ ପ୍ରମାଣ । ତଦନୁଗତ ରାମାନୁଜ ପ୍ରଭୃତି ଓ ଭକ୍ତାବତାର ଚୈତନ୍ୟ ମଧ୍ଯ ଶୈବ ଗୁରୁ ଏବଂ ଶିବୋପାସନାରୁ ରାମ ଓ କୃଷ୍ଣଙ୍କ ଭକ୍ତି ଲଭି ସବିଶେଷ ମତ ପ୍ରଚାର କରିଥିଲେ । କୌଣସି କୌଣସି ଶାସ୍ତ୍ର ବା ଦେବତାଙ୍କର ସର୍ବଶ୍ରେଷ୍ଠତ୍ୱ ବା "ଏକମେବାଦ୍ୱିତୀୟଂ" ନିର୍ଦ୍ଦେଶ ଯାହା ଦେଖାଯାଏ, ତାହାର ନିର୍ଯ୍ୟାସ ହେଉଛି ତତ୍ପ୍ରତି ଶ୍ରଦ୍ଧା ଦୃଢ଼ିଭୂତ ପାଇଁ । ଉପରୋକ୍ତ ବା ଅନ୍ୟାନ୍ୟ ପ୍ରଚାରକମାନଙ୍କର ଅନୁଗତମାନେ ସେ ମତର କେତେକ ବ୍ୟତକ୍ରମ କରିଛନ୍ତି ।

ସ୍ଥଳବିଶେଷରେ କେହି କେହି ଗୁଣାତ୍ମକ ସାକାରୋପାସିକ ଭକ୍ତ ସେ ତିନିଙ୍କ ମଧ୍ଯରୁ କାହାର କାହାରିକି ଓ ଦୁର୍ଗା ପ୍ରଭୃତିଙ୍କୁ ତ୍ରିଗୁଣାତୀତ ପରାତ୍ପର "ଏକମେବାଦ୍ୱିତୀୟଂ ପରଂବ୍ରହ୍ମ" ବୋଲି ସ୍ତବ କଲାବେଳେ ତଦ୍‌ଗତ ହୋଇ ନିଜକୁ ଏବଂ ଅନ୍ୟାନ୍ୟଙ୍କୁ ଅସ୍ତିତ୍ୱହୀନ ବୋଲି କହିଥିଲେହେଁ ତାହା ସାଧାରଣ ପକ୍ଷରେ ଅନୁକରଣୀୟ ନୁହେ । ଯତଃ—ଅସ୍ମାପରଭେଦୀ ପକ୍ଷରେ ସଗୁଣ-ନିଗୁ ଣ ଏକ ହୋଇ ନ ପାରେ । କୌଣସି କୌଣସି ଶାସ୍ତ୍ର ବା ଦେବତାଙ୍କର ସର୍ବଶ୍ରେଷ୍ଠତ୍ୱ ଯାହା ଦେଖା ଯାଇଥାଏ ତାହାର ନିର୍ଯ୍ୟାସ ହେଉଛି ତତ୍ପ୍ରତି ଶ୍ରଦ୍ଧା ଦୃଢ଼ିଭୂତ ପାଇଁ ମାତ୍ର । ଏହା ନିଶ୍ଚୟ । ବିଶେଷତଃ ଗୃହସ୍ଥାଶ୍ରମୀ ପକ୍ଷରେ ସ୍ମୃତି-ପୁରାଣୋକ୍ତ ସାମ୍ୱତ୍ସରିକ ସମସ୍ତ ପର୍ବପର୍ବାଣି ଓ ଉପାସନାଦି ଅର୍ଚ୍ଚନା ଅଧିକାଂଶ ଶିବ ଦୁର୍ଗାଙ୍କର ନୁହେ କି ? "ଅଲମତିବିସ୍ତରେଣ ।"

ସେ ଯାହା ହେଉ, ଏ ସମସ୍ତଙ୍କ ମତ ବିରୋଧୀ କିନ୍ତୁ ଏକରୀତ କେତେକ ଅଦୂରଦର୍ଶୀ ଅହଂମନ୍ୟ ଧାର୍ମିକଙ୍କ ମତାନୁସାରେ ତଦନୁଗତ ଫିଟିକିରିଆମାନେ ଶିବ ଓ ଦୁର୍ଗାଦିଙ୍କି ଏବଂ ତଦାରାଧକଙ୍କୁ ଅବମାନନା କରିବାର ମଧ୍ଯ ଦେଖାଯାଏ । ସବିଶେଷ ସମ୍ପ୍ରଦାରେ କେତେକ ଶାସ୍ତ୍ରଜ୍ଞ ଓ ସଦ୍‌ବିବେକୀ

ଥିଲେହେଁ ଅହଙ୍କାରାତ୍ମକ ସଂସର୍ଗରୁ ଚୁପ୍ ରହି ସେହି ମତରେ ମଇ ଦେଇଥାନ୍ତି । ସ୍ଥଳବିଶେଷରେ କେତେକ କେତେକଙ୍କୁ ଚତୁରତା ଓ ଧନ ବଳରେ ମଧ୍ୟ ଭୁଲାଇଥାନ୍ତି । ଲୋପୋନ୍ମୁଖ ହିନ୍ଦୁଧର୍ମକୁ ଐଶ୍ୱରିକ ଶକ୍ତିଦ୍ୱାରା ସୁନ୍ଦରତମ ଓ ସଦନୁଷ୍ଠାନ ପ୍ରଭାବରେ ରକ୍ଷା କରିଥିବା ଶଙ୍କରାଚାର୍ଯ୍ୟଙ୍କ ମତକୁ ଯେଉଁ ନୈଷ୍ଠିକମାନେ ବ୍ୟତିକ୍ରମ କରି ଚେଉଁଛନ୍ତି, ସେମାନେ ଯେ କେଡ଼େ ଭୁଲ କରୁଛନ୍ତି ଭାବିଲେ କ୍ଷୋଭ ଆସେ । ହିନ୍ଦୁଧର୍ମା-ବଲମ୍ବିମାନେ ପ୍ରଥମତଃ ବିଦ୍ୟାରମ୍ଭ ସମୟେ ଗଣେଶ, ସରସ୍ୱତୀ, ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ଅର୍ଚ୍ଚନାଦି କରିଥାନ୍ତି । ଆଉ ପ୍ରତ୍ୟେକ ସଂସ୍କାର ସମୟେ ପ୍ରାୟ ସମସ୍ତ ଦେବ ଦେବୀଙ୍କୁ ଆବାହନାର୍ଚ୍ଚନାଦି କରିଥାନ୍ତି । ପରେ ଯେଉଁମାନେ ତାଙ୍କଠାରେ ଭେଦ ବୁଦ୍ଧି କରନ୍ତି, ସେ ବାହ୍ୟ-ଚତୁରବେତ୍ତା ହେଲେହେଁ ବିଦ୍ୱାନ ବା ଜ୍ଞାନୀ ହୋଇ ନ ପାରନ୍ତି । ହେ ବିଶିଷ୍ଟ ସାମ୍ପ୍ରଦାୟିକମାନେ ! ମୋ କଥାକୁ ହେୟ ଜ୍ଞାନ କରିପାର; କିନ୍ତୁ ଆର୍ଯ୍ୟଭୂମି ଭାରତବର୍ଷର ସ୍ଥଳ ବିଶେଷରେ ଶ୍ରୁତି-ସ୍ମୃତି, ପ୍ରସିଦ୍ଧ ପୁରାଣ ଓ ସତ୍ ଶାସ୍ତ୍ରବେତ୍ତା ଏବଂ ସଦନୁଷ୍ଠାନ ନିରତ ସତ୍ତ୍ୱଜ୍ଞମାନଙ୍କ ସଦାଲାପଦ୍ୱାରା ପ୍ରକୃତ ମତ ନିରୂପଣ କରିବାକୁ ଅନୁରୋଧ କରେ । ଭ୍ରମ ସବୁରି ଅଛି । ଅହଂମନ୍ୟେ ବା ସଂସର୍ଗ ମୋହ ମତରେ କମ୍ବା କଷ୍ଟୁଦନରୁ ଚଳି ଆସିଥିବା ମତର ସଂଶୋଧନରେ ମାନହାନି ନାହିଁ । ବିଶେଷତଃ ପ୍ରଚଳିତ ମତଭେଦ ବା ସାମ୍ପ୍ରଦାୟିକ ଭାବ ହେତୁ ସନାତନଧର୍ମ-ବିରୋଧୀ ବିପ୍ଳବୀ ପ୍ରତାପଶାଳିମାନେ ସନାତନଧର୍ମ ଏବଂ ତଦନୁଷ୍ଠିତ ମଠ-ମନ୍ଦିରାଦିରେ ଅଧିକାର ଓ ବାଣ୍ଟ କରିବାକୁ ଉଦ୍ୟତ ହେଉଛନ୍ତି । ଯେପରି ବିଶିଷ୍ଟ ପ୍ରତିଭାଶାଳୀ-ଗୃଳିତ ଅନୁପମ ରାଜନୈତିକ କୌଶଳାତ୍ମକ ଭାରତର ଶକ୍ତିଶାଳୀ କଂଗ୍ରେସରେ ପରଂପରାଗତ ମତ ବିରୁଦ୍ଧ କେତେକ କ୍ରିୟାରେ

( ଗାନ୍ଧିଙ୍କ ଅନୁମତି ନ ଥିଲେହେଁ ) ତଦନୁଗତ କେତେକ ଅଦୂରଦର୍ଶୀମାନଙ୍କ ସନାତନଧର୍ମାତ୍ମକ ପରଂପରାଗତ କାର୍ଯ୍ୟର ବିରୋଧାଚରଣ ହେତୁ ସମୁଚିତ-କ୍ଷମତା ଲଭ ବା ସ୍ୱାଧୀନତା ପ୍ରାପ୍ତିରେ ଯେପରି କେତେକ ଭାରତୀୟଙ୍କଦ୍ୱାରା ଓ ଉପରୁ ମଧ୍ୟ ବିଭ୍ରାଟ ବା ବାଧା ଘଟୁଛି । ଅଧିକ ଅତ୍ୟନ୍ତ ଦୁଃଖର ବିଷୟ ଯେ ବର୍ତ୍ତମାନ ଜଗତରେ ନାନାପ୍ରକାର ବିପ୍ଳବର ସମ୍ଭାବନା ସ୍ଥଳେ କେତେକ ପ୍ରତିଭାଶାଳୀ ସନାତନ ବଂଶଧରମାନେ ଅନୁମାନିକ ଅନୋହତ ଐତିହାସିକମତକୁ ବ୍ୟଙ୍ଗାର୍ଥ କରି ନାନାପ୍ରକାର ପ୍ରହେଳିକା ବା ଉପନ୍ୟାସ ଛଳନାରେ ଲେଖି ସପ୍ରମାଣ ଶାସ୍ତ୍ର ବୋଲି ସମର୍ଥନ କରୁଛନ୍ତି । ଅଭି ସନାତନଧର୍ମ ଶାସ୍ତ୍ରୋକ୍ତ ସତ୍କ୍ରିୟାର ବିପରୀତ ମତ ଓ ଅଚରଣର ଅନୋହତ ଜଡ଼ ବିଜ୍ଞାନାତ୍ମକମତ ପ୍ରଚୁର କରୁଛନ୍ତି । ତଦ୍ଦ୍ୱାରା ହିନ୍ଦୁଧର୍ମ ବିଶ୍ୱାସ ପ୍ରତି ବାଧା ଘଟିବାର ସମ୍ଭାବନା । କିନ୍ତୁ ଶଙ୍କରାଚାର୍ଯ୍ୟଙ୍କ ପରି କିମ୍ବା ଭଗବାନ୍ ଗୁଣାବତାରଦ୍ୱାରା ଏହା ନିବାରଣ କରିବେକି କରିବେ । ସମ୍ପ୍ରଦାୟାନୁବର୍ତ୍ତୀ ସନାତନୀଙ୍କଦ୍ୱାରା ନୂତନ ପ୍ରକାର ଶାସନ ହେବା ନିଶ୍ଚୟ । ଅତଏବ ସାବଧାନ !

ଭାରତୀୟ ହିନ୍ଦୁରାଜା ଓ ପ୍ରତିଭାଶାଳୀ ଜ୍ଞାନନିଷ୍ଠ ଭକ୍ତ ଏବଂ ବିଶିଷ୍ଟ ବିତ୍ତଶାଳୀମାନଙ୍କ ମଠ-ମନ୍ଦିର ଦେବଦ୍ୱାଦ-ସମ୍ପତ୍ତି ଓ ସେବାପୂଜାଦି ଶୃଙ୍ଖଳାକୁ କେତେକ ବିପ୍ଳବୀ ବ୍ୟତିକ୍ରମ ମାତ୍ର କରିଥିଲେହେଁ ସମ୍ପତ୍ତି ଓ ସେବାଦିରେ ବ୍ୟତିକ୍ରମ କରି ନ ଥିଲେ । କିନ୍ତୁ ବର୍ତ୍ତମାନ ହିନ୍ଦୁ ବଂଶଧର ଅହଂମନ୍ୟ ଧାର୍ମିକମାନେ ନାମ ମାତ୍ରକ ବୃଥା କ୍ଷମତାର ହାର୍ଦ୍ଦୋଗନ୍ଧ ଅଘ୍ରାଣ କରି ସେ ସମ୍ପତ୍ତି ଓ ବିଧିଙ୍କ ଧ୍ୱଂସ ବିଧ୍ୱଂସ ଓ ବ୍ୟତିକ୍ରମ କରିବାକୁ ଯଥାସାଧ୍ୟ ଚେଷ୍ଟାରେ ମଜ୍ଜିଥିବାର ଦେଖି କ୍ଷୋଭ ଆସେ । 'କିସ ପୁଣି ଦେଖା ନ ଯାଏ ଯେତେବେ ଥାଇ ଜୀବନରେ ।

ବିଷମ-ସମସ୍ୟା ପୂରଣ ହେଲା ଏହିଠାବରେ' । ହିନ୍ଦୁରାଜ-ସମ୍ମତ କେତେକ ମଠ-ମନ୍ଦିରକୁ ବର୍ତ୍ତମାନ ବିଧର୍ମୀ-ରାଜଶକ୍ତି ମଧ୍ୟ ଗଣ୍ଡି ନାମରେ ଟଙ୍କା ସାହାଯ୍ୟ କରୁଛନ୍ତି । ଧନ୍ୟରେ ଆର୍ଯ୍ୟ ସନାତନ ବଂଶୋଦ୍ଭବ ସୁଯୋଗ୍ୟ ପୁତ୍ର ଧନ୍ୟ ଧନ୍ୟ !

---

## ୯ । ପୁରୁଷୋତ୍ତମ ତତ୍ତ୍ୱ, ଆତ୍ମୋଦ୍ଧାର ମାର୍ଗ, ଦେବ-ବିଗ୍ରହ ମାହାତ୍ମ୍ୟ, ହରିଜନ ମନ୍ଦିର ପ୍ରବେଶାକ୍ଷେପ

ନିର୍ଗୁଣ ସାଧନାରେ ଏବଂ ସଗୁଣ ଉପାସନାଦ୍ୱାରେ ପରଂବ୍ରହ୍ମ ପ୍ରାପ୍ତ ହୋଇଥାନ୍ତି । ନିର୍ଗୁଣ-ସାଧନା ଅତି କଠିନ । ଯଥା—ଗୀତା

ଯେ ତ୍ୱକ୍ଷରମନିର୍ଦ୍ଦେଶ୍ୟମବ୍ୟକ୍ତଂ ପର୍ଯ୍ୟୁପାସତେ ।
ସର୍ବତ୍ରଗମଚିନ୍ତ୍ୟଞ୍ଚ କୂଟସ୍ଥମଚଳଂ ଧ୍ରୁବଂ । ଗୀ ଅଃ ୧୨ ।
ସଂନିୟମ୍ୟେନ୍ଦ୍ରିୟଗ୍ରାମଂ ସର୍ବତ୍ର ସମବୁଦ୍ଧୟଃ ।
ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ । ୪ ।
କ୍ଳେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାଂ ।
ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ । ୫ ।

ଭଗବାନ୍ କହୁଛନ୍ତି,—ଯେଉଁମାନେ ଅନିର୍ଦ୍ଦେଶ୍ୟ, ନିରାକାର, ସର୍ବବ୍ୟାପୀ, ଅଚିନ୍ତ୍ୟ, କୂଟସ୍ଥ, ଅଚଳ, ଧ୍ରୁବ ଓ ଅକ୍ଷର ନିର୍ଗୁଣ ପରଂବ୍ରହ୍ମ-ସାଧକ, ସେ ଇନ୍ଦ୍ରିୟସମୂହକୁ ଉତ୍ତମରୂପେ ସଂଯତ କରି ସମବୁଦ୍ଧି ଓ ସର୍ବପ୍ରାଣୀଙ୍କ ହିତ ସାଧନରେ ରତ ହୋଇ ଆମ୍ଭଙ୍କୁ ଅର୍ଥାତ୍ ପରଂବ୍ରହ୍ମଙ୍କୁ ପ୍ରାପ୍ତ ହୋଇଥାନ୍ତି । ନିର୍ଗୁଣ ବ୍ରହ୍ମରେ ଆସକ୍ତ-ଚିତ୍ତ ହେବାରୁ ସେମାନଙ୍କର କଷ୍ଟ ଅଧିକ ହୋଇଥାଏ । ଯତଃ ଦେହାଭିମାନି-ମାନେ ନିର୍ଗୁଣ ବିଷୟକ ନିଷ୍ଠା ଅତି କଷ୍ଟରେ ପ୍ରାପ୍ତ ହୁଅନ୍ତି । ( ନିର୍ଗୁଣ ସାଧନା ସୋପାନ 'ଗୁରୁ ଶିଷ୍ୟ ତତ୍ତ୍ୱ ସଂହିତା'ରେ ଦ୍ରଷ୍ଟବ୍ୟ ) ।

ସଗୁଣ ଉପାସନା; ଯଥା—ଯେଉଁମାନେ ସପୃଥରେ ରହି ପରଂପରାଗତ ବିଧି ଅନୁସାରେ ଚଳନ୍ତି; ଭଗବାନଙ୍କଠାରେ ଦୃଢ଼ ବିଶ୍ୱାସୀ ଓ ଶ୍ରଦ୍ଧାଳୁ, ସେମାନେ ବେଦୋକ୍ତ ବିଧି କ୍ରିୟାକଳାପ ଓ ସମୁଚିତ ଉପକରଣଦ୍ୱାରା ଦେଶ-କାଳ-ପାତ୍ରାନୁଯାୟୀ ସମୁଚିତ ନ୍ୟାସ ପ୍ରଭୃତି ବିଧିରେ ପ୍ରତିଷ୍ଠିତ ଭଗବାନଙ୍କର ଯେ କୌଣସି ସଗୁଣ-ବିଗ୍ରହଙ୍କର ଦର୍ଶନ ଓ ସେବା ଏବଂ ତାଙ୍କର ଅବତାର-ଲୀଳା ସ୍ମରଣ, ଶ୍ରବଣ, ନାମ କୀର୍ତ୍ତନାଦି ଅର୍ଚ୍ଚନାଦ୍ୱାରା କ୍ରମୋନ୍ନତ ଲଭି ସମୟାନୁସାରେ ଭଗବାନଙ୍କୁ ପାଇଥାନ୍ତି। ଏତଦ୍‌ବ୍ୟତୀତ ଏ ସବୁର ଅବିଶ୍ୱାସୀ ରାକ୍ଷସାସୁର ପ୍ରକୃତିକମାନେ ମ୍ଳେଚ୍ଛ ମଧ୍ୟରେ ଗଣ୍ୟ। ସୂର୍ଯ୍ୟକିରଣ ସର୍ବତ୍ର ପତିତ ହେଲେହେଁ ଦର୍ପଣାଦି ସବିଶେଷ ସ୍ୱଚ୍ଛ-ପଦାର୍ଥରେ ଯେପରି ସୂର୍ଯ୍ୟ ପ୍ରତିବିମ୍ବିତ ହୋଇ ଦେଖାଯାନ୍ତି, ସେହିପରି ପରଂବ୍ରହ୍ମ ସର୍ବତ୍ର ବିଦ୍ୟମାନେହିଁ ଦେଶ-କାଳ-ପାତ୍ର ନେଇ ସେହି ପରଂବ୍ରହ୍ମୋକ୍ତ ସବିଶେଷ ବୈଦିକ-ବିଧି-ପ୍ରତିଷ୍ଠିତ ବିଗ୍ରହରେ ସେ ଆବିର୍ଭାବ ହୋଇଥାନ୍ତି। ସବିଶେଷ ସାଧକ ନ୍ୟୂନାଧିକ ଭାବେ ସେ ବିଗ୍ରହରେ ଭଗବାନ୍ ବିଦ୍ୟମାନ ଥିବା ଅନୁଭବ କରିଥାନ୍ତି। ତମିର ରୋଗାକ୍ରାନ୍ତ ପରି ବ୍ୟତିକ୍ରମାତ୍ମକ ବ୍ୟକ୍ତି ପକ୍ଷରେ ତାହା ଅଦୃଶ୍ୟ ବା ଅଜ୍ଞାତ। (ସବିଶେଷ ବିଧି ଗୁରୁଶିଷ୍ୟ ତତ୍ତ୍ୱସଂହିତା ଓ ନିବେଦନ ପୁସ୍ତକରେ ଦ୍ରଷ୍ଟବ୍ୟ)

ଜନନ ମରଣାଦି ତ୍ରିତାପାନଳ-ସଂତପ୍ତ-ସଂସାରରୁ ଉଦ୍ଧାର ହୋଇ ସନାତନ ପରଂବ୍ରହ୍ମଙ୍କୁ ପ୍ରାପ୍ତ ହେବାପାଇଁ ଦୁଇଗୋଟି ମାର୍ଗ। ଯଥା—ସନାତନ ଧର୍ମ ଶାସ୍ତ୍ରୋକ୍ତ ସକାମ ସତ୍‌କ୍ରିୟା, ପରେ ସନ୍ନ୍ୟାସ ପୂର୍ବକ ନିଷ୍କାମ-କର୍ମାତ୍ମକ ଭକ୍ତିଦ୍ୱାରା ସଗୁଣ ପରଂବ୍ରହ୍ମଙ୍କଠାରେ ତଦ୍‌ଗତାନ୍ତଃକରଣ ହେଲେ ସେ ସ୍ନେହାନୁରାଗ ବଶବର୍ତ୍ତୀ ହୋଇ ମାୟାମୟ ସଂସାରରୁ ଉଦ୍ଧାର କରି ନିର୍ଗୁଣ ଚିଦ୍‌ଘନରେ ନିହିତ କରିଦିଅନ୍ତି। ସୃଷ୍ଟି ଲୀଳା

ବଜାୟ ରଖିବାରୁ ସେ ସଗୁଣୋପାସକ ସୃଷ୍ଟିକର୍ତ୍ତାଙ୍କର ପ୍ରଶଂସିତ । ଯଥା—ଗୀତା

"ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାରସାଗରାତ୍" ।

"ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ ।"

ଦ୍ୱିତୀୟ—ଉପରୋକ୍ତ ସଗୁଣୋପାସନାଦ୍ୱାରା ଏକନିଷ୍ଠ ସାଧକ ସଦ୍‌ଗୁରୂପଦେଶାନୁସାରେ ଯମ-ନିୟମ-ଆସନ-ପ୍ରାଣାୟାମ-ପ୍ରତ୍ୟାହାର-ଧାରଣା-ଧ୍ୟାନ-ସବିକଳ୍ପକ ସମାଧି ସାଧନାଦ୍ୱାରା ସେହି ତଦ୍ଧନରେ ମିଳିଯାଏ ।

"ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ ।" ଗୀତା

ସଗୁଣ ବ୍ରହ୍ମଙ୍କ କୃପାଦ୍ୱାରା, ପକ୍ଷାନ୍ତରେ ନିଜ ଶକ୍ତି ବଳରେ । ପ୍ରଭେଦ ଏତିକି ମାତ୍ର । ଅନ୍ୟାନ୍ୟ ସତ୍କର୍ମଦ୍ୱାରା ସ୍ୱର୍ଗାଦି ଊର୍ଦ୍ଧ୍ୱଲୋକ ଓ ଅସତ୍କର୍ମଦ୍ୱାରା ନର୍କାଦି ନିମ୍ନଲୋକ ଏବଂ ଉଭୟାତ୍ମକଦ୍ୱାରା ନ୍ୟୂନାଧିକ ମର୍ତ୍ତ୍ୟଲୋକ । "ପୁନରପି ଜନନଂ ପୁନରପି ମରଣଂ ପୁନରପି ଗର୍ଭନିବାସଂ" ନାରଦଃ ।

ନାଟକାନ୍ତର୍ଗତ ଅଭିନେତାମାନେ ଯଥୋପଯୁକ୍ତ ବେଶ-ଭୂଷା ଓ ଶିକ୍ଷା ନେଇ ରାଜା, ରାଣୀ, ମନ୍ତ୍ରୀ, କଟୁଆଳ, ପ୍ରହରୀ, ଚୋର, ଯୋଗୀ, ଋଷି, ପଣ୍ଡିତ, ମୂର୍ଖ, ପୁରୋହିତ, ବାରିକ, ନାୟକ, ବାଜାଦାର, ଭାଇ, ଭଉଣୀ, ପୁଅ, ଝିଅ, ବର, କନ୍ୟା, ଦେବ, ଦେବୀ ଇତ୍ୟାଦି ୨ ବେଶ-ଭୂଷାଦ୍ୱାରା ସମ୍ବନ୍ଧ ନେଇ ଓ ତଦନୁରୂପ ଲୀଳା ଦେଖାଇ ମଧ୍ୟେ ମଧ୍ୟେ ବେଶ ବଦଳାଇ ଅନ୍ୟପାଠଦ୍ୱାରା ସ୍ୱପ୍ନ ପରି ଦର୍ଶକମାନଙ୍କୁ ମୋହିତ କରିଥାନ୍ତି । ଶେଷରେ ବେଶ ଫିଙ୍ଗାଇଲେ ସେ ସବୁ ସମ୍ବନ୍ଧ ତୁଟିଯାଇ ଯେ ଯାହା ଥିଲି ସେ ତାହା ହୋଇଥାଏ । ସାଂସାରିକ ସମସ୍ତ କ୍ରିୟା ମଧ୍ୟ ଦୀର୍ଘ ସ୍ୱପ୍ନପରି, ଦେହାନ୍ତେ କେହି କାହାର ନୁହେ । ସଦସଦାତ୍ମକ କର୍ମାନୁସାରେ ଫଳ ଭୋଗ ମାତ୍ର । ଅକ୍ରୁର କହିଥିଲେ :— ଭାଃ ୧୦ମଃ ୪ ଅଃ

ଭଗବନ୍ ଜୀବଲୋକୋଽୟଂ ମୋହିତଂ ତବ ମାୟୟା ।
ଅହଂ ମମେତ୍ୟସଦ୍‌ଗ୍ରାହୋ ଭ୍ରାମ୍ୟତେ କର୍ମବର୍ତ୍ମସୁ । ୨୧ ।
ଅହଞ୍ଚାତ୍ମାତ୍ମଜାଗାରଦାରାର୍ଥସ୍ୱଜନାଦିଷୁ ।
ଭ୍ରମାମି ସ୍ୱପ୍ନକଳ୍ପେଷୁ ମୂଢ଼ଃ ସତ୍ୟଧିୟା ବିଭୋ ।୨୨।
ଇଚ୍ଛାଦ୍ୱେଷ ସମୁତ୍ଥେନ ଦ୍ୱନ୍ଦ୍ୱମୋହେନ ଭାରତ !
ସର୍ବଭୂତାନି ସଂମୋହଂ ସର୍ଗେ ଯାନ୍ତି ପରନ୍ତପ ।୨୭। ୭ଅ: ଗୀ:

ହେ ଭଗବନ୍ ! ଆପଣଙ୍କ ମାୟାଶକ୍ତିଦ୍ୱାରା ସମସ୍ତ ଲୋକେ ମୋହିତ ହୋଇ ଅହଂ ମମତାକୁ ଅକଲ୍ୟାଣକର ବୋଲି ବୁଝି ନ ପାରି ସର୍ବଦା କର୍ମପଥରେ ଭ୍ରମଣ କରୁଛନ୍ତି । ୨୧ । ମୂଢ଼ବୁଦ୍ଧି ମୁଁ ମଧ୍ୟ ଆପଣଙ୍କ ମାୟାରେ ମୁଗ୍ଧ ହୋଇ ନିଜର ଦେହ, ପୁତ୍ର, ଦାରା, ଅର୍ଥ ଓ ସ୍ୱଜନ ପ୍ରଭୃତିଙ୍କି ସତ୍ୟ ଭାବି ସ୍ୱପ୍ନଦୃଶ୍ୟ ପରି ମୋହିତ ହୋଇ ଭ୍ରମଣ କରୁଅଛି । ୨୨ । ସିଦ୍ଧ-ପୁରୁଷଙ୍କ ବ୍ୟତୀତ ମାୟାବଦ୍ଧ ମାନବମାନେ ସ୍ଥୂଳ-ଦେହ ବଦଳିଲେ ଜନ୍ମାନ୍ତର ବିଷୟ ସ୍ମରଣ ହୁଏ ନାହିଁ, ପ୍ରଭେଦ ଏତିକି ମାତ୍ର । ମହାଭାରତ ବନପର୍ବାନ୍ତର୍ଗତ; ଯୁଧିଷ୍ଠିର ଉବାଚ ।

ଅହନ୍ୟହନି ଭୂତାନି ଗଚ୍ଛନ୍ତି ଯମମନ୍ଦିରଂ ।
ଶେଷାଃ ସ୍ଥିରତ୍ୱମିଚ୍ଛନ୍ତି କିମାଶ୍ଚର୍ଯ୍ୟମତଃ ପରଂ ॥
ଆଶ୍ଚର୍ଯ୍ୟମୟଂ ହରେର୍ମାୟା ତ୍ରିଗୁଣାତ୍ମକ ରୂପିଣୀ ।
ମୁକ୍ତୋ ଯୋ ହି ନ ଚଳତି ବଦ୍ଧୋ ଧାବତି ଧାବତି ॥

ସେ ଯାହା ହେଉ, ଯେଉଁମାନଙ୍କର ଦେବତା ବିଗ୍ରହଙ୍କ ଠାରେ ବିଶ୍ୱାସ ନାହିଁ ତାଙ୍କ କଥା ଛାଡ଼ । ଯେଉଁମାନଙ୍କର ବିଶ୍ୱାସ ଅଛି, ଅତି ନୈଷ୍ଠିକ ଓ ସଦାଗ୍ରହୀ ଏବଂ ଦର୍ଶନ, ନମସ୍କାରାଦି ବରାବର କରନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ସମ୍ପ୍ରଯୁକ୍ତ ଦେବାଳୟମାନଙ୍କରେ ବିରାଜମାନ ଦେବତାମାନଙ୍କର ପାର୍ଶ୍ୱଦେବତା ଦର୍ଶନ, ସମ୍ପ୍ରଯୁକ୍ତ ପ୍ରଦକ୍ଷିଣାଦିରେ

ବ୍ୟତକ୍ରମ ଅନୁମାନ ହୁଏ । ( ଯେପରି କୌଣସି ରାଜାର ସାକ୍ଷାତ ସକାଶେ ପ୍ରହରୀ ପ୍ରଭୃତଙ୍କର ଅନୁମତ ଆବଶ୍ୟକ ) ତେଣୁ ଦେବାରାଧନା ଓ ଶାସ୍ତ୍ରର ବ୍ୟତକ୍ରମ ଘଟିଥାଏ ।

ଦେବ୍ୟା ଏକଂ ରବେଃ ସପ୍ତସ୍ତ୍ରିଣି କୁର୍ଯ୍ୟାତ୍ ବିନାୟୁକଂ ।
ଚତ୍ୱାରିଃ କେଶବସ୍ୟୈବ ଶିବସ୍ୟାର୍ଦ୍ଧପ୍ରଦକ୍ଷିଣଂ ॥

ପୁରୁଷୋତ୍ତମ ତତ୍ତ୍ୱ—କଳିଯୁଗରେ ସର୍ବଶ୍ରେଷ୍ଠ ସବିଧି କ୍ଷେତ୍ର ଶ୍ରୀପୁରୁଷୋତ୍ତମ ଧାମକୁ ସମୁପସ୍ଥିତ ବା ପ୍ରାୟ ସମସ୍ତ ହିନ୍ଦୁମାନେ ଯାଇଥାନ୍ତି ଏବଂ ରତ୍ନସିଂହାସନରେ ବିରାଜମାନ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରନ୍ତି; କିନ୍ତୁ ସେ କ୍ଷେତ୍ରର ମର୍ମ, ତୀର୍ଥସ୍ନାନାଦ ବିଧି, ପାର୍ଶ୍ୱଦେବତାଦ ଦର୍ଶନ ଏବଂ ଅଧିଷ୍ଠାତ ଦେବତାଙ୍କୁ କେତେକ ଜାଣନ୍ତି ନାହିଁ । ଯଥା ସ୍କନ୍ଦ ପୁରାଣେ :—

ସମୁଦ୍ରସ୍ୟୋତ୍ତରେ ତୀରେ ଶଙ୍ଖଚକ୍ରାଙ୍କିତଂ ହରେଃ ।
ପତିତପାବନଂ କ୍ଷେତ୍ରଂ ଧାମଂ ଶ୍ରୀପୁରୁଷୋତ୍ତମଂ ॥
ମର୍ତ୍ତ୍ୟବୈକୁଣ୍ଠ ଖ୍ୟାତଂ ସ୍ୟାତ୍ ନାସ୍ତି ବ୍ରହ୍ମାଣ୍ଡମଣ୍ଡଳେ ।
ସଦା ସର୍ବଦେବସିଦ୍ଧୈଃ ସମାଗମ ସୁପୂଜିତଂ ॥
ମଙ୍ଗଳା ବଟମୂଳେ ତୁ ପଶ୍ଚିମେ ବିମଳା ତଥା ।
ଶଙ୍ଖସ୍ୟ ପୂର୍ବଭାଗେ ଚ ସଂସ୍ଥିତା ସର୍ବମଙ୍ଗଳା ॥
ଅର୍ଦ୍ଧାଶନୀ ତଥା ଲମ୍ବା କୁବେରଦକ୍ଷିଣେ ସଂସ୍ଥିତା ।
କାଳରାତ୍ରିର୍ଦକ୍ଷିଣସ୍ୟାଂ ପୂର୍ବସ୍ୟାଂ ତୁ ମରୀଚିକା ॥
କାଳରାତ୍ର୍ୟାସ୍ତଥା ପଶ୍ଚାତ୍ ଚଣ୍ଡରୂପା ବ୍ୟବସ୍ଥିତା ।
କପାଳମୋଚନଂ ନାମ କ୍ଷେତ୍ରପାଳଂ ଯମେଶ୍ୱରଂ ।
ମାର୍କଣ୍ଡେୟଂ ତଥେଶାନଂ ବିଲ୍ୱେଶଂ ନୀଳକଣ୍ଠକଂ ।
ବଟମୂଳେ ବଟେଶଂ ଚ ଲକ୍ଷ୍ମୀନୃସିଂହୌ ମହେଶିତୁଃ ॥
ଲୋକନାଥଂ ସଦା ସେବ୍ୟଂ କ୍ଷେତ୍ରାଧିପଂ ଜଗଦ୍‌ଗୁରୁଂ ।
ଏତାନ ଦୃଷ୍ଟ୍ୱା ସ୍ପୃଷ୍ଟ୍ୱା ଚ ପୂଜୟିତ୍ୱା ବିମୁଚ୍ୟତେ ॥

ବଳଭଦ୍ରଂ ସୁଭଦ୍ରାଂ ଚ ଜଗନ୍ନାଥଂ ସୁଦର୍ଶନଂ ।
ସରସ୍ୱତୀଂ ମହାଲକ୍ଷ୍ମୀଂ ନୀଳମାଧବମେବ ଚ ।
ସପ୍ତାବରଣଚନ୍ଦ୍ରରୂପଂ ରତ୍ନସିଂହାସନସ୍ଥିତଂ ।

ରତ୍ନସିଂହାସନରେ ସପ୍ତାବରଣ ପରଂବ୍ରହ୍ମ ସପ୍ତମୂର୍ତ୍ତି ବିରାଜମାନ କରିଥିବା କେତେକ ଜାଣନ୍ତି ନାହିଁ । ନମସ୍କାର ଦର୍ଶନାଦି ତ ଦୂରର କଥା । ପ୍ରବେଶଦ୍ୱାର ଓ ନିରୂପିତ ପାର୍ଶ୍ୱଦେବତା ଏବଂ କ୍ଷେତ୍ରାଧିଷ୍ଠାତୃ ଦେବତାମାନଙ୍କ ବିଷୟ ପଚାରେ କିଏ ? ପୁରୁଷୋତ୍ତମ ହେଉଛି ମର୍ତ୍ତ୍ୟବୈକୁଣ୍ଠ । ବୈକୁଣ୍ଠ ସୁଖ ଓ ଶାନ୍ତି କେଉଁଠାରେ ଅନୁଭବ ହୋଇଥାଏ; ଅଧିକାଂଶଙ୍କୁ ଅଗୋଚର । ( ଜଗନ୍ନାଥ ଦର୍ଶନ-ବିଧି ପୁସ୍ତକ ଦ୍ରଷ୍ଟବ୍ୟ ) ।

ଦେବବିଗ୍ରହ-ଅବିଶ୍ୱାସୀ ବୁଦ୍ଧିବଳମାନେ ବୁଝିପାରୁ ନାହାନ୍ତି, ଯେବେ ତାଙ୍କଠାରେ ସ୍ଥାନ ବା ଦେଶ-କାଳ-ପାତ୍ର ଓ ସବିଶେଷ ବିଧି ପ୍ରତିଷ୍ଠିତ ବିଗ୍ରହ ନେଇ ସମଧିକ ବିଶେଷତ୍ୱ ବା ମାହାତ୍ମ୍ୟ କିମ୍ବା ନିଜର କିଛି ଶ୍ରେୟ ନ ଥାନ୍ତା, ତେବେ ଶତ ଶତ ସହସ୍ର ସହସ୍ର କୋଶ ଦୂରରୁ, ହଜାର ହଜାର ଲକ୍ଷ ଲକ୍ଷ ବର୍ଷାବଧି ବା ଅବହମାନ କାଳରୁ ଲକ୍ଷ ଲକ୍ଷ କୋଟି କୋଟି ଲୋକ ଧନ-ଜନ ଓ ନିଜର ଶରୀର-ମମତାକୁ ଭ୍ରୂକ୍ଷେପ ନ କରି ଅନନ୍ଦୋତ୍ସାହରେ ବାର ବାର ଦଉଡ଼ୁଥାନ୍ତେ କି ? ବର୍ତ୍ତମାନ ଶିକ୍ଷିତଙ୍କଠାରୁ ସେମାନେ ସବୁ ବିଷୟରେ ଶ୍ରେଷ୍ଠତମ । ଦେବବିଗ୍ରହ ତତ୍ତ୍ୱ ଉପାସନାଇ ନାଦ ଗୃହ୍ୟସୂତ୍ରରେ ଏବଂ ଶ୍ରୀମଦ୍ଭାଗବତ ଏକାଦଶସ୍କନ୍ଧ ସପ୍ତବିଂଶ ଅଧ୍ୟାୟରେ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ, ଅଧ୍ୟାତ୍ମରାମାୟଣ କିଷ୍କିନ୍ଧାକାଣ୍ଡ ଚତୁର୍ଥ ସର୍ଗରେ ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ବୁଝାଇଥିବା ବିଷୟ ଦ୍ରଷ୍ଟବ୍ୟ । ସାଂସାରିକ ଦୃଷ୍ଟାନ୍ତ; ଯଥା—କାହାରି ଠାରେ କିଛି ବିଶେଷତ୍ୱ

ନ ଥିଲେ ଏବଂ ନିଜର କିଛି ଶ୍ରେଷ୍ଠ ନ ଥିଲେ, କେହି କାହା ପାଖକୁ ଯାଇଥାଏ କି ?

ବର୍ତ୍ତମାନ ହିନ୍ଦୁମାନଙ୍କର ସର୍ବଶ୍ରେଷ୍ଠ ପ୍ରଧାନ ଧାମ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ବିରାଜିତ ପରଂବ୍ରହ୍ମଙ୍କର ସାର୍ଥକ ନାମ ଶ୍ରୀଜଗନ୍ନାଥ ଏବଂ ଦୀନବନ୍ଧୁ ନାମାର୍ଥକୁ ବ୍ୟତିକ୍ରମ କରିବାର ଉଦ୍‌ଯୋଗ ଲାଗିଛି ।

ସ୍ୱପନ୍ ରଙ୍ଗେ ଜାଗ୍ରତ୍ ଯଦୁଶିରସି ତିଷ୍ଠନ୍ ବୃଷଗିରୌ
ପ୍ରୟାଗେ ସମଜ୍ଜନଥ ବଦରିକା ଭୂମିଷୁ ଜପନ୍ ।
ଜଗନ୍ନାଥେ ଭୁଞ୍ଜନ୍ ଶତପଦମଯୋଧ୍ୟାମଧିବସନ୍
ସଦା ଦ୍ୱାରବତ୍ୟାଂ ସଲ୍ଲଳିବହାରେ ଯଦୁପତିଃ ॥

ଭଗବାନଙ୍କର ଏହି ଆଠ ସ୍ଥାନରେ ପ୍ରତ୍ୟହ ଉପରୋକ୍ତ ଆଠଟି କ୍ରିୟା ହୋଇଥାଏ । ଅତଃ ପୁରୁଷୋତ୍ତମରେ ଭୋଜନ କରନ୍ତି । ଆଜି କିଏ କହୁଛି, ଜାଣିବା ଶୁଣିବା ଜଗତରେ ଭଗବାନଙ୍କ ଭୋଜନ ସ୍ଥାନ ପୁରୀ ବ୍ୟତୀତ ଏପରି କୌଣସି ସ୍ଥାନ ଅଛି କି ? ଏକ ସମୟରେ ୨୫।୫୦ ହଜାର ମନୁଷ୍ୟ ହଠାତ୍ ପହଞ୍ଚିଯାଇ ସୁଲଭରେ ପବିତ୍ର ଖାଦ୍ୟ ଯଥାସମୟେ ଯଥା ଶୀଘ୍ର ଅକ୍ଲେଶରେ ପାଇପାରିବେ ? ମଧ୍ୟ ଯଥେଷ୍ଟ ପାଉଥିବେ । ଅକର୍ମଣ ଉଦ୍‌ଯୋଗୀ ମଧ୍ୟ ମୁଠାଏ ପାଇଥାଏ । ବିଶେଷତଃ ପୁରୀବାସୀ ସର୍ବଶେଷ ଉପାଦେୟ ଖାଦ୍ୟ ଖାଇଥାନ୍ତି ଏବଂ ଖୁଆଇଥାନ୍ତି । ଅନ୍ୟାନ୍ୟ ସ୍ଥାନର କ୍ରିୟାତତ୍ତ୍ୱ ସଦ୍‌ବ୍ୟକ୍ତିମାନେ ଅନୁଭବ କରିପାରନ୍ତି । ତାହା ବୁଦ୍‌ବିକଙ୍କୁ ଅଗୋଚର ।

ସମୟକ୍ରମେ ସାଧାରଣ ଲୋକେ ଜଗନ୍ନାଥଙ୍କୁ ଅବାରିତ ଦର୍ଶନ କରିଥାନ୍ତି । ସର୍ବଶେଷ ଶୀତ ସକାଶେ ଦ୍ୱାର ବନ୍ଦ ରହୁଥିଲେ ଦର୍ଶନ ପାଇଁ କବାଟ ଜଳାଦ୍ୱାର ବରାବର ଅବାରିତ ଥାଏ । ଅନୁମାନ ହୁଏ, ଅନନ୍ୟାନ୍ୟ ସ୍ଥାନସ୍ଥ କେତେକ ଦେବାଳୟରେ ଦର୍ଶନ-ଫିସ୍ ଆଦାୟ ହେଉଥିବା ଦେଖି ଅର୍ଥଲୋଲୁପମାନେ

ଫିସ୍ ଅଦାୟଦ୍ୱାରା ସାଧାରଣ ସଜ୍ଜନମାନଙ୍କୁ ଶୋଷଣ କରି ସେ ସାର୍ଥକ ନାମକୁ ବ୍ୟର୍ଥ କରି ଦୀନବନ୍ଧୁଙ୍କୁ ଧନାଢ଼୍ୟବନ୍ଧୁ ଓ ନାଥରେ ପରିଣତ କରିବାର ଅଭିଳାଷ ବଳାନ୍ତି । ଏ ପାଖଣ୍ଡିଙ୍କ ଧିକ୍ । ଅଉ ଆନୁସଙ୍ଗିକ ଯଥା, ଯେପରି କୌଣସି ସଦ୍‌ଗୁଣ-ବଶିଷ୍ଟ ପ୍ରତିଭାଶାଳୀ ବ୍ୟକ୍ତିର ଫଟୋ ଛବି ଦେଖିଲେ ତାର ପ୍ରତିଭା ବା ଜୀବନୀ ମନେ ପଡ଼େ; ସେହିପରି ଅପ୍ରତିଷ୍ଠିତ ହେଲେହେଁ ଭଗବଲ୍ଲୀଳାବତାର ଓ ମାହାତ୍ମ୍ୟ ସ୍ମରଣ ହୋଇ ତାଙ୍କ ପ୍ରତି ଚିତ୍ତାକର୍ଷଣଦ୍ୱାରା ସ୍ନେହ ଜନ୍ମିଥାଏ । ତଦ୍ଦ୍ୱାରା ଓ ଉପକାର ଅଛି ।

ଭଗବନ୍ମୂର୍ତ୍ତିଙ୍କର ଅର୍ଚ୍ଚନାଦ ସମସ୍ତ ବଧି ନିୟନ୍ତଣକର୍ତ୍ତା "ଶଙ୍କରଃ ଶଙ୍କରଃ ସାକ୍ଷାତ୍" ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ନାସ୍ତିକ-ମାନଙ୍କୁ ପରାଭୂତ ଓ ନିକାଲି କରି ଭାରତବର୍ଷର ଚାରି ଦଗର ଚାରି ଧାମରେ ଚାରି ସ୍ୱର୍ଗସ୍ତମ୍ଭ ସ୍ୱରୂପ ଚାରି ପୀଠ ସ୍ଥାପନ କରି ସେହି ସେହି ଧାମାଧିଷ୍ଠିତ ଭଗବନ୍ମୂର୍ତ୍ତିଙ୍କର ସନାତନ ସ୍ମାର୍ତ୍ତ, ଧର୍ମାତ୍ମକ ଅର୍ଚ୍ଚନାଦ ବଧି ନିରୂପଣ କରିଦେଇ ତତ୍ସାଧନ-କ୍ରମ ଓ ଅର୍ଚ୍ଚନାଦ ଅଧିକାର-କ୍ଷମତା ନିଜର ଉତ୍ତରାଧିକାରୀ-କ୍ରମାନ୍ୱୟରେ ସ୍ୱଶିଷ୍ୟଙ୍କ ଉପରେ ନିର୍ଭର କରି ତତ୍ପାଳନ ଓ ଶାସନ ପାଇଁ ବହୁସଂଖ୍ୟକ ସେବକ ଏବଂ ପରିଦର୍ଶକ ନିଯୁକ୍ତ କରିଥିଲେହେଁ, ପୁରୁଷୋତ୍ତମ ଭଗବାନଙ୍କ ଭୋଜନ ସ୍ଥାନ ହେତୁ ପ୍ରଧାନତଃ ପୂଜା-ପରୀକ୍ଷା କ୍ରମାନ୍ୱୟେ ସ୍ୱଶିଷ୍ୟଙ୍କ ଉପରେ ନିର୍ଭର କରି ଯାଇଛନ୍ତି । ବଶେଷତଃ ଶ୍ରୀପୁରୁଷୋତ୍ତମ ଭୋଗ-ବର୍ଦ୍ଧନ ବା ଗୋବର୍ଦ୍ଧନ ପୀଠାଧୀଶଙ୍କ ନିର୍ଦ୍ଦେଶ ଓ ଅନୁମତ୍ୟ-ନୁସାରେ ଅନ୍ୟାନ୍ୟ ପୀଠ ବା ଧାମର ପୀଠାଧୀଶମାନେ ଅଧିକାରପ୍ରାପ୍ତ ହୋଇ ତତ୍ତତ୍ ଧାମାଧିଷ୍ଠିତ ଭଗବନ୍ ବଗ୍ରହଙ୍କର ସେବା ଓ ଅର୍ଚ୍ଚନାଦ କରାଇଥାନ୍ତି । ଧନ୍ୟ ମର୍ତ୍ତ୍ୟବୈକୁଣ୍ଠ ଶ୍ରୀପୁରୁଷୋତ୍ତମସ୍ଥ ଭୋଗବର୍ଦ୍ଧନ ବା ଗୋବର୍ଦ୍ଧନ-ପୀଠାଧୀଶ । ବର୍ତ୍ତମାନ ସେ ବଧିଚାଳକମାନଙ୍କ ମଧ୍ୟରୁ

କେତେକଙ୍କର ଆଚରଣ ଓ ବ୍ୟତିକ୍ରମ କ୍ରିୟାକୁ ଅନୁମାନ କଲେ କ୍ଷୋଭ ଅସେ । "ଉତ୍ଥାୟ ହୃଦି ଲୀୟନ୍ତେ ଦରିଦ୍ରାଣାଂ ମନୋରଥାଃ" ।

ସେ ଯାହାହେଉ, ଗାନ୍ଧି ପ୍ରଭୃତି ମହତ୍ ମହତ୍ ପ୍ରତିଭାଶାଳୀ ବ୍ୟକ୍ତିମାନେ ଭାରତୀୟଙ୍କ ଭୌତିକ ଉନ୍ନତି ସକାଶେ ନାନାପ୍ରକାର ଚେଷ୍ଟାରେ ଲାଗିଥିଲେହେଁ ଫଳ କଣ ହେବ କୁହାଯାଇ ନ ପାରେ । କିନ୍ତୁ ପରଂପରାଗତ ପ୍ରଚଳିତ ସନାତନ ଧର୍ମ-ବିରୁଦ୍ଧ-ବିଧି—ଯଥା ଉଚ୍ଚ ନୀଚ ଜାତି-ବର୍ଣ୍ଣ-ନିର୍ବିଶେଷ ଏକତ୍ରିକରଣ; ଅତି ସମସ୍ତ ଦେବାଳୟରେ ବିଶେଷତଃ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ହରିଜନ ପ୍ରବେଶ-ଚେଷ୍ଟା ଫଳବତୀ ହେବା ସମ୍ଭବ ନୁହେ । ପାଞ୍ଚସହସ୍ରବର୍ଷ ମଧ୍ୟରେ ତାହା ହୋଇ ନ ପାରେ । "କଲୌ ଦଶସହସ୍ରାଣି ବିଷ୍ଣୁଃ ତ୍ୟଜତି ମେଦିନୀଂ ।" ବିଧର୍ମୀ ଶିକ୍ଷିତଙ୍କର ସନାତନ ଧର୍ମଶାସ୍ତ୍ରୋକ୍ତ ବା ପରଂପରାଗତ ବିଧି ଲଙ୍ଘନକୁ ଅନୁମାନ କଲେ ସେମାନେ ନିଗ୍ରହ ପ୍ରପୀଡ଼ିତମାନଙ୍କ ଶ୍ରେୟ ପାଇଁ ଦୌରାତ୍ମ୍ୟକାରୀ ବିପ୍ଳବୀମାନଙ୍କ ଦୌରାତ୍ମ୍ୟ ନିବାରଣ ସକାଶେ ଯେପରି ସତ୍ୟାଗ୍ରହ ଚଳାଉଛନ୍ତି, ସେହିପରି ସେମାନେ ଯଦି ହରିଜନମାନଙ୍କୁ ସାହାଯ୍ୟ ହୋଇ ପୁରୁଷୋତ୍ତମାଦି ଦେବମନ୍ଦିର-ମାନଙ୍କରେ ବଳପ୍ରୟୋଗ ବା ସତ୍ୟାଗ୍ରହଦ୍ୱାରା ପ୍ରବେଶ କରାନ୍ତି, ତେବେ ଭାରତରେ ସଙ୍ଗେ ସଙ୍ଗେ ମହାସଙ୍କଟ ବା ଅନିଷ୍ଟ ଘଟିବାଇ ଘଟିବ; ଏହା ନିଶ୍ଚୟ । ଭାରତର ପ୍ରଧାନତମ ରାଜପ୍ରତିନିଧି ବା ବଡ଼ଲାଟ ଲର୍ଡ଼ କର୍ଜନ ନାନାପ୍ରକାର କୌଶଳୋତ୍ସାହରେ ମଧ୍ୟ ସେ ସମୟର ତତ୍ରସ୍ଥ ସିଦ୍ଧ-ପୁରୁଷଙ୍କ ପ୍ରତିଘାଦ୍ୱାରା ପୁରୀ, ଭୁବନେଶ୍ୱର ଦେବାଳୟରେ ପଶିପାରି ନାହାନ୍ତି । ସମ୍ପ୍ରତିକମେ ପୁରୀରେ ଭାରତୀୟ ନିଖିଳ-କଂଗ୍ରେସ କମେଟୀ ବସିବାପାଇଁ ଉଦ୍‌ଯୋଗ ହୁଅନ୍ତେ ଭଗବତ୍‌ଲୀଳାରେ ତାହା ବନ୍ଦହୋଇ ତା ପରବର୍ତ୍ତିରେ ଯେ ସବୁ ବିପ୍ଳବ ଘଟିଥିଲା, ସ୍ମରଣ କରାଯାଉ । ପୁଣି ସେହି ସଭା କର ସମହ ଶକ୍ତିବଳରେ

ବଳପୂର୍ବକ ବା ସତ୍ୟାଗ୍ରହଦ୍ୱାରା ମନ୍ଦିରମଧ୍ୟରେ ଯଦି ହରିଜନଙ୍କୁ ପ୍ରବେଶ କରାନ୍ତି, ତେବେ ସନାତନ ଧର୍ମପ୍ରତି ବାଧାଦ୍ୱାରା ଭାରତୀୟଙ୍କ ଦୁର୍ଦ୍ଦଶା ଅତି ଭୟଙ୍କର ହେବାଇ ହେବ । ଏହା ନିଶ୍ଚୟ ! ଆଉ ସନାତନୀ ବଂଶଧର କଂଗ୍ରେସ-ନେତାମାନେ ଯେପରି ଧର୍ମବିରୋଧୀ ଦେଖାଯାନ୍ତି, 'ଅଭିଜ୍ଞସ୍ୟ 'ଖଳପ୍ରୀତି, ବିଦୁ୍ୟଦାଲୋକ ପରି' କଂଗ୍ରେସର ମାହାତ୍ମ୍ୟ ବହୁକାଳସ୍ଥାୟୀ ସମ୍ଭବ ନୁହେ । "ଧର୍ମୋ ରକ୍ଷତି ଧାର୍ମିକଂ ।"

"ଯଦ୍ୟପି ସ୍ୟାତ୍ତି କାଳଙ୍କସ୍ତୈ ଲୋକ୍ୟାକର୍ଷଣେ କ୍ଷମଃ ।
ତଥାପି ଲୌକିକାଗ୍ରୁରଂ ମନସାପି ନ ଲଙ୍ଘୟେତ୍ ॥"

"ମହାଜନୋ ଯେନ ଗତଃ ସ ପନ୍ଥା ।"

ସେ ଯାହାହେଉ, ଏ ସବୁ ଭଗବଦ୍ ବିରୁଦ୍ଧ-କାର୍ଯ୍ୟରେ ଯେ କେହି ସାଧୁ-ସମ୍ମତ-ପୀଠାଧୀଶ ଏବଂ ଦେବ-ଭକ୍ତି-ପରାୟଣ ବିଶିଷ୍ଟ ବ୍ୟକ୍ତିମାନଙ୍କର ଅଭିସମ୍ମତ, ଅଉ ଦେଶୀୟ ରାଜ୍ୟର ପ୍ରତିଭାଶାଳୀ ବିପ୍ଳବୀ ରାଜନ୍ୟବର୍ଗ ଓ ଖୋଦ ସରକାର ଏବଂ ବିଧର୍ମୀମ୍ବକମାନଙ୍କର କୂଟନୀତି ଓ ସହଯୋଗରେ ବିଦେଶୀ ବିପ୍ଳବ ପରି କଂଗ୍ରେସୀୟଙ୍କ ଉପରେ ପ୍ରମାଦ ନ ପଡ଼ିଲେ ରକ୍ଷା ।

"ଦ୍ୱିଜଦ୍ରବ୍ୟଂ ଶିବଦ୍ରବ୍ୟଂ ଦ୍ରବ୍ୟଂ ସନ୍ନ୍ୟାସିନସ୍ତଥା ।
ହଳାହଳ ବିଷଂ ଚୈବ ବଂଶନାଶଂ ଭବେଦ୍ଧ୍ରୁବଂ ॥"

---

## ୧୧ । ଜନ୍ମାନ୍ତର, ବିଶରୀର, ଅଧ୍ୟାରୋପ, ଅପବାଦ, ଧୂଳିଖେଳ ।

ନାସ୍ତିକ ବା ଚାର୍ବାକ ମତାନୁଯାୟୀ କେତେକ ଇହଜନ୍ମକୃତ ପାପ ଓ ପୁଣ୍ୟର ଫଳ ପରଲୋକରେ ଯେ ଭୋଗ କରିବାକୁ ହେବ ତାହା ଭାବି ସାବଧାନରେ ଚଳିବା ଦେଖାଯାଉ ନାହିଁ । ପରଲୋକ ଯେ ଅଛି, ଆଉ ପ୍ରତ୍ୟହ କୃତ-ପାପ-ପୁଣ୍ୟାଦି ସମସ୍ତ କାର୍ଯ୍ୟ ଯେ ସେଠାରେ ଲେଖାହୋଇ ରହେ, ତାହା ମାନିବାକୁ ନାରାଜ ହୋଇ ବିତଣ୍ଡା-ଯୁକ୍ତି କରିଥାନ୍ତି ।

ଗୀତା ପ୍ରଭୃତ ତତ୍ତ୍ୱଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି,—'କେହି ଲୋକ କୌଣସି ଅବସ୍ଥାରେ କ୍ଷଣେ ମାତ୍ର କର୍ମ ନ କରି ରହି ନ ପାରେ ।'

"ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍ ।
କାର୍ଯ୍ୟତେ ହ୍ୟବଶଃ କର୍ମ ସର୍ବପ୍ରକୃତିଜୈର୍ଗୁଣୈଃ ।୫ ଅ: ୩ ଗୀ

'ଜ୍ଞାନୀ ବା ଅଜ୍ଞାନୀ କୌଣସି ବ୍ୟକ୍ତି କର୍ମ ନ କରି କେବେହେଁ ବା କୌଣସି ଅବସ୍ଥାରେ ଅକର୍ମକୃତ୍ ହୋଇ କ୍ଷଣେ ମାତ୍ର ରହି ନ ପାରେ । ସ୍ୱାଭାବିକ ଗୁଣସବୁ ସମସ୍ତଙ୍କୁ ଅନାୟତ୍ତ କରି କର୍ମ କରାଇଥାଏ' । ୫ ।

ପ୍ରତ୍ୟହ ୬୦ ଦଣ୍ଡ ବା ୨୪ ଘଣ୍ଟା ର କାଳ । ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ତିନିଗୋଟି ତ ଅବସ୍ଥା । ସ୍ଥୂଳ-ସୂକ୍ଷ୍ମ-କାରଣ-ସମନ୍ୱିତ ଗୋଟିଏ ମନୁଷ୍ୟ । ଜାଗ୍ରତ ଅବସ୍ଥାରେ ଇନ୍ଦ୍ରିୟ-ସମନ୍ୱିତ ସ୍ଥୂଳ-ଶରୀରଦ୍ୱାରା ଯଥୋପଯୁକ୍ତ କାର୍ଯ୍ୟ କରାଯାଇଥାଏ । ଜାଗ୍ରତ-ସୁଷୁପ୍ତିର ମଧ୍ୟମାବସ୍ଥା ବା ସ୍ୱପ୍ନାବସ୍ଥାରେ ସୂକ୍ଷ୍ମ-ଶରୀର ବା ଲିଙ୍ଗ-ଶରୀରଦ୍ୱାରା ସ୍ୱପ୍ନ-କାର୍ଯ୍ୟ ତ ବୋଧ ହୋଇଥାଏ । ଆଉ ସୁଷୁପ୍ତି ବା ଅବ୍ୟକ୍ତାବସ୍ଥାରେ କି କାର୍ଯ୍ୟ ହୋଇଥାଏ ? ପ୍ରାୟ ସମସ୍ତେ ଏ ବିଷୟରେ ନିରୁତ୍ତର । ସୁଷୁପ୍ତି ଅବସ୍ଥା ସମ୍ବନ୍ଧରେ ପ୍ରବାଦ ଅଛି,—'ମତେ ଏପରି ଘୋର ନିଦ୍ରା ହୋଇଥିଲା ଯେ, ମୁଁ କିଛିମାତ୍ର ଜାଣିପାରି ନାହିଁ ।' ସେ ସମୟରେ କିଛି କାର୍ଯ୍ୟ ହେଉ ନ ଥିଲେ ଭଗବଦ୍‌ବାକ୍ୟ କଣ ମିଥ୍ୟା ? ଅତଃ ସେ ସମୟରେ ଜୀବାତ୍ମା ତତ୍‌ପୂର୍ବ-କୃତ ସମସ୍ତ କାର୍ଯ୍ୟ ( ରୋଜନାମଚି ପରି ) ପରଲୋକରେ ଲେଖାଇଥାଏ । ଯେଉଁ ଗୁପ୍ତ କାର୍ଯ୍ୟ କରିଥିଲେହେଁ ନିଜ ମନରେ ଭାବିବା ପରି ଅନାୟତ୍ତ ବା ଅଗତିକ ଭାବରେ ଲେଖାଇଥାଏ । ସ୍ଥୂଳ ଦେହାନ୍ତେ ସୂକ୍ଷ୍ମ-ଶରୀରରେ ଏବଂ ଅନ୍ୟ ସ୍ଥୂଳ-ଦେହ ଧାରଣ କରି ସେ ସବୁ କାର୍ଯ୍ୟର ସମୁଚିତ ଫଳ ଇହଜନ୍ମ-କ୍ଷଣିକ-ସ୍ୱପ୍ନ ପରି ଜନ୍ମାନ୍ତର ଶରୀର-ତମାମରେ ପ୍ରତ୍ୟକ୍ଷ

ଭୋଗ କରିବାକୁ ହୁଏ । ଏହା ନିଶ୍ଚୟ କଥା । ସବିଶେଷ କାରଣ ନେଇ ନିଦ୍ରା ନ ହେଲେ ଯେଉଁ କାଡ଼ ମାଡ଼ ଶୋଇଲେହେଁ ସାମାନ୍ୟ ସମୟରେ କାଡ଼ବ୍ୟଥା ଓ ଅତି ବ୍ୟସ୍ତ ଏବଂ କଷ୍ଟ ବୋଧ ହୋଇଥାଏ; କିନ୍ତୁ ସୁଷୁପ୍ତି ଅବସ୍ଥାରେ ଏକା କଡ଼କେ ରାତିତମାମ କଟିଗଲେହେଁ କିଞ୍ଚିନ୍ମାତ୍ର କଷ୍ଟ ନ ହେବାର କାରଣ କଣ ? କଷ୍ଟ ଭୋଗ କରେ ଯେ ଦେହୀ, ସେ ପରଲୋକକୁ ଯାଇଥାଏ । ଏହା ନିଶ୍ଚୟ ! ( ନିବେଦନ ପୁସ୍ତକାନ୍ତର୍ଗତ ସଙ୍କନୋପାଖ୍ୟାନ ଦ୍ରଷ୍ଟବ୍ୟ ) । କାଷ୍ଠରେ ଅଗ୍ନି ସମ ପକ୍ଷାନ୍ତରେ ଜଳଘଟେ ଚନ୍ଦ୍ରବିମ୍ବାଦ ନ୍ୟାୟ ସ୍ଥୂଳ-ଶରୀରରେ ସୂକ୍ଷ୍ମ-ଶରୀର ପ୍ରତିବିମ୍ବିତ । ସୂକ୍ଷ୍ମ-ଶରୀରରେ କାରଣ-ଶରୀର ପ୍ରତିବିମ୍ବିତ । କାରଣ-ଶରୀରରେ ଜୀବାତ୍ମା ସମନ୍ୱିତ ମତାନ୍ତେ ପ୍ରତିବିମ୍ବିତ । ଜୀବାତ୍ମା ପରଂବ୍ରହ୍ମଙ୍କର ଅଂଶ ବା ପ୍ରତିବିମ୍ବ । "ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ ।" ଗୀତା ୧୫ ଅ: ୭ ଶ୍ଳୋକ । (ବେଦାନ୍ତ-ସାର ୮୭ ସୂତ୍ର ଦ୍ରଷ୍ଟବ୍ୟ ) । ଏ ସବୁ ବିଷୟ ନିର୍ବିକଳ୍ପକ ସମାଧି-ନିଷ୍ଠ ମହାପୁରୁଷଙ୍କ ବ୍ୟତୀତ ଅନ୍ୟ ପକ୍ଷରେ ଅଜ୍ଞାତ । ପରଂବ୍ରହ୍ମଙ୍କର ସତ୍ତା ବା ଅଂଶ କିମ୍ବା ପ୍ରତିବିମ୍ବ ବ୍ୟଷ୍ଟି-ସମଷ୍ଟି-ସଦସଦାତ୍ମକ ଅଜ୍ଞାନରେ ପ୍ରତିବିମ୍ବିତ ବା ସ୍ଥିତ ହେତୁ ସେ କାରଣ-ଶରୀର ବୋଲି ନିରୂପିତ । ସେହି କାରଣ-ଶରୀର ଚତୁର୍ଦ୍ଦଶ-ଦେବସତ୍ତାତ୍ମକ, ଚତୁର୍ଦ୍ଦଶ ଇନ୍ଦ୍ରିୟ, ପଞ୍ଚତନ୍ମାତ୍ର ବା ସୂକ୍ଷ୍ମମହାଭୂତ, ପଞ୍ଚପ୍ରାଣ, କାମ-କର୍ମ-ଉନ୍ମାଦରେ ଗଠିତ ବ୍ୟଷ୍ଟି-ସମଷ୍ଟି ସୂକ୍ଷ୍ମ-ଶରୀର ବା ଲିଙ୍ଗ-ଶରୀର ଗତାଗତ ଜୀବାତ୍ମା ନାମରେ ଅଭିହିତ । ଯଥା—ଉ: ନି: ।

"ବାଗାଦ ପଞ୍ଚ ଶ୍ରବଣାଦ ପଞ୍ଚ ପ୍ରାଣାଦ ପଞ୍ଚାଭ୍ର ମୁଖାନି ପଞ୍ଚ ।
ଚିତ୍ତାଦ୍ୟ ବିଦ୍ୟାପି ଚ କାମକର୍ମଣୀ ପୁର୍ଯ୍ୟଷ୍ଟକ ଲିଙ୍ଗଶରୀରମାହୁ ।"

"କର୍ମେନ୍ଦ୍ରିୟାଣି ଖଲୁ ପଞ୍ଚ ତଥାପରାଣି
ଜ୍ଞାନେନ୍ଦ୍ରିୟାଣି ମନ ଆଦ ଚତୁଷ୍ଟୟଂ ଚ ।

ପ୍ରାଣାଦି ପଞ୍ଚକମଥୋ ବିଷୟାଦିକଞ୍ଚ
କାମଶ୍ଚ କର୍ମ ଚ ତମଃ ପୁନରଷ୍ଟମୀ ପୂଃ ॥"

ସ୍ଥୂଳ-ଶରୀର; ଯଥା—

"ଅସ୍ଥିମାଂସୌ ତଥା ନାଡ଼ୀଂ ରୋମଂ ଚର୍ମଂ ଚ ପଞ୍ଚମଂ ।
କ୍ଷିତେଃ ପଞ୍ଚଗୁଣାଃ ପ୍ରୋକ୍ତା ବ୍ରହ୍ମଜ୍ଞାନେନ ଭାଷିତଂ । ୧ ।
ଶୁକ୍ରଶୋଣିତମଜ୍ଜାଞ୍ଚ ନାଲମୂତ୍ରୌ ଚ ପଞ୍ଚମଂ ଆପଃ ପଞ୍ଚଗୁଣାଃ ।୨।
କ୍ଷୁଧାଃ ତୃଷାସ୍ତଥା ନିଦ୍ରାଃ କାନ୍ତିରାଲସ୍ୟମେବ ଚ । ତେଜପଞ୍ଚଗୁଣାଃ ॥
ଧାବନଂ ବଦନଂ ଗନ୍ଧଂ ସଙ୍କୋଚନ ପ୍ରସାରଣୌ । ବାୟୋପଞ୍ଚ ।୪।
ରାଗଦ୍ୱେଷସ୍ତଥା ଲଜ୍ଜା ଭୟମୋହୌ ଚ ପଞ୍ଚମଂ । ନଭଃପଞ୍ଚଗୁଣାଃ ॥"

ସେ ସୂକ୍ଷ୍ମ ବା ଲିଙ୍ଗ-ଶରୀର ସ୍ଥୂଳ-ଶରୀର-ଧାରୀ ଦେହୀ ଓ ସ୍ୱପ୍ନଦ୍ରଷ୍ଟା ଜୀବ ବୋଲି ନିରୂପିତ ଏବଂ ସ୍ଥୂଳ-ଶରୀରାନ୍ତେ ଅନ୍ୟ ଶରୀରଧାରୀ ଜୀବାତ୍ମା । ଉକ୍ତ ଜୀବାତ୍ମା ପଞ୍ଚ ସ୍ଥୂଳଭୂତାତ୍ମକ ସ୍ଥୂଳ-ଶରୀର ତ୍ୟାଗାନ୍ତେ ସେହି ସୂକ୍ଷ୍ମ-ଶରୀରରେ ପୂର୍ବ-ଶରୀର-ଦ୍ୱାରା କୃତ ପାପ ଓ ପୁଣ୍ୟାନୁଯାୟୀ ଯମଯାତନାଦି ଦୁଃଖ ବା ସ୍ୱର୍ଗ ସୁଖ ( ସ୍ୱପ୍ନପରି ) ପ୍ରତ୍ୟକ୍ଷ ଭୋଗ କରିଥାଏ । ସେ ଅବ୍ୟାହତ-ଗତି ଜୀବାତ୍ମା ମୃତ୍ତିକା, କାଷ୍ଠ, ପାଷାଣାଦି ଭେଦ କରିପାରେ ଏବଂ ନିମିଷମାନେ ବହୁ ଯୋଜନ ଗତି କରିପାରେ । ପ୍ରେତତ୍ୱରୁ ମୁକ୍ତ ନ ହେଲେ ଭୂତ-ପ୍ରେତ ଯୋନି ରୂପେ ଭ୍ରମଣ କରିଥାଏ; ମଧ୍ୟ କୃତ କର୍ମାନୁସାରେ ଅଶେଷ କୋଟି ବ୍ରହ୍ମାଣ୍ଡାନ୍ତର୍ଗତ ଚତୁର୍ବିଧରୂପାତ୍ମକ ବା ଦେବ-ମାନବ-ରାକ୍ଷସାଦି ଦେହ ଧାରଣ କରିପାରେ । ଯମ ଯାତନା ନର୍କକୁଣ୍ଡ ଏବଂ ପାପ ପୁଣ୍ୟାତ୍ମକ ଫଳଭୋଗ ବିଷୟରେ ଯେଉଁମାନେ ସଂଶୟାପନ୍ନ, ସେ ଶ୍ରୀମଦ୍ଭାଗବତ ୫ମ ସ୍କନ୍ଧ ୨୬ଶ ଅଧ୍ୟାୟ ଦେଖନ୍ତୁ । ନିଜ ଘରେ ଶୟନାବସ୍ଥାରେ ଶରୀର ପଡ଼ିଥିଲେହେଁ ବହୁ ଦୂରରେ ଇଷ୍ଟାନିଷ୍ଟକର ବା ସୁଖ ଦୁଃଖାଦି ସ୍ୱପ୍ନ ଭୋଗକୁ ଭାବନା କରାଯାଉ । ସୂକ୍ଷ୍ମ-ଶରୀରର ସ୍ଥୂଳ-ଶରୀର ତ୍ୟାଗକୁ ମୃତ୍ୟୁ କୁହାଯାଏ ।

ପରଂବ୍ରହ୍ମ ବା ପରମାତ୍ମା ଏହି ନିତ୍ୟସମନ୍ୱିତ ପ୍ରତ୍ୟେକ ଶରୀର ଓ ସମସ୍ତ ଶରୀରରେ 'ଅଭିନବ୍ୟାଲୟସ୍ଥ ନିର୍ବାତସ୍ଥାୟୀ ପ୍ରଜ୍ୱଳିତ ପ୍ରଦୀପ ସ୍ୱରୂପ' ନିର୍ଲିପ୍ତ ମୂକ ସାକ୍ଷୀ ପରି ବିଦ୍ୟମାନ। ତାଙ୍କ ବ୍ୟତୀତ ସବୁ ଅଚଳ ଓ ଜଡ଼। ଏ ସବୁ ଚତୁର୍ବିଧ-ଶରୀରାତ୍ମକ ଦୃଶ୍ୟମାନ ବ୍ରହ୍ମାଣ୍ଡ ବିଦ୍ୟମାନ ବା ଅବିଦ୍ୟମାନରେ ସେ ପରମାତ୍ମା ଅନନ୍ତକାଳରୁ ଅନନ୍ତକାଳପର୍ଯ୍ୟନ୍ତ ଯଥାତଥା ନିର୍ଲିପ୍ତ ଓ ସମାନ ଭାବରେ ସ୍ଥିର ଅଛନ୍ତି ଏବଂ ବରାବର ଥିବେ।

"ସୂର୍ଯ୍ୟୋ ଯଥା ସର୍ବଲୋକସ୍ୟ ଚକ୍ଷୁ-
ର୍ନଲିପ୍ୟତେ ଚାକ୍ଷୁଷୈର୍ବାହ୍ୟଦୋଷୈଃ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା
ନ ଲିପ୍ୟତେ ଶୋକଦୁଃଖେନ ବାହ୍ୟଃ ॥"

ଉପରୋକ୍ତ ସଦସଦାତ୍ମକ ଅଜ୍ଞାନ ଏବଂ ପରଂବ୍ରହ୍ମଙ୍କୁ ବିଭିନ୍ନ ତତ୍ତ୍ୱଜ୍ଞମାନେ ପ୍ରକୃତି ପୁରୁଷ, ମାୟା-ପରମାତ୍ମା, ଲକ୍ଷ୍ମୀ-ନାରାୟଣ ପ୍ରଭୃତି ଦ୍ୱୈତାଦ୍ୱୈତ ସଂଜ୍ଞାରେ ନିରୂପିତ କରି ନାମରୂପ ବା ଗୁଣାତ୍ମକ ସୃଷ୍ଟିର ସୃଜନ-ପାଳନ-ଧ୍ୱଂସ କ୍ରମ ପ୍ରଭୃତିକି ବିଭିନ୍ନ ନାମକ ଦର୍ଶନଶାସ୍ତ୍ରରେ ପ୍ରଚାର କରିଛନ୍ତି; ସେ ସବୁ ବିଭିନ୍ନ ମାର୍ଗ ମାତ୍ର। ତାହାର ନିର୍ଯାସ (ବିଭିନ୍ନ କଳ୍ପାନ୍ତେ ବିଭିନ୍ନ ସୃଷ୍ଟି ସର୍ଜନ ବା କ୍ରମ) କେହି ଅସଙ୍ଗତ ବା କାଳ୍ପନିକ ନୁହେ।

**ଅଧ୍ୟାସ ବା ଅଧ୍ୟାରୋପ ଓ ଅପବାଦ** :—ଇସଦନ୍ଧକାର, ଅଜ୍ଞତା ବା ଅସାବଧାନରୁ ଚକ୍ଷୁ ହଠାତ୍ ପଡ଼ିଗଲେ ଖଣ୍ଡେ ରଜ୍ଜୁରେ ସର୍ପଭ୍ରମ, ସାମୁକଖଣ୍ଡରେ ରୌପ୍ୟ, ବୁଦା-ହୁଙ୍କା ବୃକ୍ଷ ପ୍ରଭୃତିରେ ଅନ୍ୟାନ୍ୟ ଜୀବ ଜନ୍ତୁର ପ୍ରତ୍ୟୟ ହୋଇଥାଏ। ପରେ ଭଲରୂପେ ଅନୁମାନ କଲେ ସେ ଭ୍ରମ ତୁଟିଯାଇ ପ୍ରକୃତ ରଜ୍ଜୁ ପ୍ରଭୃତି ବୋଲି ନିର୍ଧାର୍ଯ୍ୟ ହୋଇଥାଏ। ଏହି ସବୁ ଭ୍ରମ ହେଉଛି ଅଧ୍ୟାସ ବା ଅଧ୍ୟାରୋପ। ସର୍ପାଦି ଭ୍ରମ ପରେ ରଜ୍ଜୁ ପ୍ରଭୃତିରେ ଯେ ପ୍ରକୃତ ଜ୍ଞାନ ହୁଏ, ତାହା 'ଅପବାଦ' ବୋଲି

ନିରୂପଣ । ସେହିପରି ଏହି ଦୃଶ୍ୟମାନ ଭୌତିକ-ଜଗତ ପରଂ-ବ୍ରହ୍ମଙ୍କ ମାୟା ବା ଶକ୍ତିଦ୍ୱାରା ତାଙ୍କ ସାନ୍ନିଧ୍ୟବଶତଃ 'ଅଧ୍ୟାସାତ୍ମକ' ସୃଷ୍ଟି ହୋଇ ସାଂସାରିକ କ୍ରୀଡ଼ା ଚଳୁଅଛି । ଦୃଶ୍ୟମାନ ସମସ୍ତେ କ୍ରୀଡ଼ନକ ମାତ୍ର । ସଦ୍‌ଜ୍ଞାନ ଜନ୍ମିଲେ ଦୃଶ୍ୟମାନ ସମସ୍ତ ଜଗତ ଅପବାଦ ନ୍ୟାୟରେ ଏକମାତ୍ର ପରଂବ୍ରହ୍ମ ବୋଲି ବୋଧ ହୋଇଥାଏ । ଯଥା—"ସର୍ବଖଲ୍ୱିଦଂ ବ୍ରହ୍ମ, ସକଳମିଦମହଂ ଚ ବାସୁଦେବଃ, ପରମ ପୁମାନ୍ ସ ଏକଃ, ତଦ୍‌ସତ୍, ତତ୍ତ୍ୱମସି ।"

କୁହୁକ-କ୍ରିୟା ଦେଖାଇବା ବ୍ୟକ୍ତି ଅନୋହିତ କୌଶଳରେ ଯେପରି ନାନାପ୍ରକାର ଆଶ୍ଚର୍ଯ୍ୟ ଘଟନାମାନ ଦେଖାଇ ଦ୍ରଷ୍ଟାମାନଙ୍କୁ ମୋହିତ କରିଥାଏ, ସେ ସବୁକୁ ପ୍ରକୃତ ବସ୍ତୁ ବୋଲି ମଣି ଦ୍ରଷ୍ଟାମାନେ ମୋହିତ ହୋଇ ପ୍ରକୃତ ବସ୍ତୁ ବୋଲି ମନେ କରନ୍ତି; କିନ୍ତୁ ତାହାର ପ୍ରତିକ୍ରିୟା ଜାଣିଥିବା ଲୋକ ପ୍ରତିକ୍ରିୟାଦ୍ୱାରା ଏବଂ ନିଜେ କୁହୁକକାରୀ ପକ୍ଷରେ ମିଥ୍ୟା ବା କାଳ୍ପନିକ । ସେହିପରି ସୃଷ୍ଟିକର୍ତ୍ତା ଏବଂ ସତ୍‌ସାଧକ ଜ୍ଞାନୀଙ୍କ ପକ୍ଷରେ ଏ ଜଗତ ମଧ୍ୟ ମିଥ୍ୟା ବା କୁହୁକ । ମୋହା-ନ୍ଧକାରାତ୍ମକ ଅଜ୍ଞାନ ବା ଅବିଦ୍ୟା ବଶରୁ ଆମ୍ଭେମାନେ ମୋହିତ ହୋଇ ସାଂସାରିକ ସମସ୍ତ କାର୍ଯ୍ୟରେ ତନ୍ମୟ ହୋଇ ବାଳକଙ୍କ ଧୂଳିଖେଳ ପରି ଷଡ଼ରିପୁ ଓ ଅଜିତେନ୍ଦ୍ରିୟଙ୍କ ବଶବର୍ତ୍ତୀ ଏବଂ ସଦ୍‌ବିବେକ-ପରାଂମୁଖ ହୋଇ ମଜ୍ଜିଥାଉଁ । ଏହାର ପ୍ରକୃତ ପ୍ରତିକାର ହେଉଛି, ସନାତନ ଧର୍ମଶାସ୍ତ୍ର ଶ୍ରୁତି-ସ୍ମୃତି-ପୁରାଣୋକ୍ତ ସତ୍‌କ୍ରିୟାକଳାପାତ୍ମକ ସଗୁଣୋପାସନା ବା ନିର୍ଗୁଣ ସାଧନା । ଉପାସନା ସମ୍ବନ୍ଧରେ :—

"ଯଂ ଶୈବାଃ ସମୁପାସତେ ଶିବ ଇତି ବ୍ରହ୍ମେତି ବେଦାନ୍ତିନଃ
ବୁଦ୍ଧେସ୍ତେତୀଶ୍ୱର ଭକ୍ତି ଶୁଦ୍ଧମତୟଃ କର୍ତ୍ତେତି ନୈୟାୟିକାଃ ।
ଯୀନା ଯଂ ପରମାତ୍ମମେବ କୃପୟାଃ କର୍ମେତି ମୀମାଂସକାଃ
ତଂ ତ୍ୱାଂ ନିତ୍ୟମନନ୍ତମାଦି ପୁରୁଷଂ ନୀଳାଦ୍ରିନାଥଂ ଭଜେ ।।"

# ୧୨ । ଜନ୍ମାନ୍ତର ଫଳ

ଜନ୍ମାନ୍ତର ବିଷୟ୍ କେତେକଙ୍କ ହୃଦୟ୍‌ରୁ ବରାବର ଲୁପ୍ତ ହୋଇଯାଇଛି । କିମ୍ବା ଯେ ପୂର୍ବେ ନ ଥିଲା ତାହା କୁହାଯାଇ ନ ପାରେ; କିନ୍ତୁ ବର୍ତ୍ତମାନ ଯେ ବିଚିତ୍ରକିଆ ଅମାନୁଷିକ ଉତ୍କଟ-କାଣ୍ଡ ବହୁସଂଖ୍ୟାରେ ଘଟୁଛି ତାହା କଦାଚ ନ ଥିଲା । ଗୋଟିଏ ବିଷମ ସମସ୍ୟାକୁ ବିଚାର କରାଯାଉ । ଯଥା—'ବେଢ଼ୀ ଉପରେ କୋରଡ଼ା ଓ ପାଲିଙ୍କି ଉପରେ ପାଟଛତା'; ଏ ଉଭୟଙ୍କ ମଧ୍ୟେ ଭାଗ୍ୟବାନ୍ କିଏସେ ? ଯେ ଯାହା ଭାବନ୍ତୁ, ଏ କଥା ନିଶ୍ଚୟ, ଯେ ବେଢ଼ୀ ଉପରେ କୋରଡ଼ା-ଭୋଗୀ ସେ ନିଶ୍ଚୟ ଭାଗ୍ୟବାନ୍ । ପାଲିଙ୍କି ଉପରେ ପାଟଛତା-ଭୋଗୀ ଦୁର୍ଭାଗା । ଯେ ପୂର୍ବ ଜନ୍ମରେ ଅତି ଉତ୍କଟ ପାପକାର୍ଯ୍ୟ କରିଥିଲା, ତାହାର ସମୁଚିତ ପ୍ରତିଫଳ ବେଢ଼ୀ ଉପରେ କୋରଡ଼ା-ଭୋଗୀ ଭୋଗ କରୁଛି; ସୁତରାଂ ତାହାର ପୂର୍ବ-ପାପର ପ୍ରାୟଶ୍ଚିତ୍ତରୂପ ସେ ପାପ କଟୁଥିବାରୁ ସେ ଭାଗ୍ୟବାନ୍ ହେଲା ନାହିଁ କି ? ଅଉ ପାଲିଙ୍କି ଉପରେ ପାଟଛତାଧାରୀ ପୂର୍ବଜନ୍ମକୃତ ପୁଣ୍ୟର ଫଳ ସ୍ୱରୂପ ଐଶ୍ୱର୍ଯ୍ୟ ଭୋଗ କରୁଛି; ସୁତରାଂ ତାହାର ପୁଣ୍ୟାଂଶ କ୍ଷୟ ହୋଇ କଟୁଛି । ଅତଃ ଦୁର୍ଭାଗା ନୁହେ କି ?

ପ୍ରତ୍ୟକ୍ଷ ଅନୁସନ୍ଧାନ କରାଯାଉ । ଯଥା—ଏକଦେଶ, ଏକଗ୍ରାମ, ଏକ ଗୃହବାସୀ ମଧ୍ୟରେ ଏବଂ ଏକ ପିତା ମାତାଠାରୁ ଜାତ ସନ୍ତାନ ମଧ୍ୟରେ ସମ୍ପତ୍ତି ସମାନ କରି ବାଣ୍ଟି ନେଲେହେଁ କିଏ ଚତୁର୍ଗୁଣ ବଢ଼ାଇ ପ୍ରଶଂସିତ ପତାକା ଉଡ଼ାଉଛି; କିଏ ସର୍ବସ୍ୱ ହରାଇ ମାଗି ଖାଉଛି ଓ ଚୋରି କରି ନାନାଦଣ୍ଡ ପାଉଛି । ସମାନ ପରିଚ୍ଛଦ, ସମାନ ଖାଦ୍ୟ-ପେୟ୍, ଏକ ବିଦ୍ୟାଳୟ୍, ଏକ ଶିକ୍ଷକ, ସମାନ ପରିଶ୍ରମ କଲେହେଁ କିଏ ଥରେ ଶୁଣିଲେ ମନେ ରଖୁଛି; କିଏ ଘୋଷି ଘୋଷି ଥକୁଛି—କିଛି ମନେ ରହୁ ନାହିଁ । ପୁଣି କେହି ଏକ ଶ୍ରେଣୀରେ ଅଧ୍ୟୟନ କରି ସମାନ

ଉତ୍ତୀର୍ଣ୍ଣ ହୋଇ ବା ଉତ୍କୃଷ୍ଟ ଭାବରେ ଉତ୍ତୀର୍ଣ୍ଣ ହୋଇ ପେଟକୁ ମୁଠାଏ ଖାଇବାକୁ ପାଉ ନାହିଁ, ତତ୍ସଙ୍ଗୀ ବା ନିମ୍ନତର ବ୍ୟକ୍ତି ଶତ ଶତ ସହସ୍ର ସହସ୍ର ପାଇ ଶତ ଶତ ପ୍ରାଣୀଙ୍କି ପୋଷୁଛି । ପୁଣି କେହି ଗରିବ ସନ୍ତାନ ସ୍ୱକୀୟ ସାହାଯ୍ୟ ବିନା ନିଜ ଯତ୍ନରେ ଉଚ୍ଚତମ ବିଦ୍ୱାନ୍ ଓ ସଦ୍‌ଗୁଣସମ୍ପନ୍ନ ଓ ଶକ୍ତିଶାଳୀ ହୋଇ ସୁଖ୍ୟାତି ଲଭୁଛି । କୌଣସି ଧନିଜନନନ୍ଦନ ଯଥେଷ୍ଟରେ-ନାସ୍ତି ଯତ୍ନରେ କିମ୍ଭୂତକିମାକାର, କଦର୍ଯ୍ୟ, ମୂର୍ଖ, ଦୁଷ୍ଚରିତ୍ରରେ ଛିକାର ଲଭୁଛି । ପିତା-ପୁତ୍ର; ମାତା-ଦୁହିତା ମଧ୍ୟରେ ଗୁଣ ଚରିତ୍ର ଓ ଦକ୍ଷତାଦିରେ ବିପରୀତ ଘଟୁଛି । ପୁଣି କେହି ସମାନ ବାଣିଜ୍ୟ କରି ଲକ୍ଷପତି ଓ କୋଟିପତି ହେଉଛି । କିଏ ମୂଳ ବୁଡ଼ାଇ ଦଣ୍ଡ ଲଭୁଛି । କାହାର ସମ୍ପତ୍ତିର ସୀମା ନାହିଁ; କିନ୍ତୁ ତାହା ଭୋଗ କରିବାକୁ ଗୋଟିଏ ମାତ୍ର ସନ୍ତାନ ନାହିଁ । କାହାର ସନ୍ତାନ ଗୋଷ୍ଠି ରହିବାକୁ ଗୃହ ଅଣ୍ଟୁ ନାହିଁ କି ପେଟ ପୂରାଇ ଖାଇବାକୁ ମିଳୁ ନାହିଁ । କିଏ ଚତୁର୍ବର୍ଗଶାଳୀ ନିଃସ୍ୱ ହୋଇ ଯାଉଛି, କିଏ ନିଃସ୍ୱ ଚତୁର୍ବର୍ଗଶାଳୀ ହେଉଛି । କାହାର ପୁତ୍ର ସବୁ ବିଷୟରେ ନାମଯାଦା ଓ ସୁଖ୍ୟାତ; କାହାର ପୁତ୍ର ଦୁଷ୍ଚରିତ୍ର ଏବଂ କଳଙ୍କିତ । କିଏ ସର୍ବଦା ରୋଗ-ଶୋକାକୁଳ, ଅସ୍ଥି-କଙ୍କାଳ-ମାଳା, କିଏ ନିରୋଗୀ ଓ ସବଳକାୟ । କାହାର ଧନ ପରୋପକାର ଓ ସତ୍କାର୍ଯ୍ୟରେ ବ୍ୟୟ ହୋଇ ଧର୍ମ ଓ ସୁଖ୍ୟାତି ଉଣ୍ଡିମ ବାଜୁଛି, କାହାର ଧନ ଦାସୀଦାସୀ-ସୁରାପାନାଦି ଦୁଷ୍କାର୍ଯ୍ୟରେ ନଷ୍ଟ ହୋଇ ଛିକାରରେ ରାଜ୍ୟ ପୂର୍ଣ୍ଣ । ଏହିପରି ଦ୍ୱନ୍ଦ୍ୱାତ୍ମକ ଯାହା ଯାହା ସବୁ ଦେଖାଯାଏ, ତାହା କଣ ପୂର୍ବଜନ୍ମ କୃତ ପାପ ଓ ପୁଣ୍ୟର ଫଳ ନୁହେ କି ? ସୁତରାଂ ବର୍ତ୍ତମାନ ଲୋକମାନେ ଯେପରି ସୁକୃତ ଓ ଦୁଷ୍କୃତ କାର୍ଯ୍ୟମାନ କରୁଛନ୍ତି, ଜନ୍ମାନ୍ତରେ ସେମାନେ ତାହାର ସମୁଚିତ ଫଳ ଲଭିବେ ନାହିଁ କି ? ଆଉ କେତେକ ପୁନର୍ଜନ୍ମବାଦୀଙ୍କ ମତେ

ସର୍ବବିଧ ଐଶ୍ୱର୍ଯ୍ୟ ଭୋଗ କରିବାପାଇଁ ରାଜ୍ୟ ଓ ସମ୍ପତ୍ତିର ଚିରସ୍ଥାୟୀ ନିୟମ ବା ଆଇନ ବାନ୍ଧିଥିଲେହେଁ ସମୟକ୍ରମେ ସେ ଗାଦିରେ ଅନ୍ୟ ବଂଶଜ ମାଲିକ ହେବାର ତ ଦେଖାଯାଉଛି । ସେ ଯାହା ହେଉ, ଜନ୍ମାନ୍ତରକୁ ଯାହାର ବିଶ୍ୱାସ ନାହିଁ, ସେ କୌଣସି ସମୁଚିତ ବା ସତ୍କାର୍ଯ୍ୟ ନ କରି ଇନ୍ଦ୍ରିୟଲାଳସାରେ ମାତା, ଦୁହିତା, ଭଗିନୀ, ଗୁରୁ, ଲଘୁ ପ୍ରଭୃତି ଅଗମ୍ୟାଗମନ ଓ ଅଭକ୍ଷ୍ୟ ଭକ୍ଷଣ, ଚୌର୍ଯ୍ୟ ଡକାୟତି ଏବଂ କପଟାଚରଣ ଓ ସାଧାରଣ ଅନିଷ୍ଟାଦି କରୁ ନ ଥିବ କି ? କିମଧିକଂ । ଏ ସବୁକୁ ବିଚାର କରି ଜାଗ୍ରତ ନ ହୋଇ ଲୋକେ ଯେ ଜନ୍ମାନ୍ତର ମାନୁ ନାହାନ୍ତି, ତାହା ମହତ୍ ଭ୍ରମ ନୁହେ କି ?

---

## ୧୩ । ଭେଦାଭେଦ ନିର୍ଣ୍ଣୟ

ସ୍ରଷ୍ଟା ସ୍ୱଷ୍ଟ ଧର୍ମଙ୍କର ତ୍ରୟୋଦଶ ସଂଖ୍ୟକ ପତ୍ନୀଙ୍କଠାରୁ ଧର୍ମ-ଭାବାତ୍ମକ ଶକ୍ତିଦ୍ୱାରା ଜଗତ ଚଳୁଛି । (ନିବେଦନ ପୁସ୍ତକାନ୍ତର୍ଗତ ସର୍ଜନୋପାଖ୍ୟାନ ଦ୍ରଷ୍ଟବ୍ୟ ) । ସେହି ସ୍ରଷ୍ଟା ସୃଷ୍ଟ ତ୍ରିଗୁଣାତ୍ମକ ପଞ୍ଚଭୂତ ସମନ୍ୱିତ ବ୍ରହ୍ମାଣ୍ଡ ହେଲେହେଁ ସ୍ୱଚ୍ଛ ସତ୍ତ୍ୱାତ୍ମକ କଶ୍ୟପ ମହର୍ଷିଙ୍କର ତ୍ରୟୋଦଶ ପତ୍ନୀଙ୍କଠାରୁ ନ୍ୟୂନାଧିକ ଗୁଣାତ୍ମକ ଦେବତା, ରାକ୍ଷସ, ନର, ପଶୁ, ପକ୍ଷୀ ପ୍ରଭୃତି ବା ଜରାୟୁଜ, ଅଣ୍ଡଜ, ଉଦ୍ଭିଜ୍ଜ, ସ୍ୱେଦଜ ଓ ନାମ ରୂପାତ୍ମକ ସମସ୍ତ ସ୍ଥାବର, ଜଙ୍ଗମାଦି ଜାତ ହୋଇଥିଲେହେଁ ଅସ୍ମେମାନେ ସମସ୍ତେ ଦ୍ୱନ୍ଦ୍ୱାତ୍ମକ; ସମସ୍ତଙ୍କୁ ଏକ ବୋଲି ବାଗାଡ଼ମ୍ବରରେ କହିବା ଅନୁଚିତ । ପ୍ରତ୍ୟେକକୁ ମନରେ ଭିନ୍ନ ଭାବିବା, କଥାରେ ଭିନ୍ନ କହିବା ଓ ଭେଦ ଭାବରେ କାର୍ଯ୍ୟ କରିବା ଅନୁଚିତ । ତାହା କେବଳ ଅତ୍ୟନ୍ତ କଠୋର ସାଧକ ମହାପୁରୁଷଙ୍କ ପକ୍ଷରେ ପ୍ରଯୁଜ୍ୟ । ସେପରି ମହାପୁରୁଷଙ୍କ ଭେଟ ପାଇବା ଅତି ଦୁର୍ଲ୍ଲଭ ।

"ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲ୍ଲଭଃ ।" ଗୀତା
"ମନସ୍ୟନ୍ୟତ୍ ବଚସ୍ୟନ୍ୟତ୍ କର୍ମଣ୍ୟନ୍ୟତ୍ ଦୁରାତ୍ମନାଂ ।
ମନସ୍ୟେକଂ ବଚସ୍ୟେକଂ କର୍ମଣ୍ୟେକଂ ମହାତ୍ମନାଂ ।"

ଅନ୍ୟ କଥା ଛାଡ଼, ଜଙ୍ଗମାତ୍ମକ ଶ୍ରେଷ୍ଠ ମାନବମାନଙ୍କୁ ଏକ ବୋଲି ମନରେ ଭାବିବା ଓ ସୁକଠିନ; କାର୍ଯ୍ୟରେ ବ୍ୟବହାର କରିବା ତ ଅତି ଦୂରର କଥା । ପ୍ରତ୍ୟକ୍ଷ ଦେଖାଯାଉଛି, ଦୂର-ଦେଶୀୟଙ୍କଠାରୁ କ୍ରମେ କ୍ରମେ ନିକଟବର୍ତ୍ତୀ ଏବଂ ସ୍ୱ-ସମ୍ପର୍କୀୟଙ୍କୁ ନେଇ ସମସ୍ତେ ତ ନ୍ୟୂନାଧିକ ସ୍ୱ-ପର ଭେଦରେ ନିମଗ୍ନ । ଦ୍ୱନ୍ଦ୍ୱାତ୍ମକ ସ୍ୱ-ପରଭିମାନୀ ମାନବମାନଙ୍କ ପକ୍ଷରେ ଉଚ୍ଚ, ନୀଚ, ପିତା-ପୁତ୍ର, ମାତା-ଦୁହିତା, ଭଗିନୀ, ଜାୟା, ଶ୍ୱଶୁର, ଶ୍ୟାଳକ, ପତି, ଦେବର, ଶତ୍ରୁ, ମିତ୍ର, ସୁହୃଦ-ସମ୍ବନ୍ଧୀୟ ଏବଂ ଅନ୍ୟାନ୍ୟ-ମାନଙ୍କୁ ଯଥୋପଯୁକ୍ତ ସମ୍ବନ୍ଧ ବ୍ୟତୀତ ଏକ ଭାବ ସମାନ ବ୍ୟବହାର କରାଯାଇପାରେ କି ? ମହୋପକାରୀ ଉଭୟ ବୈଜ୍ଞାନାତ୍ମକ-ଶାସ୍ତ୍ରୋକ୍ତ ନିଷିଦ୍ଧ ଉଚ୍ଚ-ବର୍ଣ୍ଣା ସ୍ତ୍ରୀ ଓ ନୀଚବର୍ଣ୍ଣ ପୁରୁଷ-ଜାତ ନରମାନେ ଜଗତର ଅନିଷ୍ଟକାରୀ, ବିଶୃଙ୍ଖଳ, ଦୌରାତ୍ମ୍ୟ କର୍ମରତ ଏବଂ ଜଘନ୍ୟ-ଖାଦ୍ୟ-ସାରାଂଶ ଗଠିତ ଅନ୍ତ୍ୟଜ-ଚଣ୍ଡାଳ ଶରୀରଧାରୀମାନେ ଉପରିଭୌତିକ ଶିକ୍ଷା ପାଇଲେହେଁ ସେମାନଙ୍କର ରକ୍ତଗତ ସ୍ୱଭାବ ବଦଳି ନ ପାରେ ।

ମହାଭାରତ ଅନୁଶାସନ ପର୍ବୋକ୍ତ ଭିଷ୍ମୋକ୍ତ; ଯଥା—ନାପିତଦ୍ୱାରା ବ୍ରାହ୍ମଣୀ ଗର୍ଭଜ ଚଣ୍ଡାଳତ୍ୱ ପ୍ରାପ୍ତ ତପସ୍ୟାରତ ମତଙ୍ଗ ଋଷିଙ୍କି ଇନ୍ଦ୍ର କହିଥିଲେ, 'ତିର୍ଯ୍ୟକ୍-ଯୋନିଜ ବହୁକାଳାନ୍ତେ ମନୁଷ୍ୟ ମଧ୍ୟରେ ଚଣ୍ଡାଳ ବା ମେଚ୍ଛେନ୍ଦ୍ରାଦି ଦେହ ପାଇ କ୍ରମୋନ୍ନତିରେ ଶୂଦ୍ର, ବୈଶ୍ୟ, କ୍ଷତ୍ରିୟ, ବଳଭଦ୍ରଗୋତ୍ରୀ ପରେ ବ୍ରାହ୍ମଣ କୁଳରେ ଜନ୍ମ ଲଭିଥାଏ । ସେ ଅସଦାଚାରୀ ହେଲେ ଅଧୋଗତି ଲଭି ଚଣ୍ଡାଳ ବା ତିର୍ଯ୍ୟକ୍-ଯୋନିଜ ହୋଇଥାଏ ।'

ବର୍ତ୍ତମାନ ସନାତନଧର୍ମର ଅତି କଠିନ ସାଧନାତ୍ମକ ସର୍ବଶ୍ରେଷ୍ଠ ସିଦ୍ଧାବସ୍ଥା ସମତା ଭାବୋକ୍ତ ଶାସ୍ତ୍ରକୁ ଭଣ୍ଡାର-ଭେଦ କର୍ଣ୍ଣଚ୍ଛିଦ୍ରରେ ଶୁଣି ତନ୍ନୋଦ୍ଭବରେ ବିଧର୍ମାତ୍ମକ-ଶିକ୍ଷିତ କେତେକ ପ୍ରତିଭା ବା ପ୍ରତାପଶାଳୀମାନେ ପ୍ରଚାର କରନ୍ତେ, ଅନ୍ୟ ଦେଶୀୟ ବିଧର୍ମୀ କେତେକ ଆଉ ମଧ୍ୟ ଆର୍ଯ୍ୟ ବଂଶଧର କେତେକ ଭାରତୀୟ ଫୁଟୁକୁରିଆ 'ଓଧୁଅ ସଙ୍ଗରେ ବଣଭୁଆ ବାଇ ପରି' ସମତା ବାହାନାରେ ମାତିଗଲେ ସିନା! ବର୍ତ୍ତମାନ୍ ବିଦେଶୀ ସାମ୍ୟବାଦୀଙ୍କ ବିପ୍ଳବକୁ ଦେଖି ମୁହଁ ତଳକୁ ପୋତି ଫଣ ଫଣ କରି ମ୍ନ ମ୍ନ ହୋଇ ଲୁଡ଼ୁ ବୁଡ଼ୁ କରୁଛନ୍ତି। କେତେକ ବିଦେଶୀ ବିପ୍ଳବୀଙ୍କ ଶିଷ୍ୟ ବନି ଲୋକାପବାଦ ଛଳନାରେ ନିଜ ସମ୍ପତ୍ତି ଅନ୍ୟ ସ୍ୱଜାତୀୟ ନାମରେ ବେନାମୀ କରିଦେଇ ସାଧାରଣ ଚକ୍ଷୁରେ ଅବଗୁଣ୍ଠଳୀ ବାନ୍ଧିବା ବା 'ବିରାଡ଼ି ନିଜ ଆଖି ବୁଜି ଦୁଧ ପିଇବା ପରି' ଲୋକ ଦେଖାଣିଆ ସମତା ଭାବ ପ୍ରଚାର କରୁଛନ୍ତି। ତାଙ୍କ ବିପ୍ଳବରେ ମାତି କେତେକ ହୋ ହୋ ହେବାରୁ ସର୍କାର ମହାଜନୀ ଓ ଜମିଦାରୀ ସଂଶୋଧନ ଆଇନ୍ ପାସ୍ କରନ୍ତେ ଦେଶରେ ହୁଲସ୍ଥୂଲ୍ ଲାଗିଛି ଏବଂ ସାଧାରଣ ଲୋକେ ଅତି ହଟହଟା ହେଉଛନ୍ତି। ଏତଦ୍ଦ୍ୱାରା ସ୍ୱଦେଶୀୟ ଘରୁଆ କାରବାର ଓ ଗରିବଗୁରୁବାଙ୍କ ସୁବିଧାଜନକ ଦେଣନେଣ ପରିବର୍ତ୍ତରେ ବିଦେଶୀ ଧନୀଙ୍କଦ୍ୱାରା ବ୍ୟାଙ୍କ ବସିଲେ ସାଧାରଣ ହଟହଟା ହେବେ। ଅଉ ସାର ଶୋଷଣ ହୋଇ ବିଦେଶକୁ ଯିବାର ନିଶ୍ଚୟ। ବର୍ତ୍ତମାନ ପ୍ରଚଳିତ ବ୍ୟାଙ୍କ, ସୋସାଇଟି ଓ ତତ୍ପୂର୍ବ ମହାଜନୀ-କାରବାରକୁ ଅନୁସନ୍ଧାନ କରିବା କର୍ତ୍ତବ୍ୟ। (ନିବେଦନ ପୁସ୍ତକାନ୍ତର୍ଗତ ଜାତି-ବର୍ଣ୍ଣ-ନିର୍ଣ୍ଣୟ, ଧର୍ମରେ କୁଟନୀତି ଓ ବନ୍ଦୋବସ୍ତ ପରିଚ୍ଛେଦ ଦ୍ରଷ୍ଟବ୍ୟ)। ସେ ଯାହାହେଉ, ସମତା ଭାବ ସମ୍ବନ୍ଧରେ ବ୍ୟତିକ୍ରମାତ୍ମକ ଆର୍ଯ୍ୟକର୍ମ-ସାଧନା-ଭ୍ରଷ୍ଟ ସଦ୍‌ବଂଶଜମାନେ ଶରୀରନ୍ତେ

ନୀଚଯୋନିଜାତ ହୋଇଥିଲେ ସଂସର୍ଗ ଓ ପୂର୍ବ ସଂସ୍କୃତ ବାସନାନୁସାରେ ସାଧାରଣଙ୍କର ଶ୍ରେଷ୍ଠକାର୍ଯ୍ୟ ଓ କୃଷ୍ଣନୀତ-ଶିକ୍ଷିତ ହୋଇପାରନ୍ତି; ମଧ୍ୟ କେହି କେହି ସତ୍‌ପଥଗାମୀ ହେଲେ ସଦ୍‌ଗତି ଲଭିପାରନ୍ତି; କିନ୍ତୁ ସନାତନ ଧର୍ମ କର୍ମସାଧକ ହୋଇ ନ ପାରନ୍ତି । ଉଚ୍ଚ-ନୀଚ କେବଳ ସ୍ଥୁଳ ଶରୀର ନେଇ ନିରୂପଣ । ଉତ୍କୃଷ୍ଟ ନିକୃଷ୍ଟାଦି ଭାବରେ ଜଗତ୍ ସୃଷ୍ଟ ହୋଇଅଛି । ସୁତରାଂ ସମତାରେ ସାଂସାରିକ କୌଣସି କାର୍ଯ୍ୟ ବା କିଛି ଚଳି ନ ପାରେ; ଏହା ନିର୍ଭୁଠ ସତ୍ୟ । ସନାତନଧର୍ମ-ଶାସ୍ତ୍ରୋକ୍ତ ବ୍ୟବସ୍ଥା ବ୍ୟତିକ୍ରମରୁ ଉଚ୍ଚ-ନୀଚ ବର୍ଣ୍ଣସଙ୍କରାଦି ବହୁସଂଖ୍ୟକ ଜାତି ସୃଷ୍ଟି ହୋଇଥିବା ହେତୁ ସାଂସାରିକ ପ୍ରତ୍ୟେକ କାର୍ଯ୍ୟ ଗୋଟିଏ ଗୋଟିଏ ଜାତି ଉପରେ ଗୋଟିଏ ଗୋଟିଏ କାର୍ଯ୍ୟ ନିହିତ ହେତୁ ତାହା ବଂଶପରଂପରାନୁସାରେ ଦକ୍ଷତା ସହ ସୁଚାରୁରୂପେ ଚଳି ଆସୁଥିଲା, ସନାତନୀୟ ସମସ୍ତେ ଗୋଟିଏ କୁଟୁମ୍ବ ପରି ଶୃଙ୍ଖଳିତ ହୋଇ ଚଳି ଆସୁଥିବାରୁ ଜଗତ୍ ଆନନ୍ଦମୟ ଥିଲା । ତାହା ବ୍ୟତିକ୍ରମରୁ ବିଶୃଙ୍ଖଳ ହୋଇଛି । ଏବେ ଅଧିକ ବିଶୃଙ୍ଖଳ ହେବାପାଇଁ ଉପକ୍ରମ ହେଉଛି ।

ସେ ଯାହାହେଉ, ଜୀବାତ୍ମାଭିମାନୀମାନେ ସ୍ଥୂଳଶରୀରରୂପାନ୍ତର ହେଲେ ଉଚ୍ଚ ନୀଚାଦି ବିପରୀତ ହୋଇପାରନ୍ତି । ରୂପାନ୍ତର ହେଲେ ମେଧ୍ୟାମେଧ୍ୟ ଭୌତିକବସ୍ତୁ କାଳ ଓ ପଞ୍ଚମହାଭୂତ ଏବଂ ପ୍ରକୃତିର ନିୟନ୍ତ୍ରଣ-ପ୍ରକ୍ରିୟାଦ୍ୱାରା ଅତି ଉପାଦେୟ ଓ ଅତି ଅମେଧ୍ୟ ହେବାର ତ ପ୍ରତ୍ୟକ୍ଷେ ଦେଖାଯାଉଛି । ନାନାପ୍ରକାର ଅମେଧ୍ୟାତ୍ମକ ସାର ବା ଖତରେ ସର୍ବପ୍ରକାର ଉପାଦେୟ ଖାଦ୍ୟ-ଶସ୍ୟ ଉତ୍ପନ୍ନ ହୋଇଥାଏ । ଉପର ମୃତ୍ତିକା ଅପବିତ୍ର ହେତୁ ଦ୍ୱାଦଶାଙ୍ଗୁଳ ନିମ୍ନସ୍ତର ମୃତ୍ତିକା ଶୌଚକାର୍ଯ୍ୟ ସକାଶେ ନିୟମ ଅଛି । ତଳସ୍ତର ବିଶୁଦ୍ଧ-ମୃତ୍ତିକାରେ କୌଣସି ଶସ୍ୟ-ବୃକ୍ଷ ବଢ଼ିପାରେ କି ? ଅତି ଅମେଧ୍ୟ ବିଷ୍ଠା-ଭୋଜୀ ପଶୁ ପ୍ରଭୃତିଙ୍କର

ମାଂସ ବା ବିଷ୍ଠାରୂପାନ୍ତର ପଶୁ-ମାଂସ ଖାଦ୍ୟରେ ପରିଣତ ହେଉଛି ଏବଂ ସେହି ଅମେଧ୍ୟ ବସ୍ତୁ ଶାକଶବଜୀ ବା ଫଳମୂଳରେ ପରିଣତ ହୋଇ ଅତି ଉପାଦେୟ ଖାଦ୍ୟରେ ପରିଣତ ହେଉଛି । ଅତି ଉପାଦେୟ ପବିତ୍ର ଖାଦ୍ୟ ଦେହ-ଯନ୍ତ୍ରରେ ପରିପାକ ହୋଇ ଅତି ଅମେଧ୍ୟ ବା ବିଷ୍ଠାରୂପରେ ପରିଣତ ହେଉଛି । ରୂପାନ୍ତର ହେଲେ ଭୌତିକ ବସ୍ତୁ ମାତ୍ରେଇ ବ୍ୟତିକ୍ରମ ବା ବିପରୀତ ହୋଇଥାଏ । ଏହି ଯୁକ୍ତି ଓ ଶାସ୍ତ୍ର-ସମ୍ମତଦ୍ୱାରା ତ ନିଶ୍ଚୟ ପ୍ରମାଣ ଯେ, ବର୍ତ୍ତମାନ ପୀଡ୍ୟ ଓ ପୀଡ଼କମାନେ ଦେହାନ୍ତେ ବିପରୀତ ସ୍ଥୂଳ-ଶରୀରଧାରୀ ହେବେଇ ହେବେ । ବିଗତ ସଂସ୍କୃତି ଅନୁଯାୟୀ ମ୍ଳେଚ୍ଛାନୁକରଣୀ ମ୍ଳେଚ୍ଛତ୍ୱ ଏବଂ ପବିତ୍ରାନୁକରଣୀ ପବିତ୍ରତ୍ୱ ଲଭିବେଇ ଲଭିବେ । "ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବାଭଜାମ୍ୟହଂ" । ଗୀତା । ମୂତରାଂ ଉଲ୍ଲିଖିତ ବା ବର୍ଣ୍ଣାଶ୍ରମୀ ଏବଂ ଅଶ୍ରମଧର୍ମୀମାନେ ଯେପରି ସମ୍ପ୍ରଦାୟୁକ୍ତ ସ୍ୱ ସ୍ୱ ଅଚରଣରୁ ଭ୍ରଷ୍ଟ ଦେଖାଯାନ୍ତି, ତାଙ୍କର ଯେ କି ଗତି ହୋଇପାରେ ଅନୁମାନ କରାଯାଉ । ଅତଏବ ବର୍ଣ୍ଣ ଓ କୌଳିକ ପ୍ରଥାନୁଯାୟୀ ନିଷିଦ୍ଧ ତ୍ୟାଗ, ସମୁଚିତ ପବିତ୍ରାଶନ, ଇନ୍ଦ୍ରିୟ ସଂଯମ, ପରନିଷ୍ଠ ପରାଂମୁଖ, ଦେଶ-କାଳ-ପାତ୍ରାନୁସାରେ ନିତ୍ୟନୈମିତ୍ତିକ ଓ ଦେବପିତୃକର୍ମାଦି ଏବଂ ସାଧ୍ୟାନୁସାରେ ପରୋପକାରାଦି ସାଧନାଦ୍ୱାରା ସମୁଚିତ ଯଥା—ଲଭରେ ସନ୍ତୁଷ୍ଟ ରହି ସତ୍ପଥରେ ଚଳୁଥିଲେ ଅଧୋଗତି ନ ହୋଇ ଶାନ୍ତି ଓ ସଦ୍‌ଗତି ନିଶ୍ଚୟ ମିଳିବ । ସାଧୂପଦେଶ, ଯଥା—'ଅନ୍ୟର କିଛି ଶ୍ରେୟ କରି ପାର ତ କର କିନ୍ତୁ ଅନିଷ୍ଟ କର ନାହିଁ ।'

ନିଜ ଧ୍ୱଂସର ହେତୁ; ଉଇ, ପିମ୍ପୁଡ଼ିଙ୍କଠାରେ ପକ୍ଷ ଜନ୍ମିଲେ ସେ ଉଦ୍ଧତରେ ଅକାଶକୁ ଉଡ଼ିବା ପରି ଶଢ଼ା, ପଚା, କାଦୁଅ, ପଙ୍କ, ବିଷ୍ଠା, ମଇଳାର ପରିଣାମ ବା ରୂପାନ୍ତର ଉପକରଣରେ ଗଠିତ ରକ୍ତ-ମାଂସାଦି କ୍ଳେଦମୟ ଅବର୍କନା-

ଶରୀରରେ ରହି ଷଡ୍‌ରିପୁର ବଶବର୍ତ୍ତୀ ହୋଇ ବିପ୍ଲବୀମାନେ ଏକମାତ୍ର ଭୂ-ମାତା ସନ୍ତାନ—ମାତା, ପିତା, ଭ୍ରାତା, ଭଗିନୀ, ସନ୍ତାନ ସନ୍ତତ ତୁଲ୍ୟ ସ୍ୱ-ପ୍ରଜା ବା ନିରୀହ, ପ୍ରତିକାରହୀନ ମହାପ୍ରାଣୀମାନଙ୍କୁ ଅତି କଦର୍ଯ୍ୟ ପୀଡ଼ା ଦେଇ ଓ କଲବଲ କରି ବିନାପରାଧରେ ବର୍ତ୍ତମାନ ଯେ ଧ୍ୱଂସ କରୁଛନ୍ତି, ସେମାନେ ଯେ ଜନ୍ମାନ୍ତରରେ ମାତା-ପିତା-ଭ୍ରାତା-ଭଗିନୀ-ସନ୍ତାନ-ସନ୍ତତି-ଶୂନ୍ୟ ହୋଇ ନଳାମୁହଁ ନର୍କକୁଣ୍ଡରେ ବା ରୌରବ-ନର୍କରେ ନାରକୀୟ-ଶରୀର ଧାରଣ କରି କଳ୍ପାବଧି କଲ୍‌ବଲ୍ ହେଉଥିବେ, ଏଥିରେ ଲେଶ ମାତ୍ର ସନ୍ଦେହ ନାହିଁ । ହିନ୍ଦୁଧର୍ମେତର ମତରେ ଥରେ ଜନ୍ମ, ଥରେ ମୃତ୍ୟୁ; ଅଜ ଜରାରୋଗାଦି ପୀଡ଼ିତ କଷ୍ଟଭୋଗୀର ଆରୋଗ୍ୟ ସମ୍ଭବ ନ ହେଲେ ସଦ୍ୟ ମାରିଦେବା ମତ ଆମ ଦେଶୀୟମାନେ ଅନୁକରଣ କରିବାର ଉପକ୍ରମ ହେବା ଅତି ଅନ୍ୟାୟ ଓ ଭ୍ରାନ୍ତ ଧାରଣା ।

ପଞ୍ଚଭୂତାତ୍ମକ ସ୍ଥୂଳ-ଶରୀର କଳୁଷ ବା ତଦ୍‌ବିକାର ଅତି ତୁଚ୍ଛ ଜଡନ୍ୟାଂଶଦ୍ୱାରା ସଂଘଟିତ ଅମ୍ଭମାନଙ୍କର ଏହି ଯେ ଇନ୍ଦ୍ରିୟ-ସମନ୍ୱିତ ବିକାରାତ୍ମକ ଜଘନ୍ୟ ନଶ୍ୱର ଶରୀର, ଏଥିରେ ଯେ ଅସଲ ମାଲିକ ଅତି ପବିତ୍ରାତ୍ମକ ପରାତ୍ପର ସର୍ବନିୟନ୍ତା ପରଂବ୍ରହ୍ମଙ୍କର ଅଂଶ ବା ସତ୍ତା କିମ୍ବା ପ୍ରତିବିମ୍ବାତ୍ମକ ଲିଙ୍ଗ-ଶରୀର-ବିଶିଷ୍ଟ ଜୀବାତ୍ମା ଅଛି; ଯାହାର ବିଦ୍ୟମାନରୁ ଶରୀର ଜୀବିତ, ତାହା ସକାଶେ କିଛି କାର୍ଯ୍ୟ ହେଉଛି କି ? ଏ ପ୍ରଶ୍ନର କାହାର କାହାରଠାରୁ ଅନାଧୁନିଆ ଉତ୍ତର ମିଳିଥାଏ. 'କେହି ଥିଲେ ଥିବ', 'ଅଛି ତ ଅଛି, ତାହାର ଗୋଟାଏ କାର୍ଯ୍ୟ କଣ ?' ସେ ଯାହା ହେଉ ଦ୍ୱୈତ-ଭାବାପନ୍ନ ତ୍ରିଗୁଣାତ୍ମକ ଦ୍ୱନ୍ଦ୍ୱମୟ ଓ ନାମରୂପାତ୍ମକ ସମସ୍ତ ଜଗତରେ ବା ସମସ୍ତଙ୍କଠାରେ ଭେଦ-ଭାବ ଦୃଢ଼ଭାବେ ବଦ୍ଧମୂଳ ହୋଇ ବରାବର ରହିଛି । ଅନ୍ୟ-ଦେଶୀୟ ସ୍ୱ-ଦେଶୀୟ ଭେଦ, ବିଭିନ୍ନ-ଜାତୀୟ ସ୍ୱ-ଜାତୀୟ ଭେଦ,

ସ୍ୱ-ସମ୍ପର୍କୀୟ, ସ୍ୱ-ଗୃହସ୍ଥ ପିତା-ପୁତ୍ର-ଜାୟା-ଦୁହିତା-ପତି-ଭ୍ରାତାଦି ଭେଦ । ଆଜି ଯେ ପରମ ମିତ୍ର, କାଲି ସେ ପରମ-ଶତ୍ରୁ; ଆଜି ଯେ ପରମ ଶତ୍ରୁ; କାଲି ସେ ପରମ ମିତ୍ର । ଏକରକ୍ତ-ସମ୍ପର୍କୀୟ, ଏକ ବଂଶୀୟ, ଏକ ପିତା-ମାତାଠାରୁ ଜାତ ହୋଇ ମଧ୍ୟ ଅତ୍ୟନ୍ତ ସୁହୃଦ ଏକାତ୍ମାପରି ଚଳୁଥିବା ମାନବମାନେ ସାମାନ୍ୟ ମାତ୍ର ଛିଦ୍ର ନେଇ ଅତି ଶତ୍ରୁ ହୋଇଥାନ୍ତି; ଅତି ସୁଦୂର ଶତ୍ରୁ ମଧ୍ୟ ମିତ୍ର ହୋଇଥାଏ; ଇତ୍ୟାଦି ଇତ୍ୟାଦି । ତେବେ ଦେଶ-କାଳ-ପାତ୍ର ଭେଦରେ ନ୍ୟୁନାଧିକ ଥାଇପାରେ ମାତ୍ର । ଯାହା ହେଉ ତ୍ରିଗୁଣାତ୍ମକ ନାମରୂପ ମାନେଇ ଭେଦ ବଦ୍ଧମୂଳ ଭାବରେ ବରାବର ରହିଛି । ଭୌତିକ-ଶରୀର ଧାରଣ କରିଥିବା ତକ ଭେଦ-ଭାବ ତ୍ୟାଗ କରି ହେବ ନାହିଁ । ଏହା ନିଷ୍ଠୟ ! ମହାସତ୍ୟ, ଧ୍ରୁବ ! ( ଜାତି ଭେଦ ବିଷୟ ନିବେଦନ ପୁସ୍ତକରେ ଦ୍ରଷ୍ଟବ୍ୟ ) ।

"ଦେହଃ କିମନ୍ନଦାତୁଃ ସ୍ୱଂ ନିଷେକ୍ତୁର୍ମାତୁରେବ ଚ ।
ମାତୁଃପିତୁର୍ବା ବଳିନଃ କ୍ରେତୁରଗ୍ନେଃ ଶୁନୋଽପି ଚ । ୧୧।୧୦ ଭାଃ
ଏବଂ ସାଧାରଣଂ ଦେହମବ୍ୟକ୍ତପ୍ରଭବାଽପ୍ୟୟଂ ।
କୋ ବିଦ୍ୱାନାତ୍ମସାତ୍ କୃତ୍ୱା ହନ୍ତି ଜନ୍ତୂନୃତେଽସତଃ" ।୧୨। ଅଃ ୧୦

ଦେହ କଣ ଅନ୍ନଦାତାର, କି ପିତାର, କି ମାତାର, କି ନିଜର, କି ମାତାମହର, କି କ୍ରେତାର, କି ବଳିଷ୍ଠ ବ୍ୟକ୍ତିର, କି ଅଗ୍ନିର, କି କୁକୁରାଦିର; ପ୍ରକୃତରେ କାହାର ଜଣାପାଏ ନାହିଁ । ତେବେତ ଦେହ ସାଧାରଣର । ଅବ୍ୟକ୍ତରୁ ଉତ୍ପନ୍ନ ହୋଇଛି, ସେହି ଅବ୍ୟକ୍ତରେ ଲୀନ ହେବ । ଅସତ ବ୍ୟତୀତ କେଉଁ ବିଦ୍ୱାନ୍ ବ୍ୟକ୍ତି ସେହି ଦେହକୁ ଆତ୍ମା ବା ନିଜର ଭାବି ପ୍ରାଣୀହତ୍ୟା କରିପାରେ ? ନିଜର ବା ଆତ୍ମୀୟ ସ୍ୱଜନଙ୍କ ନଶ୍ୱର ଦେହର ହିତ-ସାଧନ ସକାଶେ ଇନ୍ଦ୍ରିୟ ସମନ୍ୱିତ ନିଜର ଶରୀରଦ୍ୱାରା ଲୋକେ ମମତାବଶତଃ ଯେ ସବୁ କାର୍ଯ୍ୟରେ

ଅଜୀବନ ମଙ୍କିଛନ୍ତି, ତହିଁରେ କିଛୁ ମାତ୍ର ଶ୍ରେୟ ନାହିଁ କି କେହି ନିଜର ନୁହେ । ଜଣାଶୁଣା ଏହି ସ୍ଥୂଳ-ଜଗତ ମଧ୍ୟରେ ଯେତେ ଯେତେ ବା ଯେ ସବୁ ମହାଦେଶ, ଦେଶ, ପ୍ରଦେଶ, ଜିଲ୍ଲା, ସହର, ପ୍ରଗନା, ଗ୍ରାମ ଓ ତନ୍ମଧ୍ୟସ୍ଥ ନିଜ ଗୃହ ଏବଂ ତଦନ୍ତର୍ଗତ ଧନ ଜନ ପ୍ରଭୃତି ସ୍ୱସମ୍ବନ୍ଧ ବା ମମତା ନେଇ କ୍ରମଶଃ ସର୍ବଶ୍ରେଷ୍ଠ ମମତାତ୍ମକ 'ସ୍ୱ-ଶରୀର' ନିଜର ବୋଲି ମମତାରେ ସମସ୍ତେ ମୋହିତ ହୋଇଥିଲେହେଁ, 'ପ୍ରକୃତରେ ନିଜ ଦେହରେ କୌଣସି କ୍ଷତ ବା ପୀଡ଼ା ହେଲେ ସେ ପୀଡ଼ା-ଜନିତ ଦୁଃଖାଦି ଅନ୍ୟ କେହି ଅନୁଭବ କରିଥାଏ କି' ? ଅନୁଭବ କରେ ଯେ ଶରୀରୀ ସେ ସେହି ଦେହକୁ ତ୍ୟାଗ କରିବାକୁ ବରାବର କୁଣ୍ଠିତ ହେଉ-ଥିଲେହେଁ ସମୟାନୁସାରେ ସବୁ ସମ୍ବନ୍ଧସହ ସେହି ଦେହକୁ ଅନିଚ୍ଛାସତ୍ତ୍ୱେ ତ୍ୟାଗ କରି ସ୍ୱ-କୃତ ପାପ ପୁଣ୍ୟାତ୍ମକ କର୍ମାନୁସାରେ ଯେପରି 'କୁଲି-କୁକୁର ଯା ଘରେ ପଶି ତା ଘରେ ପଶି କୌଣସିଠାରେ କିଛୁ ଖାଇବାକୁ ପାଏ ବା କୌଣସିଠାରେ ମାଡ଼ ଗାଳି ଦ୍ୱନ୍ଦ୍ୱାଦି ଲଭିଥାଏ,' ସେହିପରି ଶରୀରୀ ନିଦ୍ରାନ୍ତର୍ଗତ କ୍ଷଣିକାକ ସ୍ୱପ୍ନଭୋଗ ତୁଲ୍ୟ ଇହ-ଶରୀରରେ ଅଜୀବନ ସୁଖ ଦୁଃଖ ଭୋଗ; ମଧ୍ୟ ବହୁକାଳ-ସ୍ଥାୟୀ ସ୍ୱପ୍ନ ପରି ଏବଂ ଦେହାନ୍ତେ ଅନ୍ୟ ଶାରୀରିକ ଭୋଗ ମଧ୍ୟ ତଦ୍ରୂପ । ଚେଷ୍ଟା ଓ ପ୍ରତିକାର-ରହିତ ସ୍ଥାବର ମାନେହିଁ ସୁଖ ଦୁଃଖାଦି ଅନୁଭବ କରିଥାନ୍ତି; ବାଧା ପାଇଲେ ଅନ୍ୟ ଆଡ଼େ ଚଳନ୍ତି । ଭବିଷ୍ୟତ-ବିବେକ-ହୀନ ମାନବେତର ଜଙ୍ଗମମାନେ ସ୍ୱାଭାବିକ ସାକ୍ଷାତ ଇନ୍ଦ୍ରିୟ-ଭୋଗ-ବଶବର୍ତ୍ତୀ ହୋଇଥାନ୍ତି । ମନୁଷ୍ୟମାନେହିଁ ଇନ୍ଦ୍ରିୟଭୋଗ ସଙ୍ଗେ ଭୂତକାଳରୁ ବିବେକଦ୍ୱାରା ଯଥୃଚ୍ଛୋନାସ୍ତି-ଚେଷ୍ଟା କରି-ଥାନ୍ତି । କିନ୍ତୁ ସଦ୍‌ବିବେକୀ ପ୍ରକୃତ-ମନୁଷ୍ୟମାନେ କଳୁଷାତ୍ମକ ନଶ୍ୱର-ସ୍ଥୂଳଦେହାନ୍ତେ ଯାହା ଭୋଗ କରିବାକୁ ହେବ

ତତ୍ପ୍ରତି ଏକାନ୍ତ ଲକ୍ଷ ରଖି ସମୁଚିତ ବୈଷୟିକ କାର୍ଯ୍ୟ ଓ ସଦନୁଷ୍ଠାନରେ ନିବିଷ୍ଟ ଥାନ୍ତି। ସଦସଦାତ୍ମକ-କାର୍ଯ୍ୟାନୁଯାୟୀ ଅନ୍ୟ ସମସ୍ତେ ତଦନ୍ ରୂପ ଅଶେଷ କୋଟି ଯୋନିରେ ଭ୍ରମଣ କରିବା ନିଶ୍ଚୟ । ଉପରୋକ୍ତ ଶ୍ୱାନରୂପ ଶରୀର ଅନ୍ୟ ଯେ କୌଣସି ଗୃହରୂପ ଶରୀରରେ ପଶି ପୂର୍ବ ନିଜକୃତ ପାପ-ପୁଣ୍ୟାତ୍ମକ ଦୁଃଖ ବା ସୁଖାଦି ଭୋଗ କରିବ। ଭାଃ ୧୦ ଅ ୧୪ ବ୍ରହ୍ମୋକ୍ତି । ଅତଏବ ସାବଧାନ !

ନିତାପାଦି କଷ୍ଟ ଯେ ଯେତେ ମାତ୍ରା ପର୍ଯ୍ୟନ୍ତ ସହି ତେଡ଼ିଥାଏ, ସମଯ୍କମେ ସେ ପର୍ଯ୍ୟନ୍ତ ବାଧା ତାକୁ କଷ୍ଟ ଦେଇ ନ ପାରେ । ସେହିପରି ବିବିଧ ସୁଖ ଯେ ଯେତେ ମାତ୍ରା ପର୍ଯ୍ୟନ୍ତ ଭୋଗ କରିଥାଏ, ତେତେ ସୁଖ ତାକୁ ସବିଶେଷ ଆନନ୍ଦ ଦେଇ ନ ପାରେ । ଯେ ଯେତେ କଷ୍ଟ ସହି ଜୀବିତ ଥାଏ, ଦେହ ତ୍ୟାଗ ବା ମରଣ କଷ୍ଟ ସେ ସବୁଠାରୁ ଅତ୍ୟନ୍ତ କଷ୍ଟକର । ଯତଃ ଯେ ଯେତେ କଷ୍ଟ ସହି ଜୀବିତ ରହିଥାଏ, ମରଣ କଷ୍ଟ ସେ ସବୁଠାରୁ ଅତ୍ୟନ୍ତ କଠିନ ହେତୁ ତାକୁ ଯୁକ୍ତିରେ ତେଡ଼ି ନ ପାରିବାରୁ ଯମ ବା ଯମଦୂତ ଲିଙ୍ଗ-ଶରୀରାତ୍ମକ ଜୀବାତ୍ମାକୁ ଅଲକ୍ଷିତ ପାଶବନ୍ଧନଦ୍ୱାରା ପଞ୍ଚଭୂତାତ୍ମକ ସ୍ଥୂଳ-ଶରୀରରୁ ଆକର୍ଷଣ କରି ନେଇଯାନ୍ତି । ଅତଃ ସେ କଷ୍ଟର ମାତ୍ରା କେତେ କଠିନ, ଅନୁମାନ କରାଯାଉ । ନିର୍ବିକଳ୍ପକ ସମାଧି-ସିଦ୍ଧ ଯୋଗୀର ଶରୀରତ୍ୟାଗ ଇଚ୍ଛାଧୀନ । ଆଉ ସନାତନଧର୍ମ ଶାସ୍ତ୍ରୋକ୍ତ ବିଧିରେ ପବିତ୍ର ରହି ସଦନୁଷ୍ଠାନ ଓ ଭଗବାନଙ୍କ ପ୍ରତି ଅଭ୍ୟାସ ବଶରେ ଲକ୍ଷ ରଖିଥିଲେ ସେ କଷ୍ଟକୁ ସେ ତେତେଦୂର ଅନୁଭବ କରିବ ନାହିଁ। ଏହା ନିଶ୍ଚୟ ।

"ଧନାନି ଭୂମୌ ପଶବଶ୍ଚ ଗୋଷ୍ଠେ
ଭାର୍ଯ୍ୟାଗୃହଦ୍ୱାରି ଜନଃ ଶ୍ମଶାନେ ।
ଦେହ ଶ୍ଚିତାୟାଂ ପରଲୋକମାର୍ଗେ
କର୍ମାନୁଗୋ ଗଚ୍ଛତି ଜୀବ ଏକଃ ॥"

କେତେକ ମୌରସି ସମ୍ପତ୍ତି ବା ନାନାପ୍ରକାର କଳ-କୌଶଳରେ ବହୁ ବିତ୍ତ ସଞ୍ଚିତ କରି ନିଜେ ଉପଭୋଗ ବା ଅବସ୍ଥାନୁଯାୟୀ ସମୁଚିତ ସତ୍ପାତ୍ରରେ ନ୍ୟସ୍ତ କି କୌଣସି ଯଶଃ କୀର୍ତ୍ତିକର କାର୍ଯ୍ୟ କିମ୍ବା ସାଧାରଣ ହିତକର କାର୍ଯ୍ୟ କରନ୍ତି ନାହିଁ । ବିଶେଷତଃ ଇନ୍ଦ୍ରିୟ ଜଗିବାପରି ଜଗିରହି କୌଣସି ତୀର୍ଥାଟନ ମଧ୍ୟ କରିପାରନ୍ତି ନାହିଁ । ସେମାନେ ଗଲାବେଳେ ନିଜର କୌଣସି ଇନ୍ଦ୍ରିୟଦ୍ୱାରା ବା କୌଣସି କୌଶଳରେ ତହିଁରୁ କିଛି ବାନ୍ଧିକରି ନେଇପାରିବାର ଉପାୟ ଭାବୁଛନ୍ତି କି ? ମଧ୍ୟ ଦେଖାଯାଏ ଯେ କେତେକଙ୍କର ଉତ୍ତରାଧିକାରୀ ସଙ୍ଗେ ସଙ୍ଗେ ସବୁ ଉଡ଼ାଇ ଦେଇଥାନ୍ତି । ପ୍ରବାଦ ଅଛି, 'ପୁଅ ଯଦି ଯୋଗ୍ୟ ହୁଏ ଧନ ସଞ୍ଚୁ କାହିଁକି ? ପୁଅ ଯଦି ଅଯୋଗ୍ୟ ହୁଏ ଧନ ସଞ୍ଚୁ କାହିଁକି ?' ସେ ଯାହା ହେଉ, କୌଣସି ସତ୍କାର୍ଯ୍ୟ ସକାଶେ କେହି ଅର୍ଥିକ-ପ୍ରାର୍ଥୀ ହେଲେ ସମଧିକ ଧନୀ ବା ଦଶ ବିଂଶ କିମ୍ବା ଶତ ଶତ ସହସ୍ର ସହସ୍ର ପାଉଥିବା ରୋଜଗାରି ମାନେଇ—ସବିଶେଷ ବିତ୍ତଶାଳୀ ବା ତାଙ୍କଠାରୁ ଦଶ ପାଞ୍ଚଟଙ୍କା ଅଧିକ ପାଉଥିବା ରୋଜଗାରିଙ୍କ ନାମ ସଙ୍କେତ ଓ ଲକ୍ଷ୍ୟ କରି କହିଥାନ୍ତି, 'ସେ ସବୁ ଧନୀକ ବା ମୋଟା-ଦରମା ପାଉଥିବା ବ୍ୟକ୍ତିମାନେ ଏ ସବୁ ବିଷୟରେ ସାହାଯ୍ୟ କରି ପାରନ୍ତି ( ନିଜର ଯେତେ ସଞ୍ଚିତ ଥିଲେହେଁ ) 'ଆମ୍ଭଙ୍କୁ ତ ଅଣ୍ଟୁ ନାହିଁ' ବୋଲି ମଧ୍ୟ କହିଥାନ୍ତି । ତୀର୍ଥଧାମାଦି ପବିତ୍ର ପୀଠରେ, ଗ୍ରହଣ ପର୍ବାଗାଦି ପବିତ୍ର କାଳରେ, ନୈଷ୍ଠିକ ବ୍ରାହ୍ମଣାଦି ସତ୍ପାତ୍ରରେ ଭକ୍ତି-ଶ୍ରଦ୍ଧାସମନ୍ୱିତ ସବିଧିରେ ଯାହା ନ୍ୟସ୍ତ ହୁଏ, ତାହା ସାତ୍ତ୍ୱିକ-ଦାନ ହେତୁ ଗ୍ରହିତାର ସତ୍କର୍ମାଂଶ ଦାତା ଲଭି ସ୍ୱର୍ଗାଦି ମହତ୍ ଲୋକରେ ମହତ୍ ଫଳ ଲଭିଥାଏ; ମଧ୍ୟ ଇହଲୋକରେ ଅଭୀଷ୍ଟ ସିଦ୍ଧିଲାଭ ଓ ବିପଦ ଖଣ୍ଡନ ହୋଇଥାଏ । ପ୍ରତ୍ୟୁପକାର ଓ ନାମ ଖ୍ୟାତି ସକାଶେ ତଦ୍ରୂପ-

ଯୁକ୍ତ ଲୋକଙ୍କୁ ଯାହା ଦିଆଯାଏ, ସେ ରାଜସିକ-ଦାନର ଫଳ ଇହଲୋକରେ ଭୋଗ ହୁଏ । ଅନ୍ୟର ଅନିଷ୍ଟ ସାଧନ ଓ କୁତ୍ସିତ କାର୍ଯ୍ୟ ସକାଶେ ଯେଉଁ ତାମସିକ ବ୍ୟୟ ହୁଏ ବା କୁତ୍ସିତ ଲୋକଙ୍କୁ ଦିଆଯାଏ, ତାହାର ଫଳ ନର୍କଲୋକରେ କୁତ୍ସିତ କଷ୍ଟଭୋଗ ହୋଇଥାଏ । ଆଉ ଯେ କେହି ଯାହା ମାଗିଲା, ସମସ୍ତେ ଭଗବଦଂଶ ଭାବି ଅକାତର ଓ ସଦୟ ହୃଦୟରେ ସର୍ବସ୍ୱ ମଧ୍ୟ ଦିଆଯାଇ ଏବଂ ମନ-ବଚନ କର୍ତ୍ତବ୍ୟରେ ପରୋପକାର କରୁଥିଲେ ସମସ୍ତ 'ଭଗବନ୍ମୟ' ବୋଲି ଲକ୍ଷ୍ୟ ଥିବାରୁ ବା ସାମ୍ୟଭାବ ହେତୁ ସେ ଅତି ଉତ୍କୃଷ୍ଟ ସଦ୍‌ଗତି ଲଭିଥାଏ । ବିଶେଷତଃ ଭିକ୍ଷୋପଜୀବୀ ଅତି ଲୋଲୁପ କଷ୍ଟ 'ସଞ୍ଚିତ ଧନୀ ପଣ୍ଡିତ ବ୍ରାହ୍ମଣ ପ୍ରବାଦ ପରି ଯେଉଁ ଧନରେ ଯାହାର ଅଧିକାର ନାହିଁ, ସେ କୃପଣ, ଲୋଲୁପ, କୁତ୍ସିତ-ମତି ପାପାତ୍ମାର ଭଣ୍ଡାରରେ ଯେତେ ଧନ ସଞ୍ଚିତ ଥିଲେହେଁ, ତାହା ସଦନୁଷ୍ଠାନ, ସଦ୍ଦାନ, ସଦ୍‌ବ୍ୟୟ ବା ନିଜ ଉପଭୋଗରେ କଦାଚ ଲାଗି ନ ପାରେ ।

"ଭବ୍ୟାନାଞ୍ଚ ସୁରାଇନେ ଗୁରୁଜନେ ଦୀନେ ଦ୍ୱିଜେ ବାନ୍ଧବେ
ସମ୍ପ୍ରାପ୍ତେ ଚ ବିବାହକର୍ମଣି ଶୁଭେ ଯଜ୍ଞାଗ୍ନି ସନ୍ତର୍ପଣେ ।
ନାଗ୍ନୁନାମିହସଞ୍ଚିତଂ ଧନ ମହୋ ପାପେନ ସଂଯାସ୍ୟତେ
ଦ୍ୟୂତେ ସ୍ତ୍ରୀବ୍ୟସନେ ଜଳେଽନଳମୁଖେ
ଶୂନ୍ୟେ ନୃପେ ତସ୍କରେ ॥"

ଅହୋ "ଦାତାରଂ କୃପଣଂ ମନ୍ୟେ ମୃତୋଽପ୍ୟର୍ଥଂ ନ ମୁଞ୍ଚତି ।
ଅଦାତା କୃପଣଃ ଶ୍ଳାଘ୍ୟ ସର୍ବମୁତ୍ସୃଜ୍ୟ ଗଚ୍ଛତି ॥"

"ଦାନଭୋଗବହୀନେନ ଧନେନ ଧନିନୋ ଯଦି ।
ପୃଥ୍ୱୀ-ଖାତ-ନିଖାତେନ ଧନେନ ଧନିନୋ ବୟଂ ।
ସମ୍ପତ୍ତିମିଚ୍ଛନ୍ତିଲୋକଃ ପଶ୍ୟନ୍ତି ପଶ୍ୟତି ।
ବିପଦାଞ୍ଜନଚୂର୍ଣ୍ଣେନ ପୁନଃ ପଶ୍ୟତି ନିର୍ମଳଂ ॥"

ତମିର-ରୋଗୋପମ—ସମ୍ପତ୍ତ ବା ଶକ୍ତିଶାଳୀ ଅଧିକାଂଶ ଲୋକମାନେ ଜଗତରେ ଚକ୍ଷୁ ଖୋଲିଥିଲେହେଁ ପ୍ରକୃତରେ କଛି ମାତ୍ର ଦେଖିପାରନ୍ତି ନାହିଁ । ବିପଦଗ୍ରସ୍ତ-ରୂପ ଅଞ୍ଜନ-ଦ୍ୱାରା ସେହିମାନେ ସମସ୍ତଙ୍କୁ ନିର୍ମଳ ଭାବେ ଦେଖିପାରନ୍ତି । ଅତ ସବିଶେଷ ସାମାନ୍ୟସଂଖ୍ୟକ ବିଶିଷ୍ଟ ବ୍ୟକ୍ତି ଅଛନ୍ତି, ତାଙ୍କର ପ୍ରାପ୍ତ ସମସ୍ତ ଆୟ ସଙ୍ଗେ ସଙ୍ଗେ ସମ୍ପ୍ରୟୁକ୍ତ ଭାବେ ବ୍ୟୟ ହୋଇଥାଏ । ବିଶେଷତଃ ଜଗତସ୍ଥ ସମସ୍ତଙ୍କଠାରୁ ଏବଂ ନିଜଠାରୁ ମଧ୍ୟ ସବୁ ବିଷୟରେ ଶ୍ରେଷ୍ଠତ୍ୱ ଅଧିକ ବାଞ୍ଛା କରୁଥିବା ନିଜ ପୁତ୍ରକୁ 'ଧନ ନଷ୍ଟ କରିପାରେ' ଭାବି ଧନୀକମାନେ ଭୟ କରିଥାନ୍ତି । "ପୁତ୍ରାଦପି ଧନଭାଜାଂ ଭୀତଃ ସର୍ବତ୍ରୈଷା କଥିତା ନୀତଃ ।" ଶଙ୍କରଃ । ପ୍ରବାଦ ଅଛି—'ଯାହା ଖାଇଯିବ ପେଟକୁ, ଯାହା ଦେଇଯିବ ବାଟକୁ, ଯାହା ସଞ୍ଚିଥିବ ଖଣ୍ଟକୁ ।'

ଆଜକାଲି ଅଧିକାଂଶ ଦେହକୁ ସର୍ବସ୍ୱ ବା ପ୍ରଧାନ ମଣି, 'ଜାତିଭେଦ କିଛି ନୁହେ, ସମସ୍ତେ ଏକଜାତି' ବୋଲି କହି ହରିଜନାନ୍ତର୍ଗତ ନ୍ୟୂନାଧିକ ନାନା ଜାତିଭେଦ ଆଗ ଉଠାଇ ନ ପାରି ଅତି ଉତ୍କୃଷ୍ଟ ଓ ଅତି ନିକୃଷ୍ଟଙ୍କୁ ଏକ କରିବାକୁ ଦାମ୍ଭିକଭାବରେ ହୋ ହା ହୋଇ ଅତି ଉଦ୍ଧତ କାର୍ଯ୍ୟ ଯେ କରୁଛନ୍ତି ତାହା ଗୋଟିଏ ମହାଭ୍ରମ ନୁହେ କି ?

## ୧୪ । କଳିକାଳ ରୀତି ବା କଲ୍କି ଅବତାର

ନିର୍ଗୁଣାତୀତ, ଅନିର୍ଦ୍ଦେଶ୍ୟ, ସନାତନ ପରଂବ୍ରହ୍ମଙ୍କର ସଙ୍କେତ ଏକାକ୍ଷରରୁ ଦୃଶ୍ୟ, ଶ୍ରାବ୍ୟ ବା ନାମରୂପାତ୍ମକ ସମସ୍ତ ପ୍ରକଟ ହୋଇଛି । ତତ୍ସଙ୍କେତ ଏକାକ୍ଷର ବା ପ୍ରଣବ କ୍ରମେ କ୍ରମେ କ୍ଷରି ତ୍ର୍ୟକ୍ଷର, ଚତୁର୍ବିଂଶାକ୍ଷର, ଚତୁଃଶ୍ଳୋକ, ଦଶଶ୍ଳୋକ, ଶତଶ୍ଳୋକ, ଅଷ୍ଟାଦଶ ସହସ୍ର ସଂଖ୍ୟକ ଶ୍ଳୋକାତ୍ମକ ସର୍ବୋତ୍କୃଷ୍ଟ ଅତି ଉପାଦେୟ ଗ୍ରନ୍ଥ ଶ୍ରୀମଦ୍ଭାଗବତାକାରରେ ପ୍ରଚୁର । ଭଗବଦଂଶାବତାର ତ୍ରିକାଳଜ୍ଞ ଭଗବାନ୍ ବ୍ୟାସଦେବ

ବେଦଦ୍ୱନ୍ଦ୍ବ ବେଦାନ୍ତାଖ୍ୟାରେ, ଅଷ୍ଟାଦଶ ପୁରାଣ, ପଞ୍ଚମବେଦ ସ୍ୱରୂପ ମହାଭାରତାଦି ରଚନା ପରେ ଝମୋଲ୍ଲସ୍ଥ ଲଭି "ଭବତ ବଞ୍ଚିତମଃ କ୍ରମଶୋ ଜନଃ" ଶେଷରେ ଶ୍ରୀମଦ୍ଭାଗବତ ପ୍ରକଟ କରିଥିଲେ । ତହିଁରେ ସୃଷ୍ଟିକ୍ରମ, ପାଳନ, ସଂହାର ଏବଂ ଭଗବଦ୍ଭକ୍ତି ପୂର୍ଣ୍ଣରୂପରେ ବର୍ଣ୍ଣିତ ହୋଇଥିଲେ ହେଁ ଯୋଗ, ଜ୍ଞାନ, ଯଜ୍ଞ, ପାପ ଭେଦରେ ସକାମ ନିଷ୍କାମ କର୍ମ, ବର୍ଣ୍ଣ ଧର୍ମ, ଆଶ୍ରମ ଧର୍ମ, ଜଗତ ପାଳନ, ଶାସନ, ପାପପୁଣ୍ୟ ବ୍ୟତିକ୍ରମର ପ୍ରାୟଶ୍ଚିତ୍ତ, ଭୂଗୋଳ, ଖଗୋଳ, ଯୁଗଧର୍ମ, ଐତିହାସିକ ଘଟନା ପ୍ରଭୃତି ଯାବତୀୟ ବିଷୟ ଅତ୍ର ବେଦ ଓ ସମସ୍ତ ପୁରାଣର ସଂକ୍ଷେପ-ମର୍ମ ଅଭ୍ରାନ୍ତଭାବରେ ସନ୍ନିବେଶିତ ହୋଇଅଛି । "ବିଦ୍ୟା ଭାଗବତା-ବଧି" ଶ୍ରୀମଦ୍ଭାଗବତ ମତରୁ ଯାହା ବ୍ୟତିକ୍ରମ ତାକୁ ଅଭ୍ରାନ୍ତ ବୋଲିଯାଇ ନ ପାରେ । ତହିଁରେ କଳିକାଳ ଗୀତ ମୀତ ଓ ଭଗବାନଙ୍କର କଳ୍କୀ ଅବତାର ସମ୍ବନ୍ଧରେ ଦ୍ୱିତୀୟ ସ୍କନ୍ଧ ଏବଂ ଦ୍ୱାଦଶ ସ୍କନ୍ଧରେ ଯାହା ଯାହା ଲେଖାଅଛି; ଅସ୍ମାରାମ ଶୁକଦେବ ପତି ସେହି ବିଷୟକୁ ରାଜାଧିରାଜ ରାଜର୍ଷି ପରୀକ୍ଷିତଙ୍କୁ ଗଙ୍ଗାକୂଳରେ ସମସ୍ତ ମହର୍ଷି, ମୁନି, ରାଜା, ମହାରାଜା ଏବଂ ଅନ୍ୟାନ୍ୟ ସିଦ୍ଧ, ବିଶିଷ୍ଟ ବ୍ୟକ୍ତିମାନଙ୍କ ସମକ୍ଷରେ କହିଥିଲେ । ମଧ୍ୟ ନୈମିଷାରଣ୍ୟରେ ସୂତ ପୌରାଣିକ ଶୌନକାଦି ମୁନି-ମାନଙ୍କୁ ସେହି ବିଷୟ ଶୁଣାଇଥିଲେ । ତାହା ଅନୁସନ୍ଧାନ କରାଯାଉ । ତନ୍ମଧ୍ୟରୁ କିଞ୍ଚିନ୍ମାତ୍ର । ସୃଷ୍ଟି-ସ୍ରଷ୍ଟା ପ୍ରଥମରେ ବ୍ରହ୍ମା ନାରଦଙ୍କୁ କହିଥିଲେ :—

"ଯର୍ହ୍ୟାଲୟେଷ୍ୱପି ସତାଂ ନ କଥା ହରେଃ ସ୍ୟୁଃ
ପାଷଣ୍ଡିନୋ ଦ୍ୱିଜଜନା ବୃଷଳା ନୃଦେବାଃ ।
ସ୍ୱାହା ସ୍ୱଧା ବଷଡ଼ିତି ସ୍ମ ଗିରୋ ନ ଯତ୍ର
ଶାସ୍ତା ଭବିଷ୍ୟତି କଲେର୍ଭଗବାନ୍ ଯୁଗାନ୍ତେ" ।ଭା: ସ୍କ: ୨ ଅ:୭

'କଳିଯୁଗରେ ଯେତେବେଳେ ସଦ୍‌ବର୍ଣ୍ଣମାନଙ୍କ ଘରେ ହରିକଥା ଉଚ୍ଚାରଣ ହେବ ନାହିଁ; ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟମାନେ ନାସ୍ତିକ ହୋଇ ଉଠିବେ ଏବଂ ଶୂଦ୍ରମାନେ ରାଜ୍ୟ ଶାସନ କରିବେ ; ସ୍ୱାହା, ସ୍ୱଧା, ବଷଟ୍‌କାର ଉଚ୍ଚାରଣ ହେବ ନାହିଁ ଅର୍ଥାତ୍ ଦେବକର୍ମ, ପିତୃକର୍ମ, ଯଜ୍ଞକର୍ମ ବନ୍ଦ ହେବ; ସେହି ସମୟରେ ଭଗବାନ୍ କଳ୍କୀରୂପେ ଅବତୀର୍ଣ୍ଣ ହୋଇ କଳିର ଶାସନ କରିବେ ବା ମ୍ଳେଚ୍ଛ ସଂହାର କରିବେ ।' ବର୍ତ୍ତମାନ୍ ଯେଉଁମାନେ ସଭ୍ୟ ବୋଲି ପରିଚିତ, ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ପ୍ରତି ଉପରୋକ୍ତ ବିଷୟ ପ୍ରଯୁଜ୍ୟ ନୁହେ କି ? ଅଧିକାଂଶ ବା ଅଜ୍ଞ ମାନେଇ ତାଙ୍କୁ ଉତ୍କୃଷ୍ଟ ମନେ କରୁଛନ୍ତି, ସୁତରାଂ ତାଙ୍କ କାର୍ଯ୍ୟକୁ ସେମାନେ ଅନୁକରଣ କରିବେ ନାହିଁ କି ?

"ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନାଃ
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ" ।୨୧।୩ଗୀତା
"ତସ୍ମିନ୍ ଲବ୍‌ଧ୍ୱା ଦୁରାଗ୍ରହା ନାନ୍ଧ୍ରାଃ ଶୁଷ୍କବୈରିଣଃ ।
ଦୁର୍ଭଗା ଭୂରିତର୍ଷାଶ୍ଚ ଶୂଦ୍ରଦାସୋତ୍ତରାଃ ପ୍ରଜାଃ ।୨୫ଭା୧୨ଶ
ହ୍ରସ୍ୱାକାରା ମହାହାରା ଭୂର୍ଯ୍ୟତ୍ୟାପଗତହ୍ରିୟଃ ।
ଶଶ୍ୱତ୍ କଟୁକଭାଷିଣ୍ୟ ଶ୍ଚୌର୍ଯ୍ୟମାୟୋରୁସାହସାଃ ।୩୦।
ଶୂଦ୍ରାଃ ପ୍ରତିଗ୍ରହିଷ୍ୟନ୍ତି ତପବେଶୋପଜୀବନଃ ।
ଧର୍ମଂ ବକ୍ଷ୍ୟନ୍ତ୍ୟଧର୍ମଜ୍ଞା ଅଧିରୁହ୍ୟୋତ୍ତମାସନଂ । ୩୮ ।"

'ଶ୍ରେଷ୍ଠ ବ୍ୟକ୍ତି ଯେଉଁ କର୍ମ ଆଚରଣ କରନ୍ତି, ଇତର ଲୋକମାନେ ସେହି ସେହି କର୍ମ କରନ୍ତି ଏବଂ ଶ୍ରେଷ୍ଠଲୋକ ଯାହାକୁ ପ୍ରମାଣ ବୋଲି କହନ୍ତି ଅନ୍ୟ ଲୋକମାନେ ତାହାର ଅନୁକରଣ କରନ୍ତି' ।୨୧। ଗୀତା ।

'କଳିଯୁଗରେ ଶୂଦ୍ର ଓ କୈବର୍ତ୍ତମାନେ ଅଧିକ ବଢ଼ିବେ । ସେମାନେ ଲୋଭୀ, ଦୁରାଗ୍ରହ ଓ ଦୟାହୀନ ହେବେ ।

ଅନର୍ଥକ ବିବାଦକାରୀ, ହତଭାଗ୍ୟ ଏବଂ ଅତିଶୟ ସ୍ପୃହାଶୀଳ ହେବେ ।୨୬। ରମଣୀମାନେ ଖର୍ବାକାର ହେବେ, ଅଧିକ ଭୋଜନ କରିବେ, ବହୁ ସନ୍ତାନ ପ୍ରସବ କରିବେ, କଟୁ କଥା କହିବେ, ଚୋରୀ, ମିଥ୍ୟା ବା ଛଳ ଓ ଯଥେଷ୍ଟ ସାହସବତୀ ଏବଂ ଲଜ୍ଜାହୀନା ହେବେ ।୩୪। ଶୂଦ୍ରମାନେ ତପୋବେଶଧାରୀ ହୋଇ ପ୍ରତିଗ୍ରହ କରିବେ, ଧର୍ମାନଭିଜ୍ଞ ବ୍ୟକ୍ତିମାନେ ଉତ୍ତମ ବ୍ୟକ୍ତିଙ୍କ ଆସନରେ ବସି ଧର୍ମକଥା କହିବେ ବା ଧର୍ମ ସମ୍ବନ୍ଧୀୟ ବ୍ୟବସ୍ଥା ନିରୂପଣ କରିବେ ।୩୮।' ଏହିପରି କଳିଯୁଗରେ ମ୍ଳେଚ୍ଛାତ୍ମକ ଘଟନା ଘଟିଲେ ଭଗବାନ୍ କଳ୍କି ଅବତାର ଧାରଣ କରି ଦସ୍ୟୁ ଏବଂ ଯଥେଚ୍ଛାଚାରୀ ମ୍ଳେଚ୍ଛମାନଙ୍କ ସଂହାରଦ୍ୱାରା ସନାତନ ଧର୍ମନିରତ ସଦାଚାରୀ ଓ ନିରୀହ ସାଧୁମାନଙ୍କୁ ପାଳନ କରି ଧର୍ମକୁ ସଂସ୍ଥାପନ କରିବେ । ଶ୍ରୀମଦ୍ଭଗବଦ୍ ଗୀତାରେ ଭଗବାନ୍ ଅର୍ଜୁନଙ୍କୁ କହିଛନ୍ତି, 'ହେ ଭାରତ ! ଯେଉଁ ସମୟରେ ଧର୍ମର ହ୍ରାସ ହୁଏ, ଅଧର୍ମର ବୃଦ୍ଧି ହୁଏ, ସେହି ସମୟରେ ଆମ୍ଭେ ଅବତାର ଗ୍ରହଣ କରୁଁ । ସାଧୁମାନଙ୍କର ରକ୍ଷା ଓ ପାପିମାନଙ୍କର ବଧ ନିମିତ୍ତ ଏବଂ ଧର୍ମକୁ ସ୍ଥାପନ କରିବାପାଇଁ ଆମ୍ଭେ ପ୍ରତିଯୁଗରେ ଶରୀର ଧାରଣ କରୁଁ ।'

"ଯଦାଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ !
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।୭।୭ ଗୀତା
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ,
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ" । ୮ ।
"ଅଶ୍ୱମାଶୁଗମାରୁହ୍ୟ ଦେବଦତ୍ତଂ ଜଗତ୍ପତିଃ ।
ଅସିନାସାଧୁଦମନଂ ଅଷ୍ଟୈଶ୍ୱର୍ଯ୍ୟ ଗୁଣାନ୍ୱିତଃ । ଭାଃ ୨।୨୨
ବିଚରନ୍ନାଶୁନା କ୍ଷୌଣ୍ୟାଂ ହୟେନା ପ୍ରତିମଦ୍ୟୁତିଃ ।
ନୃପଲିଙ୍ଗଚ୍ଛଦୋ ଦସ୍ୟୂନ୍ କୋଟିଶୋ ନିହନିଷ୍ୟତି" । ୨୦ ।

"ମ୍ଳେଚ୍ଛନିବହନିଧନେ କଲୟସି କରବାଲଂ ।
ଧୂମକେତୁମିବ କିମପି କରାଳଂ ।" ଗୀତଗୋବିନ୍ଦ ।
ମ୍ଳେଚ୍ଛପ୍ରାୟେ କ୍ଷେତ୍ରହନ୍ତେ ନମସ୍ତେ କଳ୍କିରୂପିଣେ ।୨୨।ଭା:୧୦ଅ:୪୦

'ଅଷ୍ଟଐଶ୍ୱର୍ଯ୍ୟଶାଳୀ, ଅସାଧୁ-ଦମନ, ଅତୁଳପ୍ରଭ ଜଗତ୍ପତି ଶୀଘ୍ରଗାମୀ ଦେବଦତ୍ତ-ଘୋଟକରେ ଆରୋହଣ କରି ପୃଥିବୀରେ ବିଚରଣ କରିବେ ଏବଂ ରାଜଚିହ୍ନଧାରୀ କୋଟି କୋଟି ( ପ୍ରଜାବିତ୍ତ-ଲୁଣ୍ଠନକାରୀ ) ଦସ୍ୟୁମାନଙ୍କୁ ଖଡ୍‌ଗାଘାତରେ ବିନାଶ କରିବେ । ୧୯ । ୨୦ ।' ସିଦ୍ଧ-ପୁରୁଷମାନଙ୍କ ଲିଖିତ ବହୁ ସଂଖ୍ୟକ ମାଳିକା ଏବଂ ସମସ୍ତ ପୁରାଣ, ବିଶେଷତଃ ଶ୍ରୀମଦ୍ଭାଗବତ ୧୨ଶ ସ୍କନ୍ଧ ୨।୩ୟ ଅଧ୍ୟାୟରେ, ଭବିଷ୍ୟ-ପୁରାଣ ଓ କଳ୍କିପୁରାଣରେ କଳ୍କିଅବତାର ଏବଂ ତାଙ୍କର ମ୍ଳେଚ୍ଛ-ସଂହାର କର୍ମ ବିସ୍ତୀର୍ଣ୍ଣ ଭାବରେ ଭୂରି ଭୂରି ବର୍ଣ୍ଣିତ ହୋଇଅଛି ( ଅତଏବ ଦ୍ରଷ୍ଟବ୍ୟ) । ଆଉ ବିଶେଷ କ୍ଷୋଭର ବିଷୟ, ଯେଉଁମାନେ ସଦାଗୁରୁ ଓ ସନ୍ମାର୍ଗରେ ଚଳିବା ପରି ବୋଧ ହେଉଥିଲେ, ସେମାନଙ୍କ ମଧ୍ୟରୁ କେତେକଙ୍କର କେତେକ ପୁତ୍ର ପୌତ୍ରାଦିଙ୍କ ବ୍ୟବହାରକୁ ଅନୁମାନ କଲେ ଅତି ଆଶ୍ଚର୍ଯ୍ୟ ବୋଧହୁଏ,—କୁଟିଳତା ଥିଲା କି ? ବର୍ତ୍ତମାନ ବଳ, ବିଦ୍ୟା, ବିତ୍ତ, ବୁଦ୍ଧି, କୌଶଳ ଓ କୂଟନୀତିଦ୍ୱାରା ଲୋକୋପକାର ଦ୍ୱାହିରେ ନାନାପ୍ରକାର ଫିକର କରି ଜଗତରେ ଶ୍ରେଷ୍ଠ ଓ ଖ୍ୟାତ ଲଭିବାପାଇଁ ଅଧିକାଂଶ ଲୋକେ ପ୍ରାୟେ ସମସ୍ତେ ଯତ୍ପରୋନାସ୍ତି ଚେଷ୍ଟାଦ୍ୱାରା ପାଞ୍ଚପର୍ଯ୍ୟନ୍ତ ଲାଗିଛନ୍ତି । ତହିଁମଧ୍ୟରୁ ବିଶେଷତଃ କେତେକ ବ୍ରାହ୍ମଣ-ବଂଶୀୟ ଆବହମାନ-କାଳରୁ ପୁରୁଷାନୁକ୍ରମେ ବା ପିତୃ-ପିତାମହାଦି ପୂର୍ବପୁରୁଷରୁ ପ୍ରଚଳିତ ସ୍ୱବର୍ଣ୍ଣାଶ୍ରମାତ୍ମକ ଶ୍ରେଷ୍ଠତ୍ୱ ଯାହା କି ପୁତ୍ରପୌତ୍ରାଦିକ୍ରମେ କାଳକାଳକୁ ଅଜରାମର ହୋଇ ରହିଥିବ, ସେ ଠେକକୁ ଧ୍ୱଂସ କରି ତା ପରିବର୍ତ୍ତରେ ନିମ୍ନବର୍ଣ୍ଣ ଓ ନୀଚଜାତିମାନଙ୍କ ସହିତ ମିଶିବା-ପାଇଁ ତନ୍ମୟ ହୋଇ ମଜ୍ଜିଛନ୍ତି । ଯତଃ—ଇଷ୍ଟମନ୍ତ ନ୍ୟାୟ

ସ୍ନାନ, ଶିଖା ସହ ମୁଣ୍ଡନ, ଅଗତ୍ଯା କାର୍ଯ୍ୟାନୁମତ ସଙ୍କୁଚିତ-ସମୟ ବ୍ୟତୀତ ହିନ୍ଦୁମାନେଇ ଭୂ-ମାତାକୁ ଲିଙ୍ଗ-ଦର୍ଶନ ମାତୃହରଣ ଦୋଷାତ୍ମକ, ସକଛ ବା ନିକଛ, ( ଯାଜ୍ଞବଲ୍କ୍ୟ, ଯଥା—

"ବାମକୁକ୍ଷୌ ଚ ନାଭୌ ଚ ପୃଷ୍ଠେ ଚୈବ ଯଥାକ୍ରମଂ ।
ନିକଛେନ ସମାଯୁକ୍ତୋ ଦ୍ୱିକୋଽସୌ ମୁନିରୁଚ୍ୟତେ ॥" )

ପରବର୍ତ୍ତିରେ ଫାଲ୍‌ଟା ପିନ୍ଧା, ଯାହା କି ମହୋପକାରାତ୍ମକ ଉପସ୍ଥେନ୍ଦ୍ରିୟାୟୁଭ ସକାଶେ ସମ୍ବାଧକ କୌପିନୀ, ଦେହିକ ବଳେଚ୍ଛୁ କାଛୁ, ସାଧାରଣ ଗୃହୀମାନେ ସକଛି ହୋଇ ସର୍ବଦା ଚଳଥାନ୍ତି, ଯାହା କି ଶ୍ରେୟସ୍କର । ପରଂପରାଗତ ପିତୃ-ପିତାମହାଦି ଆଚରିତ ୧୫।୨୦ ବର୍ଷ ପୂର୍ବେ ହିନ୍ଦୁମାନେଇ ଫାଲ୍‌ଟା ବା ଲୁଙ୍ଗି କିମ୍ବା ଜଙ୍ଘିଆ ପିନ୍ଧି ପାହୁଣ୍ଡେ ମାତ୍ର ଗୁଲୁଥିଲେ କି ? ଫାଲ୍‌ଟା ପ୍ରଭୃତିଦ୍ୱାରା ଉପସ୍ଥେନ୍ଦ୍ରିୟର ସବିଶେଷ ଉତ୍ତେଜନା ଓ ସକଛ-ଦ୍ୱାରା ସବିଶେଷ ଆୟୁର୍ ବା ଶିଥିଳତା ନିଶ୍ଚୟ ! ଅତଃ ମାନବ ପକ୍ଷରେ ଯାହା କି ଇହ-ପରକାଳର ଉନ୍ନତିକର । ବସ୍ତ୍ରାଭାବ ବା ସଂସର୍ଗ କିମ୍ବା ଫାଜିଲମିରୁ ଏବେ ସୂଚିବଦ୍ଧ ଜଙ୍ଘିଆ ବା ପ୍ୟାଣ୍ଟ ବ୍ୟବହାର ଅଳ୍ପଦିନ ମଧ୍ୟରେ ବ୍ୟାପିଗଲାଣି । ଯାହା କି ଦେବ-ପିତୃ କର୍ମରେ ନିଷିଦ୍ଧ । ଯଥା—

"ଅଧୌତଂ ପୂର୍ବ ଯଦ୍ଧୌତଂ ଯଦ୍ଧୌତଂ ରଜକେନ ତୁ,
ସୂଚିବଦ୍ଧଂ ଅଗ୍ନିଦଗ୍ଧଂ ପଞ୍ଚବାସାନି ବର୍ଜୟେତ୍ ।"

ସତ୍ତ୍ୱଗୁଣ ବିରୋଧୀ ନଖ ରଖିବା, କେତେକ ଉପବୀତ ତ୍ୟାଗୀ, କେତେକ ଅଣ୍ଟାରେ ଲୁଗୁଇବା, ଶିଖା ଚଳୁ ସନ୍ଧ୍ୟା ତ ନଦାରଦ । ବଞ୍ଛାନାନୁମୋଦିତ ଶାସ୍ତ୍ରସମ୍ମତ ନିଜର ଶିଶୁ ସଙ୍ଗରେ ଖାଇଥାଏ;

"ଶଯ୍ୟା ଭାର୍ଯ୍ୟା ଶିଶୁର୍ବସ୍ତ୍ରଂ ଉପବୀତଂ କମଣ୍ଡଳୁଃ ।
ଆତ୍ମନୋ ହେତୁ ଶୁଦ୍ଧିଃ ସ୍ୟାନ୍ନ ତତ୍ ଶୁଦ୍ଧ୍ୟଂ ପରସ୍ୟ ତୁ ।"

ନିଃସଙ୍କୁଚିତରେ ଚଳୁ ନ କରିବା ତେତିକି ଦୋଷଜନକ ନୁହେ ବୋଲି ଯାଚ୍ଛା ତା ସଙ୍ଗରେ ଖାଇବା ପ୍ରଭୃତି ଅତି ଉଦ୍ଧତ କାର୍ଯ୍ୟ,

ନିମ୍ନବର୍ଣ୍ଣ ସଂଖୁକ୍ତ ପାକ ଓ ଏକତ୍ର ଭୋଜନ ପ୍ରଭୃତିରେ ମଜ୍ଜିଛନ୍ତି। "କିମାଶ୍ଚର୍ଯ୍ୟ ମତଃ ପରଂ" ।

ଆଉ ପରଂପର ସୂତ୍ରଧାରଣରହିତ ନିମ୍ନବର୍ଣ୍ଣମାନେ ସୂତ୍ରଧାରଣ, ମଧ୍ୟ କେତେକ ହିନ୍ଦୁଚିହ୍ନ ମାଳି ପ୍ରଭୃତି ତ୍ୟାଗୀ । ଅନ୍ତ୍ୟଜ ଖ୍ରୀଷ୍ଟାନମାନେ ରାଜନୀତି କୂଟ କୌଶଳରେ ସାଧାରଣଙ୍କୁ ଡରାଇ ଉତ୍କୃଷ୍ଟ ବର୍ଣ୍ଣମାନଙ୍କ ସଙ୍ଗରେ ମିଶି ଉପରକୁ ଉଠିବାରେ ଲାଗିଛନ୍ତି । ଯେପରି ପବିତ୍ର ବସ୍ତୁରେ ଅପବିତ୍ର ବସ୍ତୁ ମିଶିଲେ ତାକୁ ଅପବିତ୍ର କରିଦିଏ । ଅପବିତ୍ର ବସ୍ତୁରେ ପବିତ୍ର ବସ୍ତୁ ମିଶିଲେ ସେ ଅପବିତ୍ର ହୋଇଯାଏ । ସେହିପରି ସନାତନଧର୍ମ ଶାସ୍ତ୍ରୋକ୍ତ ଉତ୍କୃଷ୍ଟ ବର୍ଣ୍ଣରେ ନିକୃଷ୍ଟ ବର୍ଣ୍ଣ ବା ସନାତନେତରମାନେ ସନାତନୀରେ ମିଶି ନ ପାରନ୍ତି । କିନ୍ତୁ ଶରଣାର୍ଥୀ ମହାଦ୍ରୁମ ପରି ସନାତନଧର୍ମ ସମସ୍ତଙ୍କୁ ଯଥୋପଯୁକ୍ତ ଭାବେ ଛାୟାରୂପ ଆଶ୍ରୟ ଦେଇପାରେ । ଅନ୍ୟାନ୍ୟ ଧର୍ମ ଫଳହୀନ ସାମୟିକ ଛୋଟ ଛୋଟ ଅନାବନା ବୃକ୍ଷପରି । ମୁସଲମାନ ପ୍ରଭୃତି ଧର୍ମ ହିନ୍ଦୁଧର୍ମ ଓ ହିନ୍ଦୁଦ୍ୱେଷୀ ହେଲେହେଁ ହିନ୍ଦୁମାନେ ପ୍ରାୟ ମସଜିଦ୍-ଗିରିଜା ପ୍ରଭୃତିକୁ ଯଥୋପଯୁକ୍ତ ଅଭିବାଦନ କରିଥାନ୍ତି । ଧନ୍ୟ ଉଦାରାତ୍ମକ ହିନ୍ଦୁଧର୍ମ ଏବଂ ହିନ୍ଦୁ । ସେ ଯାହାହେଉ ଯାହାର ସଦ୍‌ଗତି ସକାଶେ ଉତ୍କୃଷ୍ଟ ବର୍ଣ୍ଣରେ ବା ସନାତନୀରେ ମିଶିବାପାଇଁ ଏକାନ୍ତ ଶ୍ରଦ୍ଧା ଓ ଦୃଢ଼ବିଶ୍ୱାସ ବଳେ, ସେ ସନାତନଧର୍ମ ଶାସ୍ତ୍ରୋକ୍ତ ବିରୁଦ୍ଧାଚରଣ ନ କରି ସତ୍ପଥାନୁଗତ ହେଲେ ଜନ୍ମାନ୍ତରରେ ଉଦ୍ଦେଶ୍ୟ ଫଳ ଲଭିପାରିବ । ସନାତନେତର ଇତରଶରୀରେ ଅନେକ ହିନ୍ଦୁପଦ୍ଧତି ପ୍ରାପ୍ତ ହୋଇ ଯଥୋପଯୁକ୍ତ ଭାବରେ ଚଳିପାରନ୍ତି ମାତ୍ର । କିନ୍ତୁ କଠିନ ହେଉ ବା ସାମାନ୍ୟ ହେଉ, ରୋଗାନୁସାରେ ଯଥୋପଯୁକ୍ତ ଔଷଧ ସେବନ ନ କରି ଯଦି ହେୟଜ୍ଞାନରୁ ବା ଦାମ୍ଭିକତା ବା ଅଭାବରୁ ଅନ୍ୟରୋଗର

ବା ବିପରୀତ-ରୋଗର ଔଷଧ ସେବନ କରାଗଲେ ଯେପରି ବିପରୀତ-ଫଳ ଘଟିଥାଏ, ସେହିପରି ଉପରୋକ୍ତ ଉଚ୍ଚ-ନୀଚ ବର୍ଣ୍ଣମାନଙ୍କର ଏ ବ୍ୟତିକ୍ରମର ଫଳ ଅତି ଅନିଷ୍ଟକର ବା ଅଧୋଗତିର କାରଣ । ଏହା ନିଶ୍ଚୟ ।

"ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ ।" ଗୀ: ଅ: ୩

"ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ ।
ସ୍ୱକର୍ମ ନିରତଃ ସିଦ୍ଧିଂ ଯଥା ବିନ୍ଦତି ତଚ୍ଛୃଣୁ । ଅ୧୮: ୪୫ ଗୀ:
ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତଂ ।
ସ୍ୱକର୍ମଣା ତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ।" ୪୬ ।

'ସ୍ୱ ସ୍ୱ ବର୍ଣ୍ଣାନୁଯାୟୀ ପରଂପରାଗତ କୌଳିକ-କାର୍ଯ୍ୟ ସାଧନ କରି ସୃଷ୍ଟିକର୍ତ୍ତାଙ୍କପ୍ରତି ଲକ୍ଷ୍ୟ ରଖିଥିଲେ ଉଚ୍ଚ-ନୀଚ ଯେ କେହି ହେଉ ଭଗବାନଙ୍କୁ ଲଭିବଇ ଲଭିବ । ବ୍ୟତିକ୍ରମରେ ନର୍କବାସ ନିଶ୍ଚୟ !' ଅନୁମାନ ହୁଏ ସମୟକ୍ରମେ ଉଚ୍ଚ-ନୀଚ ହାବୁଡ଼ ଖାଇ ସମସ୍ତେ ମ୍ଳେଚ୍ଛ ହୋଇଯିବେ କି ? "ଈଶ୍ୱରେଚ୍ଛା ନିରଙ୍କୁଶା" । ( ଉଚ୍ଚ-ନୀଚ ଜାତି ନିର୍ଯାସ ନିବେଦନ ପୁସ୍ତକରେ ଦ୍ରଷ୍ଟବ୍ୟ ) । ଏହି ସବୁ ବିଷୟକୁ ଭାବି ଜାଗ୍ରତ ନ ହେବା ମହତ୍ ଭ୍ରମ ନୁହେ କି ?

---

## ଧର୍ମନିର୍ଣ୍ଣୟ

ଧର୍ମର ଅର୍ଥ ହେଉଛି, ଇହଜନ୍ମରେ ସୁଖ-ଶାନ୍ତିରେ କାଳଯାପନ କରିବା ଏବଂ ଶରୀରାନ୍ତେ ସଦ୍‌ଗତି ଲଭିବା । ଏହି ଉଭୟ କାର୍ଯ୍ୟ-ସାଧନକ୍ଷମ-ବିଧିକି ଧାରଣ କରିବାର କ୍ରିୟା "ଧର୍ମ" । ହିନ୍ଦୁମାନଙ୍କ ବ୍ୟତୀତ ଅନ୍ୟାନ୍ୟମାନେ କେବଳ ଇହ-ସ୍ଥୂଳଶରୀର ପୁଷ୍ଟି ଓ ରକ୍ଷାରେ ଲାଗିଥାନ୍ତି । ଯାହା ବିଦ୍ୟ-

ମାନରୁ ଶରୀର ଜୀବିତ ରହୁଛି, ସେ ଶରୀରଭିମାନୀ ଜୀବାତ୍ମାର ଶାନ୍ତି ଓ ସଦ୍‌ଗତି ସକାଶେ ଲେଶମାତ୍ର ଯତ୍ନ ନ ଥାଏ । ଅସୁରଙ୍କ-ଭାବ ବା ପ୍ରବୃତ୍ତି-ମାର୍ଗ ବ୍ୟତୀତ ଶାନ୍ତିସୁଖ କଣ ତାହା ଆଦୌ ଜାଣନ୍ତି ନାହିଁ । ମୁସଲମାନମାନଙ୍କୁ ଯଦି ପଚାରାଯାଏ, ତୁମ୍ଭର ଧର୍ମଶାସ୍ତ୍ର କଣ ? ସେ କହନ୍ତି-ଅମ୍ଭର ଧର୍ମଶାସ୍ତ୍ର 'କୋରାନ୍' । ସେଥିରେ ସାମାଜିକ ଚଳାବା-ବିଧିର କେତେକ ନିୟମ ଆଉ କେତେକ ସଦୁପଦେଶକୁ ତହିଁରେ ପ୍ରକ୍ଷିପ୍ତ କରି ପ୍ରଭୁଙ୍କ ଆଜ୍ଞା ବୋଲି ଉଲ୍ଲେଖ ହୋଇଅଛି । ଜୀବାତ୍ମା ବିଷୟରେ ଯାହା ସଙ୍କେତ ଅଛି ତାହା ବଡ଼ ଦୁରୁହ । ସେ ଶାସ୍ତ୍ରର ଓ ଧର୍ମର ଆୟୁ ୧୩୪୭ ବର୍ଷ ମଧ୍ୟରେ । ତତ୍‌ପୂର୍ବରେ ତାହାର ସତ୍ତା ମାତ୍ର ନ ଥିଲା । ସେହିପରି ଖ୍ରୀଷ୍ଟିୟାନମାନଙ୍କୁ ପଚାରିଲେ ସେ କହନ୍ତି—ଅମ୍ଭର ଧର୍ମଶାସ୍ତ୍ର 'ବାଇବେଲ୍' । ତାହାର ଆୟୁ ୧୯୩୯ ବର୍ଷ ମଧ୍ୟରେ । ତତ୍‌ପୂର୍ବରେ ସେ ଶାସ୍ତ୍ରର ବା ଧର୍ମର ସତ୍ତା ନ ଥିଲା । ସେ ପ୍ରାୟ ଠିକ୍ କୋରାନ୍ ପରି । ସନାତନଧର୍ମ-ଶାସ୍ତ୍ର ବ୍ୟତୀତ ଜଗତରେ ଅନ୍ୟାନ୍ୟ ନାମ ମାତ୍ରକ ବା ମମତାତ୍ମକ ଯେ ଧର୍ମ ସମ୍ପ୍ରଦା ଓ ତଦବଲମ୍ବନ ଧର୍ମଶାସ୍ତ୍ର ଅଛି, ତହିଁରେ ତ୍ରିତାପାନଳ ସନ୍ତପ୍ତ-ସଂସାରରୁ ଉଦ୍ଧାର ହେବାପାଇଁ ସାଧନ-କ୍ଷେତ୍ର ଦେହର ସମ୍ପ୍ରଯୁକ୍ତ ପୁଷ୍ଟି ଓ ରକ୍ଷାଦ୍ୱାରା ଅସ୍ପୋଦ୍ଧାର ସକାଶେ କ୍ରିୟା ଏବଂ ତତ୍ ତତ୍ତ୍ୱାତ୍ମକ ଶବ୍ଦ ଓ ନାଦାରବ୍ଧ । ( ଜଗଦ୍‌ଗୁରୁ ଭାରତୀ କୃଷ୍ଣଙ୍କ ଅଭିଭାଷଣ ) । ଏବେ ତଦ୍ଦେଶୀୟ କେତେକ ଅନୁସନ୍ଧିତ୍ସୁ ସନାତନଧର୍ମଶାସ୍ତ୍ର ଆଲୋଚନାଦ୍ୱାରା କେତେକାଂଶରେ ମୁଣ୍ଡ ଝୁଙ୍କାଉଛନ୍ତି । କିନ୍ତୁ ସନାତନଧର୍ମର ଆଂଶିକ ମତାବଲମ୍ବୀ ସମ୍ପ୍ରଦା ବ୍ୟତିକ୍ରମାତ୍ମକ ହେଲେହେଁ ତଦୁକ୍ତ ବିଧିରେ ଅସ୍ପୋଦ୍ଧାରର ଚେଷ୍ଟା କରିଥାନ୍ତି । ସେ ଯାହା ହେଉ ହିନ୍ଦୁମାନଙ୍କୁ ଯଦି ପଚାରାଯାଏ, ତୁମ୍ଭର ଧର୍ମ-

ଶାସ୍ତ୍ର କିଏ ? ତେବେ ସେ କହିବେ,—ଆମ୍ଭର ମୂଳ ଧର୍ମଶାସ୍ତ୍ର ବେଦ ଓ ତଦନୁଗତ ସ୍ମୃତି, ପୁରାଣ ପ୍ରଭୃତି ଅସଂଖ୍ୟ । ବେଦର ଆୟୁ ସନାତନ ଅର୍ଥାତ୍ ଅନନ୍ତ-କାଳରୁ ଅନନ୍ତ-କାଳସ୍ଥାୟୀ; ଲକ୍ଷ ଲକ୍ଷ କୋଟି କୋଟି ବର୍ଷ । ବର୍ତ୍ତମାନ ପ୍ରବାହିତ ଧର୍ମ-ନିୟମ ବହୁକାଳାତ୍ମକ ଦ୍ୱାପରଯୁଗ ପର ସତ୍ୟଯୁଗରୁ ଧରିଲେ ଅଦ୍ୟାବଧି ୩।-୯୩୦୫୦ ବର୍ଷ ।

ପଶୁ, ପକ୍ଷୀ ପ୍ରଭୃତି ତିର୍ଯ୍ୟକ ଯୋନିଜାତମାନେ ନିଜର ଉଦର-ପୂରଣ ଓ ପାନାପାନ-ବିବେକଶୂନ୍ୟ, ବିଧି-ନିର୍ବନ୍ଧ ଇନ୍ଦ୍ରିୟଲାଳସାରେ ପ୍ରବୃତ୍ତ ହୋଇଥାନ୍ତି । ସାକ୍ଷାତ-ଭୋଗ ବ୍ୟତୀତ ଭବିଷ୍ୟତ-କାଳର ଚିନ୍ତା ବା ବିବେକ ବଳରେ କିଛି ମାତ୍ର ଶ୍ରେୟ ଚିନ୍ତା କରିବା ତାଙ୍କର ଆଦୌ ନ ଥାଏ । ସନାତନ ବା ହିନ୍ଦୁଧର୍ମୀନ୍ତରମାନେ ନିଜ ସ୍ଥୂଳ-ଶରୀର, ସ୍ୱକୁଟୁମ୍ବ ଏବଂ ତତ୍ସମ୍ବନ୍ଧୀୟ ସାହାଯ୍ୟ ଉପଯୋଗୀ ସ୍ୱ-ସମାଜ ସମ୍ବନ୍ଧୀୟ ବା ସ୍ୱ-ଦେଶୀୟମାନଙ୍କର ଶରୀର ପୁଷ୍ଟି ଓ ରକ୍ଷା ସକାଶେ ନାନାପ୍ରକାର କୌଶଳରେ ଶୃଙ୍ଖଳିତ ଓ ଏକନିଷ୍ଠ ହୋଇ ଲାଗିଥାନ୍ତି । ସେହି ସକାଶେ ବିଧିବିଧାନ-ନିୟମ ବା ଆଇନ ବ୍ୟବସ୍ଥା କରି ଚାଲୁଥାନ୍ତି । ତାହା ମଧ୍ୟ ହୃଦୟ-ବିଶ୍ୱାସ ସହିତ ମାନନ୍ତି ନାହିଁ କିମ୍ବା କାର୍ଯ୍ୟରେ କରନ୍ତି ନାହିଁ । ନିଜ ଶରୀରର ନିକଟ-ସମ୍ବନ୍ଧ-ସୁବିଧାକୁ ଚାହିଁ ସବୁ ଠେଲିଦେଇ ଦେଖିଲାକାମ କରି-ନିଅନ୍ତି । ବିଶେଷତଃ କୌଣସି ନିୟମରେ ସେ ଆବଦ୍ଧ ନୁହନ୍ତି । ଶରୀରରେ ଜୀବ ଥିବାରୁ ସେ ସର୍ବକାର୍ଯ୍ୟ-ସାଧନକ୍ଷମ ହୋଇଥାଏ ଏବଂ ଈଶ୍ୱର ନିତାନ୍ତ ଜୀର୍ଣ୍ଣଶୀର୍ଣ୍ଣ ହୋଇ ମଧ୍ୟ ମିଳାଏ ନାହିଁ; କିନ୍ତୁ ସେ ବାହାରିଗଲେ ଶରୀର ହୃଷ୍ଟ-ପୁଷ୍ଟ ଥାଇ ମଧ୍ୟ ତତ୍କ୍ଷଣାତ୍ ମିଳାଇଯାଏ, ତାହା ପାଇଁ କିଛି ମାତ୍ର କରି ଯାଇଥାଏ କି ? କେବଳ କଥାରେ କହନ୍ତି, ସଂସାର ଶେଷରେ ଶରୀରୀ କବଚରୁ ବାହାରିବ, ତାହାର ପୂର୍ବକୃତ

ପାପ ଓ ପୁଣ୍ୟର ବିଚାର ହୋଇ ସମୁଚିତ ଦଣ୍ଡ ବା ପୁରସ୍କାର ପାଇବ । ଆଚ୍ଛା ଯାହାକୁ ସିଂହ, ବାଘ, ଭାଲୁ ଓ ଜଳଜନ୍ତୁ ପ୍ରଭୃତି ଖାଇଯାନ୍ତି ବା ଜଳମଗ୍ନ ହୋଇଯାଏ ? ସେ ସମ୍ବନ୍ଧରେ ନିରୁତ୍ତର । କିନ୍ତୁ ଅମୃତର ସ୍ଥୂଳଦେହ ସମ୍ବନ୍ଧରେ ପ୍ରବାଦ ଅଛି,—'ପୋଡ଼ି-ପୋତି-ପକା, ଏ ତିନିହେଁ ଏକା' । ସେ ଯାହା ହେଉ ଭବିଷ୍ୟତ୍ କାଳ ସକାଶେ ଜୀବାତ୍ମାର ଜ୍ଞାନ ବା ତାହାର ଉନ୍ନତି କିମ୍ବା ସଦ୍‌ଗତି ସକାଶେ ପଶୁ, ପକ୍ଷୀମାନଙ୍କ ପରି ବିଧର୍ମିମାନଙ୍କର ଯତ୍ନ ବା ଚେଷ୍ଟା ଆଦୌ ନ ଥାଏ । ସେମାନେ ଭୀଷଣ ସାହସୀ ଓ ବିଶ୍ୱାସଶୂନ୍ୟ, କେବଳ ସାମାଜିକ-ଶୃଙ୍ଖଳାରେ ଚଳନ୍ତି । ବିଶେଷତଃ ଧର୍ମ-ସମ୍ବନ୍ଧରେ ବିଶ୍ୱାସ ନ ଥାଏ । କିନ୍ତୁ ହିନ୍ଦୁଧର୍ମ ସମ୍ପୂର୍ଣ୍ଣ ବିଶ୍ୱାସମୂଳକ । ନିଜର ପିତାଙ୍କୁ ଯେପରି ଅନ୍ୟୋପଦେଶାଦିଦ୍ୱାରା ନିଜର ପିତା ବୋଲି ଦୃଢ଼ବିଶ୍ୱାସ କରି ଯାଇଥାଏ, ସେହିପରି ପରଂପରା-ପ୍ରଚଳିତ-କ୍ରିୟା ଓ ଶାସ୍ତ୍ରୋପଦେଶ ନେଇ ଧର୍ମରେ ବିଶ୍ୱାସ କରି ଯାଇଥାଏ । ବର୍ତ୍ତମାନ ନବ୍ୟସଭ୍ୟଙ୍କ କୁହୁକ-କଥା ଓ ସଂସର୍ଗ ଦୋଷରୁ କେତେକ ହିନ୍ଦୁଙ୍କଠାରୁ ସେ ବିଶ୍ୱାସ ଶିଥିଳ ହୋଇଛି ।

"ଶୀର୍ଣ୍ଣୋତିଶ୍ଚ ସରିତସ୍ତୀବ୍ରଗମ୍ଭୀରନୀରା
ବାଲା ବୟଂ ସକଳ କାର୍ଯ୍ୟମନର୍ଥହେତୁଃ ।
ବିଶ୍ୱାସବୀଜମିଦମସ୍ତି କୃଶୋଦରୀଣାଂ
ଯନ୍ମାଧବ ତ୍ୱମସି ସମ୍ପ୍ରତି କର୍ଣ୍ଣଧାରଃ" ॥

ପ୍ରତ୍ୟକ୍ଷ ଦେଖ, ପୁରୁଷୋତ୍ତମରୁ କେହି ଅପରିଚିତ-ବ୍ୟକ୍ତି ଅରୁଆ-ଅନ୍ନ ଅଭଡ଼ା-କୁଡ଼ୁଆରେ ଦେଇ ଆସୁଥିଲେ ମହାପ୍ରସାଦ ଜ୍ଞାନରେ ତାଠାରୁ ଲୋକେ ମାଗିକରି ଗ୍ରହଣ କରିଥାନ୍ତି, କିନ୍ତୁ ଅପର ଦିଗରୁ ପ୍ରକୃତ ମହାପ୍ରସାଦ ସାଧାରଣ ହାଣ୍ଡିରେ ନେଉଥିଲେ ଆଉ ସେ ଯାଚିଲେ ମଧ୍ୟ କେହି ଗ୍ରହଣ କରିଥାନ୍ତି କି ? 'ରଜକୀ ଗାଁ-ଭାତ ବ୍ରାହ୍ମଣ-ସେବା ପ୍ରବାଦ' ଓ

ଗଙ୍ଗାଦି ତୀର୍ଥଜଳ ସମ୍ବନ୍ଧରେ ମଧ୍ୟ ସେହିପରି । ସାଧନାଦ୍ୱାରା ଭଗବାନଙ୍କୁ ପ୍ରାପ୍ତ ହେବାପାଇଁ ହିନ୍ଦୁ-ଧର୍ମର ମର୍ମ ହେଉଛି ଶ୍ରଦ୍ଧା-ସମନ୍ୱିତ ଭକ୍ତିଭାବ ଓ ଦୃଢ଼ ବିଶ୍ୱାସ । ଅନ୍ୟାନ୍ୟ ଗୁଣ ଉପରେ ତେତେ ନିର୍ଭର କରେ ନାହିଁ । ଆଚରଣ, ବୟସ, ବିଦ୍ୟା, କମନୀୟରୂପ, ଧନ ଦାନ, ସଦ୍‌ବଂଶଜ, ପୌରୁଷତ୍ୱାଦି ଆନୁଷଙ୍ଗିକ ମାତ୍ର । ଯଥା—

"ବ୍ୟାଧସ୍ୟାଚରଣଂ ଧ୍ରୁବସ୍ୟ ଚ ବୟୋ ବିଦ୍ୟା ଗଜେନ୍ଦ୍ରସ୍ୟ କା
କୁବ୍‌ଜାୟାଃ କମନୀୟରୂପମଧିକଂ କିମ୍ବା ସୁଦାମ୍ନୋ ଧନଂ ।
ବଂଶଃ କୋ ବିଦୁରସ୍ୟ ଯାଦବପତେରୁଗ୍ରସ୍ୟ କିଂ ପୌରୁଷଂ
ଭକ୍ତ୍ୟା ତୁଷ୍ୟତି କେବଳଂ ନ ଚ ଗୁଣୈର୍ଭକ୍ତିପ୍ରିୟୋ ମାଧବଃ ।"

"ମୂର୍ଖୋ ବଦତି ବିଷ୍ଣାୟ ଧୀରେ ବଦତି ବିଷ୍ଣବେ ।
ଦ୍ୱୟୁମେବ ସମଂ ଭାବଂ ଭାବଗ୍ରାହୀ ଜନାର୍ଦ୍ଦନଃ ॥"

ନବଧାଭକ୍ତିର୍ଯଥା—

"ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନଂ
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନଂ ॥"

"ଶ୍ରୀବିଷ୍ଣୋଃ ଶ୍ରବଣେ ପରୀକ୍ଷିଦଭବଦ୍ ବୈୟାସକିଃ କୀର୍ତ୍ତନେ
ପ୍ରହ୍ଲାଦଃ ସ୍ମରଣେ ତଦଙ୍ଘ୍ରିଂ ଭଜନେ ଲକ୍ଷ୍ମୀଃ ପୃଥୁଃ ପୂଜନେ ।
ଅକ୍ରୂରଃ ସ୍ତୁତିବନ୍ଦନେ କପିପତିର୍ଦାସ୍ୟେଽଥ ସଖ୍ୟେଽର୍ଜ୍ଜୁନଃ
ସର୍ବସ୍ୱାତ୍ମନିବେଦନେ ବଳିରଭୂଦେଷାପ୍ତିଃ କୃଷ୍ଣଃ ପରଂ ।"

କୌଣସି କଳାକମ୍ବଳଧାରୀ ବୈଷ୍ଣବ ଗିନି ବଜାଇ ପ୍ରେମରେ ଭଜନ କରୁଥିବାର ଦେଖି, କେହି ମୂର୍ଖ ସଢ଼େଇ ହଲେ ବଜାଇ

'କିଏ ଭଜୁଥାଏ କାହାକୁ,
କଳାକମ୍ବଳିଆ ଯାହାକୁ ଭଜଇ ମୁଁ ଭଜୁଥାଏ ତାହାକୁ ।'

ଏହା ବୋଲି ପ୍ରେମରେ ଭଜନ କରୁ କରୁ ଭଗବାନଙ୍କୁ ପାଇଥିଲା ।

## ନାସ୍ତିକମତ ଖଣ୍ଡନ

କୌଣସି ନୈଷ୍ଠିକ ବିଦ୍ୱାନ୍ ବ୍ରାହ୍ମଣ କୌଣସି ତୀର୍ଥରେ ତର୍ପଣ କରୁଥିବାର ଦେଖି ନାସ୍ତିକ ବା ଚାର୍ବାକର ପ୍ରଶ୍ନ—'କହେ, ଏ କଣ କରୁଛ ?' ଉତ୍ତର—'ତର୍ପଣ; ଯଥା—ଦେବ, ଋଷି, ପିତୃଗଣ ପ୍ରଭୃତିଙ୍କ ଜଳଦାନ ।' ଆର ଦିନ ସେ ଚାର୍ବାକ ଖଣ୍ଡେ ଶେଣା ଧରି ସେହିଠାରେ ପାଣି ବୋହିଲା । ନୈଷ୍ଠିକ—ଏ କଣ କରୁଛ ? ଉତ୍ତର—ଆମର ଗୋଟିଏ ବାଇଗଣ କିଆରି ଅଛି, ତହିଁରେ ପାଣି ମଡ଼ାଉଛି । ନୈଷ୍ଠିକ—ବାଇଗଣ କିଆରି କେଉଁଠାରେ ? ତୁମ୍ଭେ ପାଣି ଦେଉଛ କେଉଁଠାରେ ? ଏ ଅତି ନିର୍ବୋଧତା । ଚାର୍ବାକ—'ଦେବତା, ଋଷି, ପିତୃଗଣ କେଉଁଠି ? ତୁମ୍ଭେ ପାଣି ଦେଉଛ କେଉଁଠି ? ଏହା ସେହିପରି ! ନିର୍ବୋଧ, ପ୍ରତ୍ୟକ୍ଷ ବିନା ସବୁ ମିଥ୍ୟା !' ନୈଷ୍ଠିକ—ତୁମ୍ଭର ଗୃହରେ ତୁମ୍ଭର ପତ୍ନୀ ଥିବେ, ବର୍ତ୍ତମାନ ତୁମ୍ଭେ ତ ତାଙ୍କର ଅପ୍ରତ୍ୟକ୍ଷ, ତତଃ ସେ ତ ବିଧବାଚିହ୍ନ ଧାରଣ କରିଥିବେ, ନିର୍ବୋଧ ! ପ୍ରମାଣ ତିନିପ୍ରକାରରେ ସିଦ୍ଧ ହୋଇଥାଏ । ପ୍ରତ୍ୟକ୍ଷ-ଅନୁମାନ-ଶାସ୍ତ୍ରୀୟ । ଅତଃ ଦେବତାଦି ତନ୍ମାତ୍ର ବା ସୂକ୍ଷ୍ମ ଭୂତ-ଦେହଧାରୀ, ତତଃ ସ୍ଥୂଳଭୂତର ସୂକ୍ଷ୍ମାଂଶ ଗ୍ରହଣ କରନ୍ତି, ଅତଃ ଜଳର ରସଗ୍ରାହୀ, ଯତଃ ତନ୍ମାତ୍ର ସର୍ବଗ ! ସ୍ଥୂଳଦେହୀ ସ୍ଥୂଳବସ୍ତୁ ଗ୍ରହଣ କରିଥାନ୍ତି ।

ଅନ୍ୟତ୍ର—ନାସ୍ତିକମତ-ଦକ୍ଷ ବୃଦ୍ଧ ଚାର୍ବାକ କୌଣସି ବଶିଷ୍ଠ ରାଜଚକ୍ରବର୍ତ୍ତୀଙ୍କ ପଣ୍ଡିତ-ସଭାରେ ପ୍ରବେଶ କରି ସତ୍ୟ କରାଇଲେ, ଯାହା ପ୍ରମାଣହୀନ ତା ରହିତ ବା ତ୍ୟାଗ କରିବାକୁ ହେବ । ପରେ ପଣ୍ଡିତମାନଙ୍କ ସହ ତର୍କବିତର୍କ ପରେ ଆସ୍ତିକ-ମତକୁ ଖଣ୍ଡନ କରି ନାସ୍ତିକ-ମତକୁ ସପ୍ରମାଣ କରନ୍ତେ ସନାତନ-ଧର୍ମକର୍ମ ତ୍ୟାଗ କରିବା ନିଷ୍ଠିତ ହେଲା । ତତଃ ରାଜା ଓ ପଣ୍ଡିତମାନେ ଅତି ବ୍ୟଥିତ ହୋଇ ଜଗଦ୍ଗୁରୁଙ୍କ

ନିବେଦନ କରନ୍ତେ, ଗୋଟିଏ ବାଳକ ସେଠାରେ ପ୍ରବେଶ ହୋଇ କହିଲେ,—ମୁଁ କିଛି ପଚାରିବାକୁ ଆସିଛି । ଚାର୍ବାକ ହେୟଜ୍ଞାନରେ କହିଲେ, 'ତୁମ୍ଭେ କିଏ ?' ବାଳକ—'ମତେ ଜାଣି ନାହିଁ ? ମୁଁ ଉଦ୍ଦାଳ ଋଷିଙ୍କ ଶିଷ୍ୟ ।' ଚାର୍ବାକ—'ସେ କିଏ ? କେଉଁଠାରେ ଥାନ୍ତି ?' ବାଳକ—'ତୁମ୍ଭେ ତାଙ୍କୁ ଜାଣି ନାହିଁ, ମତେ ଜାଣି ନାହିଁ, ସେ ସ୍ଥାନ ମଧ୍ୟ ଜାଣି ନାହିଁ, ତେବେ ସବୁ ଜାଣି କଣ ? ସେହିପରି ସୃଷ୍ଟିକର୍ତ୍ତା ଥିବା ସତ୍ୟ ଓ ଅଛନ୍ତି, ତାଙ୍କ ପ୍ରଚାରିତ ଧର୍ମ-କର୍ମ ସତ୍ୟ, ତୁମ୍ଭ ମତସବୁ ବ୍ୟର୍ଥ ।' ସେ ବାଳକ ଜଗଦ୍‌ଗୁରୁ ରୁଦ୍ର ।

"ଅବ୍ୟକ୍ତାଦ୍ ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତ୍ୟହରାଗମେ ।
ରାତ୍ର୍ୟାଗମେ ପ୍ରଲୀୟନ୍ତେ ତତ୍ରୈବାବ୍ୟକ୍ତସଂଜ୍ଞକେ ।" ଗୀ ୮।୮।
"ଯତଃ ସର୍ବାଣି ଭୂତାନି ଭବନ୍ତ୍ୟାଦି ଯୁଗାଗମେ ।
ଯସ୍ମିଂଶ୍ଚ ପ୍ରଳୟଂ ଯାନ୍ତି ପୁନରେବ ଯୁଗକ୍ଷୟେ ।" ମଃଭାଃଅଃପର୍ବ ।
'ଅଜ୍ଞାନାତ୍ ବ୍ରହ୍ମଣୋ ଜାତମାକାଶଂ ବୁଦ୍‌ବୁଦୋପମଂ ।
ଆକାଶାତ୍ ବାୟୁରୁତ୍ପନ୍ନୋ ବାୟୋସ୍ତେଜଃ ତତଃ ପୟଃ ।
ଅଦ୍ଭ୍ୟଶ୍ଚ ପୃଥିବୀ ଜାତା ତତୋବ୍ରୀହି ଯବାଦିକଂ ।" ଶ୍ରୁତିଃ ।
"ପୃଥିବ୍ୟପ୍‌ସୁ ପୟୋ ବହ୍ନୌ ବହ୍ନିର୍ବାୟୌ ନଭସ୍ୟସୌ ।
ନଭୋଽପ୍ୟବ୍ୟାକୃତେ ତଚ୍ଚ ଶୁଦ୍ଧେ ବୁଦ୍ଧୋଽସ୍ମ୍ୟହଂ ହରଃ ।" ଶ୍ରୁତିଃ ।

ଏହିପରି ସବୁ ଶାସ୍ତ୍ରରେ ପ୍ରମାଣ ଅଛି । ଦୁର୍ଯ୍ୟୋଧନ-ସଖା ଅମରବରପ୍ରାପ୍ତ ଚାର୍ବାକରାକ୍ଷସ ଯୁଧିଷ୍ଠିରଙ୍କ ରାଜ୍ୟାଭିଷେକରେ ବାଧା କରନ୍ତେ ବ୍ରାହ୍ମଣମାନଙ୍କ ବାଗ୍‌ବାଣରେ ଭସ୍ମ ହୋଇଥିଲା । ବର୍ତ୍ତମାନ କେତେକ ନାସ୍ତିକ ବା ଚାର୍ବାକ-ମତାବଲମ୍ବୀ ଦୃଶ୍ୟମାନ ପ୍ରାକୃତିକ ଜଗତ ବ୍ୟତୀତ ସର୍ବୋଦ୍ଭବ ଲୟ-ନିଧାନ ପରଂବ୍ରହ୍ମ ଥିବାର ନ ମାନି ବିତଣ୍ଡା ଯୁକ୍ତି କରିଥାନ୍ତି । 'ଅନାଦି ଅନନ୍ତ କାଳସ୍ଥାୟୀ ପ୍ରକୃତିର ନିୟନ୍ତ୍ରଣରେ ସବୁ ଚାଲିଛି । ଏତଦ୍‌ବ୍ୟତୀତ ଯଦି କେହି ଥାଆନ୍ତା କେହି

କଣ ଦେଖନ୍ତା ନାହିଁ ?' ଉତ୍ତର—ଯଥା, ବ୍ୟବହାରିକ ବା ଦୃଶ୍ୟମାନ କିମ୍ବା ଚତୁର୍ବିଧ ସ୍ଥୂଳ-ଶରୀରାତ୍ମକ ଯାହା ଯାହା ଦେଖାଯାଏ, ସେ ପ୍ରତ୍ୟେକର କେହି ହେଲେ ଜଣେ କର୍ତ୍ତା ଥିବାର ତ ନିଶ୍ଚୟ । ତେବେ ଏହି ଜଗତର କେହି ଜଣେ କର୍ତ୍ତା ଥିବା ନିଧାର୍ଯ୍ୟ ନୁହେ କି ? ଦୃଶ୍ୟମାନାଦି ପାହାଡ଼ ପର୍ବତ ସମୁଦ୍ର ପ୍ରଭୃତି ସମୟକ୍ରମେ ଲୀନ ହେବା ତ ନିଶ୍ଚୟ ବା ଅନୁମାନସିଦ୍ଧ । ବୃଷ୍ଟ୍ୟାଦିଦ୍ୱାରା ପର୍ବତ-ପ୍ରସ୍ତର ଛିନ୍ନ ହୋଇ ବାଲୁକା ହେଉଛି । ନଦୀ-ସ୍ରୋତରେ ସେ ଯାଇ କ୍ରମେ କ୍ରମେ ସାଗର ପୋତିହୋଇ ସ୍ଥଳ ରୂପରେ ପରିଣତ ହେବା ତ ପ୍ରତ୍ୟକ୍ଷ ପ୍ରମାଣ । ମୃତ୍ତିକା କଥା କିଏ ପଚ୍ଛରେ ? ଅତଃ ସମୟ କ୍ରମେ ପର୍ବତ ସାଗରାଦି ରହିପାରେ କି ? "ଅନ୍ୟେପରେ କା କଥା ?"

"ଅମ୍ଭୋଧିଃ ସ୍ଥଳତାଂ ସ୍ଥଳଂ ଜଳଧିତାଂ ଧୂଳିଲବଃ ଶୈଳତାଂ
ଶୈଳଂମୃତ୍କଣତାଂ ତୃଣଂ କୁଳିଶତାଂ ବଜ୍ରଂ ତୃଣକ୍ଷୀଣତାଂ ।
ବହ୍ନିଃ ଶୀତଳତାଂ ହିମଂ ଦହନତାଂ ମାୟାପି ଯସ୍ୟେଚ୍ଛୟା
ନାନା ଦୁର୍ଘଟଣାବଧାନପଟବେ କୃଷ୍ଣାୟ ତୁଭ୍ୟଂ ନମଃ ।"

ଦେଶ-କାଳ-ପାତ୍ରଦ୍ୱାରା ଯାହା ନିର୍ଦ୍ଦିଷ୍ଟ ହୋଇପାରେ ସେ ସବୁ ପ୍ରକୃତ୍ୟନ୍ତର୍ଗତ । କିନ୍ତୁ ପରଂବ୍ରହ୍ମ ଏ ସବୁଥିରୁ ପର । "କଲ୍ପାଦୌ ବିସୃଜାମ୍ୟହଂ ।" ଗୀତା । ମାୟା-ଜଳ-ମଗ୍ନ-ମାନବ ପରଂବ୍ରହ୍ମଙ୍କୁ ବା କୌଣସି ବସ୍ତୁକୁ ଦେଖିପାରେ ନାହିଁ କିମ୍ବା ତତ୍ତ୍ୱ ଜାଣିପାରେ ନାହିଁ । ଗର୍ଭସ୍ଥ-ସନ୍ତାନ ଯେପରି ନିଜ ପିତାଦିଙ୍କି ଦେଖି ବା ଜାଣିପାରେ ନାହିଁ, ପରେ ଅନ୍ୟ ସାହାଯ୍ୟରେ ଦେଖି ବା ଜାଣିପାରେ; ସେହିପରି ସଗୁଣୋ-ପାସନାଦି ଭକ୍ତିଦ୍ୱାରା ବା ନିର୍ଗୁଣ ସାଧନାଦ୍ୱାରା ପ୍ରକୃତି ବା ମୋହମୟ ସଂସାରରୁ ପାର ହେଲେ 'ପରଂବ୍ରହ୍ମଙ୍କୁ' ଦେଖି ବା ଜାଣିପାରେ । ସେ ଅବସ୍ଥା ମାନବତ୍ୱରୁ ପୃଥକ୍ । ପୁନଃ

ଯେପରି କୋଟି କୋଟି ଯୋଜନ ବିସ୍ତୀର୍ଣ୍ଣ ସୂର୍ଯ୍ୟଦେବଙ୍କୁ ସାମାନ୍ୟ ଖଣ୍ଡେ ମେଘ କଦାଚ ଆବୃତ୍ତ କରି ନ ପାରେ; କିନ୍ତୁ ଦ୍ରଷ୍ଟାର ନୟନ-ପଥକୁ ଆବୃତ୍ତ କରିବାରୁ ସୂର୍ଯ୍ୟଦେବ ଆବୃତ୍ତ ବୋଧ ହୋଇଥାନ୍ତି; ସେହିପରି ମାୟା ବା ଅବିଦ୍ୟାବନ୍ଧହେତୁ ଆମ୍ଭେମାନେ ସର୍ବବ୍ୟାପୀ ପରଂବ୍ରହ୍ମ ବା ସୃଷ୍ଟିକର୍ତ୍ତାଙ୍କୁ ଜାଣି ବା ଦେଖିପାରୁ ନ ଥାଉଁ । ମାୟାତୀତ ମାନବ ତାଙ୍କୁ ଜାଣିପାରେ ଏବଂ ଦେଖିପାରେ । ଅତଃ ସେ ଅବସ୍ଥା ସଂସାର-ଅବସ୍ଥାରୁ ଅତୀତ । ସେ ସୃଷ୍ଟିଲୀଳା-ବ୍ୟତିକ୍ରମ ନିବାରଣାର୍ଥ ଗୁଣାତ୍ମକ ଶରୀର ଧାରଣ କଲେ ଜନ୍ମାନ୍ତରସତ୍ସାଧକ ଚର୍ମଚକ୍ଷୁରେ ଦେଖିପାରନ୍ତି । ସନାତନଧର୍ମଶାସ୍ତ୍ରୋକ୍ତ ସତ୍ସାଧକ ପ୍ରତ୍ୟକ୍ଷ-ବୋଧ ହୋଇ ତ୍ରିତାପରୁ ମୁକ୍ତ ହୋଇଥାନ୍ତି ।

ସନାତନଧର୍ମର ତାତ୍ପର୍ଯ୍ୟ ବା ବିଧି ହେଉଛି, ସମସ୍ତ କାର୍ଯ୍ୟ ଜୀବାତ୍ମାର ଉନ୍ନତି ବା ସଦ୍‌ଗତି ସକାଶେ । ଆଉ ତତ୍ସାଧନକ୍ଷମ-ଶରୀର ବା କ୍ଷେତ୍ର ଯେପରି ବର୍ଦ୍ଧିତ ବା ସମୁପଯୁକ୍ତ ହେବ ସେହି ବିଧି ବିଧାନକୁ ଧର୍ମକାର୍ଯ୍ୟ ବୋଲି ଧର୍ମଶାସ୍ତ୍ରମାନଙ୍କରେ ନିର୍ଦ୍ଦେଶ ହୋଇଛି । ସେ ସବୁ ଦେଶ-କାଳ-ପାତ୍ର ନେଇ ବିଜ୍ଞାନାତ୍ମକ । ପ୍ରତ୍ୟେକ ଦିବସ ୬୦ ଦଣ୍ଡ ବା ୨୪ ଘଣ୍ଟା ଏବଂ ଗର୍ଭାଧାନ ପୂର୍ବରୁ ମୃତ୍ୟୁପର୍ଯ୍ୟନ୍ତ ଏବଂ ତତ୍ପରେ ମଧ୍ୟ ପ୍ରେତକର୍ମ, ପିତୃକର୍ମ ଓ ଦେବତ୍ୱ-କର୍ମ ଏବଂ ମୋକ୍ଷପର୍ଯ୍ୟନ୍ତ ନିୟମ ବନ୍ଧା ହୋଇଛି । ଜୀବିତାବସ୍ଥା ତମାମ ରାତ୍ରି ଶେଷ ବ୍ରାହ୍ମ୍ୟ ମୁହୂର୍ତ୍ତ ନିଦ୍ରା ତ୍ୟାଗଠାରୁ ପ୍ରାତଃକୃତ୍ୟାଦି ଇତ୍ୟାଦିତ ପୁନରପି ଶୟନାବଧି ଏବଂ ଶୟନ ସମ୍ବନ୍ଧରେ ମଧ୍ୟ ସମସ୍ତ କାର୍ଯ୍ୟାନ୍ତର୍ଗତ ପ୍ରତ୍ୟେକ କାର୍ଯ୍ୟରେ ଭିନ୍ନ ଭିନ୍ନ ନିୟମ ନିରୂପଣ । ବାର, ତିଥି, ନକ୍ଷତ୍ର, ପକ୍ଷ, ମାସ, ଋତୁ, ଅୟନ, ସମ୍ବତ୍ସର, ଅଧିମାସ ଏବଂ ଗ୍ରହମାନଙ୍କର ଗତିବିଧି ନେଇ ମଧ୍ୟ ଅହୋରାତ୍ରିକୁ କ୍ଷଣମାନ ସମୟପାଇଁ ଓ ସାଂସାରିକ

ସମସ୍ତ କାର୍ଯ୍ୟ, ସ୍ୱ-ସମାଜ, ଦେଶ-କାଳ-ପାତ୍ର ଭେଦରେ ନିୟମ ନ ଥାଇ ନାହିଁ । ଶିଖାବନ୍ଧନ ଓ ଗୁରୁ-ଲଘୁଙ୍କର ମଧ୍ୟ ମନ୍ତ୍ର ଏବଂ ନିୟମ ଅଛି । ଶରୀର ରକ୍ଷା ଓ ପୁଷ୍ଟି ସକାଶେ ପବିତ୍ର ଖାଦ୍ୟ ( ନିଜ ରୁଚି ଅନୁସାରେ ଖାଦ୍ୟ ବୋଲି ଆଜିକାଲି ଯାହା କୁହାଯାଉଅଛି ପ୍ରଚୁର ହୁଏ, ତାହା ତର୍କଯୋଜିପକ୍ଷରେ ପ୍ରମାଣ୍ୟ ଯଥା—'ଆପ୍ ରୁଚି ଖାନା, ପର୍ ରୁଚି ପହରନା' ) ତର୍କଯୋଜିକମାନଙ୍କର ଉଚ୍ଚ-ନୀଚ, ପବିତ୍ରାପବିତ୍ର, ଉତ୍କୃଷ୍ଟନିକୃଷ୍ଟ, ଭଲମନ୍ଦ, ପାପ-ପୁଣ୍ୟ ବାରଣ ନ ଥାଏ । ଯାହାର ତାହାର ହେଉ ରୁଚି ନେଇ ଉଦର ପୂରଣ, ଶୀତୋଷ୍ଣାଦି ଦ୍ୱନ୍ଦ୍ୱ ସୁଖକର ଓ ଇନ୍ଦ୍ରିୟଲାଳସାରେ କାଳଯାପନ କରିଥାନ୍ତି । ହିନ୍ଦୁ ବ୍ୟତୀତ ଅନ୍ୟାନ୍ୟ ଅଧିକାଂଶ ପ୍ରାୟ ସେହିପରି । କିନ୍ତୁ ହିନ୍ଦୁମାନେ ଉପରୋକ୍ତ ସବୁ ବିଷୟକୁ ଭାବି ଚିନ୍ତି ଦେହ ଓ ଦେହୀର ଇହ-ପରକାଳ ସମ୍ବନ୍ଧ ସକାଶେ ଯଥୋପଯୁକ୍ତ ନିୟମ ଓ ସମ୍ପ୍ରଯୁକ୍ତ ଭାବରେ କରିଥାନ୍ତି । ହିନ୍ଦୁମାନଙ୍କର ଖାଦ୍ୟପରିଚ୍ଛଦାଦି ସ୍ୱାସ୍ଥ୍ୟସ୍ନିଗ୍ଧ । ଜଙ୍ଗମମାନଙ୍କର ସ୍ଥାବରମାନେ ଖାଦ୍ୟ; ତଦ୍‌ଦଚରଙ୍କର ଅଧିକାଂଶ ବିପରୀତ । ସେ ପୁଣି ଯନ୍ତ୍ରରେ । ପରିଚ୍ଛଦ ସମ୍ବନ୍ଧରେ ଦେଶୀ ବା କଳ ଲୁଗା ତନ୍ତ୍ରରୁ ବାହାରିଲେ ହିନ୍ଦୁଙ୍କର ପିନ୍ଧା ହୋଇଥାଏ । ବିଧର୍ମୀ ଜଡ଼ବିଜ୍ଞାନର ଉନ୍ନତି କରିଥିଲେହେଁ ତାଙ୍କ ପରିଚ୍ଛଦର ଯନ୍ତ୍ର ଅଛି କି ? ସେମାନେ ସତ୍କର୍ମସାଧନନିମିତ୍ତ କଟାସିଆଁ ପିନ୍ଧନ୍ତି । ପବିତ୍ରତା ତ ନଦାରଦ । ଉତଅଣି ପିଲ୍ପର ମଲାଦି ପୋଛପୋଛ ଇତ୍ୟାଦି ସବୁ କୃତ୍ରିମ । ସେ ଯାହା ହେଉ ହିନ୍ଦୁମାନେ ସ୍ୱ-କୁଟୁମ୍ବ, ସମାଜ, ଗ୍ରାମ, ଦେଶ, ପ୍ରଦେଶ ଏବଂ ସମସ୍ତ ଜଗତ ଆଉ ଦେବତା, ରାକ୍ଷସ, ରାଜ୍ୟପାଳକଶାସକ, ସାଧାରଣ ପ୍ରଜା, ଚଣ୍ଡାଳ, ପଶୁ, ପକ୍ଷୀ ପ୍ରଭୃତିଙ୍କ ଇହ-ପରକାଳପାଇଁ ଯଥାବିଧି ଦେଶ-କାଳ-ପାତ୍ରାନୁଯାୟୀ ଯାହା ଯାହା କରିବା ସମୁଚିତ, ସେ ସମସ୍ତ ନିୟମ

ଓ ବିଧି କେବଳ ହିନ୍ଦୁଧର୍ମ-ଶାସ୍ତ୍ରରେ ବିସ୍ତୀର୍ଣ୍ଣ ଭାବେ ନିର୍ଦ୍ଦିଷ୍ଟ ହୋଇଅଛି । ଉତ୍କୃଷ୍ଟ ବର୍ଣ୍ଣମାନଙ୍କ ପକ୍ଷରେ ଯଥୋପଯୁକ୍ତ ନିୟମ ନିର୍ଦ୍ଦେଶ ଥିଲେହେଁ ଧର୍ମନେତା ବ୍ରାହ୍ମଣମାନେ ଅପେକ୍ଷାକୃତ କଠିନ ନିୟମରେ ଅବଦ୍ଧ । ଏତଦ୍‌ବ୍ୟତୀତ ଯେଉଁମାନେ ସ୍ୱେଚ୍ଛାଗ୍ରସ୍ତ, ସେମାନେ ତଂର୍ଯ୍ୟକ୍‌ଯୋନିଜାତ ମଧ୍ୟରେ ଗଣ୍ୟ ।

କେତେକ କହିଥାନ୍ତି, 'ହିନ୍ଦୁଧର୍ମରେ ଅସଂଖ୍ୟ ଦେବତା ଓ କଠିନ ନିୟମ, ସୁତରାଂ କେତେ ଉପାସନା କରିବ ଏବଂ ନିୟମ ମାନି ଚଳିବ ? ଅନ୍ୟାନ୍ୟ ଧର୍ମରେ ଗୋଟିଏ ଗୋଟିଏ ଦେବତା ଓ ନିୟମ ମଧ୍ୟ ଶିଥିଳ । କେବଳ ତାଙ୍କୁଇ ମନେ ଉପାସନା କରିବା ସହଜ, ତେଣୁ ଉଚିତ ।' ଜଗତ୍କର୍ତ୍ତା ଏକ, ଏହା କେହି ନାହିଁ କରିପାରିବ କି ? ତାହାର ଉତ୍ତର ଏହି କି—ଅନ୍ୟାନ୍ୟ ଧର୍ମ ହଜାରେ ଦୁଇ ହଜାର ବର୍ଷ ମଧ୍ୟର କଥା । ତହିଁ ମଧ୍ୟରେ ଜଣେ ଜଣେ ଧର୍ମୋପଦେଶକ ବା ପ୍ରତିଭାଶାଳୀ ବ୍ୟକ୍ତି ଜନ୍ମ ହୋଇଥିବାରୁ ସେମାନେ ତାଙ୍କୁଇ ଈଶ୍ୱର ବା ଈଶ୍ୱରସନ୍ତାନ ବା ଦୂତ ବୋଲି ମାନି ଆସିଛନ୍ତି । କିନ୍ତୁ ସନାତନ ବା ହିନ୍ଦୁଧର୍ମ ଲକ୍ଷ ଲକ୍ଷ କୋଟି କୋଟି ବର୍ଷର ଓ କଳ୍ପ କଳ୍ପାନ୍ତର କିମ୍ବା ଅନନ୍ତ-କାଳର ଧର୍ମ । ସେଥିମଧ୍ୟରେ ସମୟାନୁଯାୟୀ ଯଥାକାଳରେ ସମୁପଯୁକ୍ତ ସୃଷ୍ଟି-କର୍ମ ସାଧନସକାଶେ ଏକମାତ୍ର ନିର୍ଗୁଣ ପରଂବ୍ରହ୍ମ ବା ସୃଷ୍ଟିକର୍ତ୍ତା ସର୍ବଶକ୍ତିମାନ୍ ଈଶ୍ୱର ଯେ ଯେ କାର୍ଯ୍ୟ ସାଧନ ଓ ସମୁପଯୁକ୍ତ ଉପଦେଶ ଦେବାପାଇଁ ଯେ ସବୁ ଗୁଣାତ୍ମକ-ଶରୀର ବା ଅବତାର ଧାରଣ କରିଥିଲେ, ତାହା ସବୁ ହିନ୍ଦୁ-ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି । ସୁତରାଂ ସେ ସମସ୍ତଙ୍କୁ ଈଶ୍ୱର ବୋଲି ମାନିବାକୁ ହେବଇ ହେବ । ବର୍ତ୍ତମାନ ପର୍ଯ୍ୟନ୍ତ ତାହା ପ୍ରଚଳିତ ହୋଇ ଆସୁଅଛି । ଯେଉଁସବୁ ଦେବତାଙ୍କୁ ଉପାସନା କରାଯାଏ, ସେ ଏକମାତ୍ର ଅଦ୍ୱିତୀୟ ପରଂବ୍ରହ୍ମ ବା

ଈଶ୍ୱର ବୋଲି ନିରୂପଣ ହୋଇ ନାହାନ୍ତି କି ? ବିଭିନ୍ନ ଦେବ ଦେବୀଙ୍କ ସ୍ତୁତି ସ୍ତବରୁ ତ ପ୍ରତ୍ୟକ୍ଷ ପ୍ରମାଣ ମିଳେ, ସେ ସମସ୍ତେ 'ଏକମେବା ଦ୍ୱିତୀୟଂ ପରଂବ୍ରହ୍ମ' ଓ ସର୍ବଶକ୍ତିମାନ୍ । ସମସ୍ତ ଅବତାର ବା ତତ୍ ପ୍ରତିଷ୍ଠିତ ବିଗ୍ରହଙ୍କୁ ଏକ ପରଂବ୍ରହ୍ମଙ୍କ ସତ୍ତା ଭାବି ଯେ କୌଣସି ଗୋଟିଏ ପ୍ରତିଷ୍ଠିତ-ବିଗ୍ରହଙ୍କୁ ଏକ ଏବ ଈଶ୍ୱର ବୋଲି ମନେ କରି ଉପାସନାଦି କରିବାର ବିଧିତ ବରାବର ଅଛି । ତେବେ ହିନ୍ଦୁଧର୍ମରେ ନାହିଁ କଣ ? କେତେକ ବିତଣ୍ଡା ଯୁକ୍ତି କରନ୍ତି, 'ଜଣେ ଜଣେ ଆଜୀବନ ସୂର୍ଯ୍ୟୋଦୟ-ନିଷ୍ଠାରେ ରହି ଅଧିକାଂଶ ସମୟ ଉପାସନାଦି କର୍ମ-ଯୋଗନିରତ ଥିଲେହେଁ, ତାଙ୍କର ସାଧାରଣଙ୍କ ଅପେକ୍ଷା କିଛିମାତ୍ର ବିଶେଷତ୍ୱ ଜଣାଯାଏ ନାହିଁ । ସମସ୍ତେ ଯେପରି ସେ ସେହିପରି; ତେବେ ତହିଁରେ ପ୍ରୟୋଜନ କଣ ?' ତାହାର ଉତ୍ତର ଏହି କି—'ସେ ଯଦି କପଟାଚାରୀ ନୋହିଥିବ, ତେବେ ସମସ୍ତଙ୍କର ସମାନ କିଏ ପରିରେ ସାଧାରଣଙ୍କଠାରୁ ଦୁଃଖୀ ଓ ହଠହଠା କହିଲେ ଚଳେ । କିନ୍ତୁ ଏତିକି ମାତ୍ର, ଅଭାବରେ ମଧ୍ୟ ତାଙ୍କର ମନ ଅପେକ୍ଷାକୃତ ଠିକିଏ ଶାନ୍ତ ଥାଏ । (କୁରୁ-ପାଣ୍ଡବଙ୍କ ବିଷୟ ଅନୁସ୍ମରଣୀୟ ) । ୧୦ ଭା ୮ ଅ: କୃଷ୍ଣ, ନାରଦ, ଯୁଧିଷ୍ଠିର, ଶୁକ-ପକ୍ଷୀଙ୍କ ସମ୍ବାଦ ( ବୃକାସୁରୋ-ପାଖ୍ୟାନ ଦ୍ରଷ୍ଟବ୍ୟ ) । 'ଯେ ମତେ କରଇ ଆଶ, ମୁଁ ତାର କରଇ ସକଳ ନାଶ ।' ପୁରାଣମାନଙ୍କରେ ଏ ବିଷୟରେ ଭୂରି ଭୂରି ପ୍ରମାଣ ଅଛି । ବିଶେଷତଃ ନିରୀହ ମହାତ୍ମା ସାଧକମାନେ ସାଂସାରିକ ସୁଖ କଣ ? ଉଇ ହୁଙ୍କା ହୋଇଯାନ୍ତି । ଯାହା ହେଉ, ଇହଜୀବନରେ କିଛି ଅଧିକ୍ୟ ନ ହେଲେହେଁ ବିଚଳିତ ଓ ବିପଥଗାମୀ ନ ହୋଇ ଅଭ୍ୟାସନିରତ ଥିଲେ ମହୋପକାର ନିଶ୍ଚୟ । "ଅଭ୍ୟାସଯୋଗେନ ତତୋ ମାମିଚ୍ଛାପ୍ତୁଂ ଧନଞ୍ଜୟ", ଗୀତା । ଇହଜନ୍ମରେ ବା ଜନ୍ମଜନ୍ମାନ୍ତରରେ ଶ୍ରେୟ ହେବ

ନିଶ୍ଚୟ । "ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ ।' ଗୀତା । ଇହଜନ୍ମପରେ ଅବା ଜନ୍ମଜନ୍ମାନ୍ତରେ, 'ଭାବଦେ ଭାବତେ କୃଷ୍ଣ କବେ ଦୟା କରେ ।' "ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜୁନ ! ଅର୍ତୋଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ ।" ଗୀ: ଅ ୭।୧୬

ଅତ୍ର ପର-ପରାଭୂତ ସବଶେଷ ଗୁଣାତ୍ମକ ଯିଶୁ ଓ ମହମ୍ମଦଙ୍କଠାରୁ ସର୍ବଶକ୍ତି-ସମ୍ପନ୍ନ, ଅବ୍ୟାହତ-ଗତି, ସର୍ବଜେତା, ସର୍ବପୂଜିତ, ସନ୍ନ୍ୟାହାତ୍ମିକ ଅସଂଖ୍ୟ ଧର୍ମଯାଜକ ଭାରତରେ ଅବତୀର୍ଣ୍ଣ ହୋଇ ସନାତନ ଧର୍ମର ପ୍ରଚାର ଏବଂ ରାଜ୍ୟ-ଶୃଙ୍ଖଳାର ମଧ୍ୟ ଶିକ୍ଷା ଦେଇ ଯାଇଛନ୍ତି । ଅଳମତି ବିସ୍ତରେଣ । ବୃଥା ବିତଣ୍ଡା ଅଗଡ଼ଧତ୍ତୁ କଥାରେ ପ୍ରୟୋଜନ କଣ ? ସମ୍ପତ୍ତିତାନୁସାରେ ଦେହରକ୍ଷା ଓ ପୁଷ୍ଟିସକାଶେ ସାଂସାରିକ କାର୍ଯ୍ୟ ସାଧନ କରି ନିଷିଦ୍ଧାଶନ ଓ ଦୁଃସଂସର୍ଗାଦି ପରିହାର ପୂର୍ବକ ସତ୍ପଥରେ ରହି, ଅନ୍ୟର ଅନିଷ୍ଟ ନ କରି, ସାଧ୍ୟାନୁସାରେ ନିତ୍ୟ-ନୈମିତ୍ତିକାଦି କର୍ମ ଶକ୍ତ୍ୟନୁସାରେ କଲେ ଫଳ ସମାନ ଏବଂ ଯଥାକାଳରେ ବା ଜନ୍ମଜନ୍ମାନ୍ତରରେ ସବଶେଷ ସିଦ୍ଧି ଲଭିବା ନିଶ୍ଚୟ ।

ସେ ଯାହା ହେଉ ଯେ ଯେ କଳ୍ପର ଯେଉଁ ଯେଉଁ ଯୁଗରେ ଯେ ସବୁ ସୃଷ୍ଟି-ଶୃଙ୍ଖଳା ଓ ସାଧନ ଆବଶ୍ୟକ, ସେହି ସେହି ସମୟରେ "ଏକମେବା-ଦ୍ୱିତୀୟଂ" ନିର୍ଗୁଣ ପରଂବ୍ରହ୍ମ ତତ୍ସାଧନ-କ୍ଷମ ଅବତାର ବା ଗୁଣାତ୍ମକ-ଶରୀର ଧାରଣ କରି ସୃଷ୍ଟି-ସମ୍ବନ୍ଧୀୟ ବିପ୍ଳବ ନିବାରଣପୂର୍ବକ ସନାତନ-ଧର୍ମର ଶୃଙ୍ଖଳା କରି ଦେଇଥାନ୍ତି । ଯଥୋକ୍ତ କର୍ମସାଧନାନୁଯାୟୀ ରୂପ ଧାରଣ କରିବାରୁ ତାଙ୍କର ରୂପ ଓ ନାମ ହିନ୍ଦୁ-ଶାସ୍ତ୍ର-ମାନଙ୍କରେ ସାର୍ଥକ ଭାବରେ ନିରୂପଣ ହୋଇଛି । ସଂସ୍କୃତ ଓ ବୈଦିକ ବ୍ୟାକରଣାନୁଯାୟୀ ଧାତୁ ପ୍ରତ୍ୟୟ ପ୍ରକ୍ରିୟାନୁସାରେ

ସେ ସବୁ ରୂପ ଓ ନାମର ଅର୍ଥ ସିଦ୍ଧ ହୋଇଛି । ସଂସ୍କୃତ ଭାଷାର ନିୟମ ଓ ମାହାତ୍ମ୍ୟକୁ ଧନ୍ୟ ! ଅନ୍ୟ ଯେ କୌଣସି ଭାଷାରେ ସୃଷ୍ଟିକର୍ତ୍ତାଙ୍କର ବା ଅବତାରର ସର୍ବଶକ୍ତି-ମାନାତ୍ମକ ସାର୍ଥକ ନାମ-ରୂପ ନିରୂପଣ ହୋଇଛି କି ? ଯେଉଁମାନଙ୍କର ସନାତନ-ଧର୍ମରେ ଏବଂ ନାମରୂପାତ୍ମକ ଜଗତରୁ ପରାତ୍ପର ସୃଷ୍ଟିକର୍ତ୍ତାଙ୍କଠାରେ ଦୃଢ଼-ବିଶ୍ୱାସ ଓ ସଂସ୍କୃତ ଭାଷାରେ ଅଭିଜ୍ଞତା ଅଛି, ସେହି ସଦାଗୁରନିଷ୍ଠ ମାନବମାନେ ସେ ନାମ ଓ ରୂପର ଅର୍ଥ ଏବଂ ମାହାତ୍ମ୍ୟ ବୁଝିବାକୁ ସକ୍ଷମ ।

"ସୁରେଷ୍ୱୃଷିଷ୍ୱୀଶତଥୈବ ନୃଷ୍ୱପିତିର୍ଯ୍ୟକ୍ଷୁଯାଦଃସ୍ୱପିତେଽଜନସ୍ୟ,
ଜନ୍ମାସତାଂ ଦୁର୍ମଦନିଗ୍ରହାୟ ପ୍ରଭୋବିଧାତଃ ସଦନୁଗ୍ରହାୟ ଚ ।"

( ଭା ୧୦ମ: ୧୪ଶ ଅ: ୨୦ଶ ଶ୍ଳୋକ । ବ୍ରହ୍ମାସ୍ତୁତି )

'ହେ ପ୍ରଭୋ ! ବିଧାତଃ ! ତୁମ୍ଭେ ଅଜ, ତଥାପି ଦେବତା, ଋଷି, ମାନବ, ତିର୍ଯ୍ୟକ୍‌ଜାତି ଏବଂ ଜଳଚର ମଧ୍ୟରେ ତୁମ୍ଭର ଯେ ଜନ୍ମ ହୁଏ; ହେ ଈଶ ! ସେ କେବଳ ଅସାଧୁମାନଙ୍କର ଦୁର୍ମଦ ଦମନ ଏବଂ ସାଧୁମାନଙ୍କ ପ୍ରତି ଅନୁଗ୍ରହ କରିବା ନିମିତ୍ତ ।'

---

## ସନାତନ ଧର୍ମ ସାଧନ ଦୁଃସାଧ୍ୟ ନୁହେ

ସନାତନ ଧର୍ମଶାସ୍ତ୍ରୋକ୍ତ ବିଧି ପାଳନ କଲେ ସାଂସାରିକ କାର୍ଯ୍ୟ ସାଧନ କରି ନିର୍ବାହ ହୋଇପାରିବାକୁ କେତେକ ଅସମ୍ଭବ ମନେ କରଥାନ୍ତି; କିନ୍ତୁ ତାହା ନିତାନ୍ତ ଭ୍ରମ । ତାହା ହୋଇଥିଲେ ସେ ଧର୍ମ ଅନନ୍ତ-କାଳରୁ ଚଳିଅସି ନାନା ବିପ୍ଳବ ଭେଦି ଜୀବିତ ରହିଥାନ୍ତା କି ? କାମନାନିଧି, ଚିନ୍ତାମଣି, ହୀରାମାଳାଦି ଅଷ୍ଟରତ୍ନ ପ୍ରଭୃତି ବହୁମୂଲ୍ୟ, ଅମୂଲ୍ୟ ଓ ଦୁର୍ଲ୍ଲଭ-ରତ୍ନପୂର୍ଣ୍ଣ ଗହ୍ୱର ମଧ୍ୟରେ ବିଷାକ୍ତ-ସର୍ପ ଥିବା ମିଥ୍ୟା ହାଉଆ, ଭସ୍ମ-ପରି ସନାତନ ଧର୍ମଶାସ୍ତ୍ରୋକ୍ତ ବିଧିବିଧାନକୁ ଦୂରରୁ ଡରି ବିରୁଡ଼ି ମାଇଲା ପରି ଅଧିକାଂଶ ହିନ୍ଦୁ ବଂଶଧରମାନେ ଦୂରଦୃଷ୍ଟିଦ୍ୱାରା

ଅନୁସନ୍ଧାନ ନ କରି ବିମୁଖ ହୋଇ ବିଦେଶୀ ବିପ୍ଳବୀ ବିଧର୍ମୀଙ୍କ କୁହୁକରେ ମୋହିତ ହେବାର ଦେଖାଯାଏ । ବିଧର୍ମୀ ବିପ୍ଳବୀମାନଙ୍କର ଭବିଷ୍ୟତରେ କି ଦୁର୍ଘଟନା ଘଟିପାରେ ତାହା ଅନୁମାନ କରୁ ନାହାନ୍ତି । ଅତ ସନାତନଧର୍ମୋକ୍ତ ବିଧି-ସାଧନାରେ କି ମହତ୍ତ୍ୱଫଳ ବା ଶ୍ରେୟ ମିଳିପାରେ, ଅଜ୍ଞତାବଶତଃ ବୁଝି ନ ପାରିଲେହେଁ କେହି କହିପାରେ କି 'ସନାତନ ଧର୍ମ ଶାସ୍ତ୍ରୋକ୍ତ କୌଣସି କାର୍ଯ୍ୟ ନିଜ ପକ୍ଷରେ ବା ଜଗତ ପକ୍ଷରେ ଅନିଷ୍ଟ ଘଟିବାର ସମ୍ଭାବନା ?' ସମସ୍ତ ସନାତନ ଧର୍ମ ଶାସ୍ତ୍ରରେ ମଧ୍ୟ ଗୀତା ୧୮ଶ ଅଧ୍ୟାୟ ୩୬।୩୭।୩୮ ଶ୍ଳୋକରେ ଉଲ୍ଲେଖ ଅଛି । ତ୍ରିଗୁଣାନୁଯାୟୀ ସୁଖ ତିନି ପ୍ରକାର; ଯଥା—'ସତ୍ୟଗୁଣୀର ସଦନୁଷ୍ଠାନାତ୍ମକ ନିତ୍ୟ, ନୈମିତ୍ତିକକର୍ମ ବା ଆହ୍ନିକ-କର୍ମ ଓ ଶମ-ଦମାଦି ସାତ୍ତ୍ୱିକ ସାଧନା ପ୍ରଥମରେ କଷ୍ଟକର; କିନ୍ତୁ ପରିଣାମରେ ମହତ୍ ଶାନ୍ତି-ସୁଖପ୍ରଦ । ରଜଗୁଣୀର ଅଳ୍ପାୟାସ-ସାଧ୍ୟ ରଜଗୁଣାତ୍ମକ ବିଷୟ-ଇନ୍ଦ୍ରିୟ-ସଂଯୋଗ-ସୁଖ ପ୍ରଥମରେ ଅମୃତ ତୁଲ୍ୟ କଣ୍ଡୁ-କୁଣ୍ଡନ ପରି; କିନ୍ତୁ ପରିଣାମରେ ଦୁଃଖପ୍ରଦ ବା ବିଷପରି । ତମଗୁଣୀର ଅନାୟାସଲଭ୍ୟ ତମୋଗୁଣାତ୍ମକ ମହୋମୟ ସୁଖ ନିଦ୍ରା ଆଳସ୍ୟ ଏବଂ ମନେ ମନେ ନାନାପ୍ରକାର ସୌଭାଗ୍ୟ ବିଷୟ ସ୍ମରଣଦ୍ୱାରା ଆନନ୍ଦ ଓ କ୍ଷଣିକ ମୋହାତ୍ମକ ବା ଅସାବଧାନତା ସୁଖପ୍ରଦ ।' ସୁତରାଂ ସଦନୁଷ୍ଠାନ ପ୍ରଥମତଃ ସଥାହସରହିତ ହେତୁ ସମୟସାପେକ୍ଷ ଓ କଷ୍ଟକର ହେଲେହେଁ ଉତ୍ସାହରେ କିଛୁଦିନ ଅଭ୍ୟାସ କଲେ ସାମାନ୍ୟ ସମୟରେ ସାଧିତ ହୋଇ ଏପରି ସୁଖକର ଓ ଶାନ୍ତିପ୍ରଦ ହୋଇ ଥାଏ ଯେ, କ୍ୱଚିତ୍ ବ୍ୟତିକ୍ରମ ହେଲେ ଅତି ଅସହ୍ୟ ବୋଧ ହୋଇଥାଏ । ଏହା ବିଶିଷ୍ଟ ବ୍ୟକ୍ତି ଓ ସ୍ୱାନୁଭବରୁ ପ୍ରତ୍ୟକ୍ଷ ଜଣାଯାଇଛି । ଭଦନଭକ୍ତମାନେ ଦୈହିକ-କ୍ରିୟା ଯାହା ଯାହା ପ୍ରତ୍ୟହ କରିଥାନ୍ତି, ତାହା ନ କରିଥିଲେ ଅସୁଖ ବୋଧ

କରି ନ ଥାନ୍ତି କି ? ବିଶେଷତଃ ସମଧିକ ସବିଶେଷ ଉପଭୋଗ୍ୟ ଖାଦ୍ୟ-ଶସ୍ୟାଦି ଏବଂ ଅନ୍ୟାନ୍ୟ ମହୋପକାରୀ ଉପାଦେୟ ବୃକ୍ଷ ଲତାଦି ସବିଶେଷ କୋମଣଦ୍ୱାରା ଉଠେଇବା କଷ୍ଟକର। ମହୋପକାରୀ ଧାତୁଦ୍ରବ୍ୟ ମଧ୍ୟ ସେହିପରି। କିନ୍ତୁ ନିଷ୍ପ୍ରୟୋଜନ ଓ ଅନିଷ୍ଟକର ତୁଚ୍ଛ ଅନାବନା ବୃକ୍ଷଲତା ତା ଘୁଁଏଁ ମାଡ଼ି ଯାଉ-ଥାଏ। ସେହିପରି ଅପବିତ୍ରାତ୍ମକ ଅନିଷ୍ଟକରକର୍ମରତ ମନୁଷ୍ୟାଦି ଓ ଦେହ ଅନାୟାସରେ ଓ ଅଳ୍ପାୟାସରେ ବହୁସଂଖ୍ୟାରେ ବର୍ଦ୍ଧିତ ଓ ପୁଷ୍ଟି ହୋଇଥାଏ। ଆଉ ପବିତ୍ରାତ୍ମକ ସତ୍କର୍ମସାଧକ-ମନୁଷ୍ୟାଦି ସଂଖ୍ୟା କମ ଓ କ୍ଷୀଣତର ଏବଂ ଦୁର୍ଲ୍ଲଭ। ତେଣୁ ପବିତ୍ର ରହି କଷ୍ଟର ସତ୍ସାଧନାଦ୍ୱାରା ଜଗତର ମଙ୍ଗଳ ଓ ଆତ୍ମାର ଉନ୍ନତି ସାଧନ କଠିନ ହେଲେହେଁ ଯଥାସାଧ୍ୟ ଯତ୍ନ କରିବା ସମୁଚିତ। ମନୁଷ୍ୟ ପରେ ସୁଖଭୋଗ କରିବାକୁ ନାନାପ୍ରକାର କଷ୍ଟ ସହି ଯତ୍ନବାନ୍ ହୋଇ ନ ଥାଏ କି ? ଆଉ ସାକ୍ଷାତ୍ ଭୋଜନ ସମୟେ ସବିଶେଷ ଉପାଦେୟ ଖାଦ୍ୟ ଶେଷକୁ ରହେ ନାହିଁ କି ? ଅତଃ ଦୁଷ୍କାର୍ଯ୍ୟରେ ସାଂସାରିକ ଉନ୍ନତି ଓ ସତ୍କର୍ମରେ ଅଭାବଗ୍ରସ୍ତ ହେଲେହେଁ ସତ୍କାର୍ଯ୍ୟର ଅବଲମ୍ବନ କର୍ତ୍ତବ୍ୟ। ଜନ୍ମାନ୍ତର ସତ୍ସାଧନା ଓ ପିତୃଗଣଙ୍କ ବିଶୁଦ୍ଧକ୍ରିୟା ନେଇ ଉଭୟ ଚତୁର୍ବର୍ଗ ମଧ୍ୟ କ୍ୱଚିତ୍ ଘଟିଥାଏ। ବିଦେଶୀ ବିଧର୍ମୀଙ୍କ ଖାଦ୍ୟାଦି ନିୟମଶୂନ୍ୟ; କେବଳ ନଶ୍ୱର-ଶରୀରୋପଯୋଗୀ ଓ ରସନାରୁଚିକର ଉପରେ ନିର୍ଭର। କିନ୍ତୁ ଭାରତବର୍ଷରେ ଆର୍ଯ୍ୟନାର୍ଯ୍ୟ ନେଇ ନିୟମାତ୍ମକ ଖାଦ୍ୟାଦି ଜଳ-ବାୟୁ-ମୃତ୍ତିକାଦି ଭେଦହେତୁ ବିଧିନିଷେଧ ଓ ପରଂପରା କୌଳିକ ପ୍ରଚଳିତ ଭେଦ ମଧ୍ୟ ଅଛି। ସ୍ଥଳ-ବିଶେଷରେ ଯାହା ଉପାଦେୟ ଓ ବିଧେୟ ଅନ୍ୟ ସ୍ଥଳରେ ତାହା ନିଷିଦ୍ଧ ଓ ଘୃଣ୍ୟ। ଏକ ପ୍ରଦେଶରେ ଏକ ଗ୍ରାମରେ ବା ଏକ ସମ୍ପ୍ରଦାୟରେ ବ୍ୟକ୍ତି ବିଶେଷ ନେଇ ଯାହା ଉପାଦେୟ,

ତାହା ଅନ୍ୟ ଦେଖିଲେ ଉଦ୍ଧାର କରିଥାଏ । ସେ ଯାହା ହେଉ ପରଂପରା ପ୍ରଚଳିତ କୌଳିକପ୍ରଥା ଦେଶ-କାଳ-ପାତ୍ର ନେଇ ଅଗତ୍ୟା ବିଧି ଲଙ୍ଘନ କରା ଯାଇପାରେ ବୋଲି ଶାସ୍ତ୍ରାଦେଶ ଥିଲେହେଁ "ଯସ୍ମିନ୍ ଦେଶେ ଯଦାଗ୍ରହଂ ଯା ଭୂମି ଯା ଚ ମୃତ୍ତିକା" ଇତ୍ୟାଦି ବ୍ୟତିକ୍ରମ ଘଟିଲେ ପରେ ପ୍ରତିକାର କରାଯାଇ ପାରେ । ପ୍ରତିବନ୍ଧକ ବିନା ବିଧି ଲଙ୍ଘନର ପ୍ରତିକାର ନାହିଁ । ସ୍ମୃତ୍ୟୁକ୍ତ ବିଧି ସମସ୍ତଙ୍କ ପକ୍ଷରେ ଉପକାରୀ, ନିଷିଦ୍ଧାଶନାଦି ସମସ୍ତଙ୍କ ପକ୍ଷରେ ଅପକାରୀ । ଶାସ୍ତ୍ରାନୁମତ ଖାଦ୍ୟାଦି ଦେହ ଓ ଦେହୀ ଉଭୟ ପକ୍ଷରେ ଯଥୈବୋନାସ୍ତି ମହୋପକାରୀ । ସେହି ଆଦେଶପାଳନ ଓ ସଂସ୍କୃତ ଭାଷା ବ୍ୟବହାର କରି ଆସିଥିବାରୁ ଜଗତମଧ୍ୟରେ ଭାରତବର୍ଷ ଲକ୍ଷ ଲକ୍ଷ କୋଟି କୋଟି ବର୍ଷରୁ ଶୀର୍ଷସ୍ଥାନ ଅଧିକାର କରି ନାନା ବିପ୍ଳବ ଭେଟି ଆସିଛି । ସେ ଯାହା ହେଉ ଅନିଷ୍ଟକର-ବିଷୟଭୋଗାଦି ଅଳ୍ପାୟାସ-ସାଧ୍ୟ କିନ୍ତୁ ଉଭୟ ଲୋକ ଶ୍ରେୟସ୍କର ବିଷୟାଦି ସାଧନ କଷ୍ଟକର । ବର୍ତ୍ତମାନ ଅତି ଦୁଃଖର କଥା, ତଦର୍ଣ୍ଣିତ ସଂସ୍କୃତ-ଭାଷାର ଉଚ୍ଛେଦନ ଓ ସଦାଚରଣର ବିପରୀତ ଦେଖାଯାଏ । "ଅପରେ କିଂ ଭବିଷ୍ୟତି ।" ଅତଏବ ସାବଧାନ !

ସେ ଯାହା ହେଉ ବର୍ତ୍ତମାନ ବିଧର୍ମୀ ଦେଶରେ ଯେ ମାରାତ୍ମକ ବିପ୍ଳବ ଘଟୁଛି ସାମୟିକ ଗୁଡ଼ାଏ ଧ୍ୱଂସ ପରେ ସମସ୍ତ ଜଗତରେ ସନାତନଧର୍ମର ମାହାତ୍ମ୍ୟ ପ୍ରଚୁର ହେବଇ ହେବ । ଏହା ନିଶ୍ଚୟ । 'ଅରେ ତମଣା, ବୁଲି ବୁଲି ଆସି ସେହି ଅଗଣା ।" ବିଶେଷତଃ ସନାତନଧର୍ମ ଶାସ୍ତ୍ରୋକ୍ତ ସମସ୍ତ କର୍ମ ସବିଧିରେ ଏବଂ ସମ୍ପୂର୍ଣ୍ଣ ଭାବରେ ସାଧିତ ହୋଇ ନ ପାରେ; କିନ୍ତୁ ଅଗ୍ନିରେ ଧୂମ ପରି ସବୁ କାର୍ଯ୍ୟରେ ଛିଦ୍ର ଥିବା ନିଶ୍ଚୟ । "ସର୍ବାରମ୍ଭାହି ଦୋଷେଣ ଧୂମେନାଗ୍ନିରିବାବୃତା ।" ଗୀତା । ବିଶେଷତଃ ନିଜର ବା ଆତ୍ମୀୟ ସ୍ୱଜନ କିମ୍ବା ସ୍ୱଦେଶୀଙ୍କର

ହିତ ନିମିତ୍ତ କୌଣସି ସବିଶେଷ ବା ଅନିର୍ବାର୍ଯ୍ୟ କାର୍ଯ୍ୟ-ସାଧନ ସକାଶେ ଅଗତ୍ୟନ୍ତରରେ ଯଦି ନିଷିଦ୍ଧକାର୍ଯ୍ୟରେ ପ୍ରବୃତ୍ତ ହେବା ନିତାନ୍ତ ଦର୍କାର, ତେବେ କାର୍ଯ୍ୟ ସାଧନାନ୍ତେ ସମୁଚିତ ଭାବରେ ବିଶୁଦ୍ଧ ବା ପବିତ୍ର ହୋଇ ନିଜର କୌଳିକ ପ୍ରଥାନୁସାରେ ସନାତନ ଧର୍ମଶାସ୍ତ୍ରୋକ୍ତ କ୍ରିୟା ସାଧନ କଲେ ଇହ-ପରକାଳ ଶ୍ରେୟ ଓ ସିଦ୍ଧି ହୋଇପାରିବ । ତାହା ମଧ୍ୟ କହାଯାଇପାରେ । ତେବେ ହିନ୍ଦୁଧର୍ମରେ ନାହିଁ କଣ ? ବା ଅସାଧ୍ୟ କଣ ? ଅତଏବ ଇନ୍ଦ୍ରିୟଲାଳସାତ୍ମକ ନିଷିଦ୍ଧ-କାର୍ଯ୍ୟରେ ପ୍ରବୃତ୍ତ ନ ହୋଇ ଦେଶ-କାଳ-ପାତ୍ରକୁ ଅନୁମାନ କରି ଯଥୋପଯୁକ୍ତ ଓ ସମୁପଯୁକ୍ତ ସତ୍କାର୍ଯ୍ୟ ସାଧିତ ହେଉଥିଲେ, ସମୟାନୁସାରେ ବା ଜନ୍ମଜନ୍ମାନ୍ତରରେ ସିଦ୍ଧି ହେବ ଓ ଅମୃତତ୍ୱ ମିଳିବ । ଯେପରି ନୀଚଜାତୀୟା ନଟୀ ନୃତ୍ୟ କରୁଥାଏ, ଗୀତ ଗାଉଥାଏ, ବାଦ୍ୟରେ ଲୟ ରଖିଥାଏ, ହାବଭାବ ବିକାଶଦ୍ୱାରା ଦର୍ଶକଙ୍କୁ ମୁଗ୍ଧ କରୁଥାଏ, କିନ୍ତୁ ସାଧନାପାଠବ ବଳରେ ମସ୍ତକ-ସ୍ଥିତ ଜଳକୁମ୍ଭକୁ ସ୍ଥିର ରଖିଥାଏ । ସେହିପରି ସନ୍ଥମାନେ ସାଂସାରିକ ସମସ୍ତ କାର୍ଯ୍ୟ ସାଧନଦ୍ୱାରା ସମୁପଯୁକ୍ତ ବିଷୟ-ସୁଖରେ ମଜ୍ଜି ଭୋଗ କରୁଥିଲେହେଁ ସତ୍ପଥାବଲମ୍ବନ ପୂର୍ବକ ସତ୍କାର୍ଯ୍ୟ ଏବଂ ଭଗବାନଙ୍କଠାରେ ଲୟ ରଖିଥାନ୍ତି ।

"ପୁଙ୍ଖାନୁପୁଙ୍ଖ ବିଷୟାନୁପସେବ୍ୟମାନୋ
ଧୀରେ ନ ମୁଞ୍ଚତି ମୁକୁନ୍ଦ ପଦାରବିନ୍ଦଂ ।
ସଙ୍ଗୀତ ନୃତ୍ୟ ଲୟ ବାଦ୍ୟ ବଶାସମୁଗ୍ଧା
ମୌଳିସ୍ଥ କୁମ୍ଭପରିରକ୍ଷଣ ଧୀର୍ନଟୀବ ॥"

ସର୍ବକର୍ମ-ସାଧନ-କ୍ଷମ-କ୍ଷେତ୍ର ହେଲେହେଁ ଯେଉଁ ଶରୀର ଭସ୍ମ, ବିଷ୍ଠା ବା କୀଟରେ ପରିଣତ ହେବା ନିଶ୍ଚିତ; କେବଳ ତାହାର ରକ୍ଷା ଓ ଉନ୍ନତିରେ ବିମୋହିତ ହୋଇ ଅଧିକାଂଶ ଯେ ମଜ୍ଜିଛନ୍ତି; କିନ୍ତୁ ଯାହା ବିଦ୍ୟମାନରୁ ସେ ଶରୀର ଜୀବିତ ଅଛି

ସେ ଶରୀର ବା ଜୀବାତ୍ମାର ଉନ୍ନତି ସମ୍ବନ୍ଧରେ ଉପରୋକ୍ତ ଧର୍ମ-କର୍ମ-ସାଧନ ଓ କ୍ରିୟାପ୍ରଣାଳୀର ଏବଂ ସାଧନ ନ ହେବା ମହତ୍ ଭ୍ରମ ନୁହେ କି ?

## ବିଭିନ୍ନ ସୃଷ୍ଟିକ୍ରମ

ନାମ-ରୂପାତ୍ମକ ଜଗତ ଓ ତଦନ୍ତର୍ଗତ ପ୍ରତ୍ୟେକାଂଶ ପୂର୍ବେ ନ ଥିଲ, ଏହା ସର୍ବବାଦୀ ସମ୍ମତ । ତତ୍ ପୂର୍ବରେ ଅନାମ-ଅରୂପ-ଅବ୍ୟକ୍ତ-ଅଚିନ୍ତ୍ୟ-ଅକ୍ଷର ବା ଅନିର୍ଦ୍ଦେଶ୍ୟ ଯେ ଥିଲେ, ତାଙ୍କର ସତ୍ତା ଓ ସଦସଦାତ୍ମକ-ଅଜ୍ଞାନ-ସମନ୍ୱିତ ଶକ୍ତି ତ ଏହି ଦୃଶ୍ୟମାନ ନାମରୂପାତ୍ମକ ଜଗତ । ଏହା ତ ମାନିବାକୁ ହେବଇ ହେବ ।

"ସର୍ବଂଖଳ୍ୱିଦଂ ବ୍ରହ୍ମ, ସକଳମିଦମହଞ୍ଚ ବାସୁଦେବଃ
ପରମପୁମାନ୍ ସ ଏକଃ, ତତ୍ସତ, ତତ୍ତ୍ୱମସି, ଅହଂ ବ୍ରହ୍ମାସ୍ମି ।"

ଏହାର ଭାବ କେବଳ ହିନ୍ଦୁ ଜାଣେ । ସୁତରାଂ ସେହି ପରଂବ୍ରହ୍ମଙ୍କର ସତ୍ତା-ସମନ୍ୱିତ ନାମ-ରୂପାତ୍ମକ ସବିଧି-ପ୍ରତିଷ୍ଠିତ ବିଗ୍ରହ ଏବଂ ଦୃଶ୍ୟମାନ ପ୍ରତ୍ୟେକାଂଶକୁ ବା ସମସ୍ତଙ୍କୁ ବ୍ରହ୍ମ-ଜ୍ଞାନରେ ବା ଲୀଳାବତାର କମ୍ବା ଲୀଳା-ବିଗ୍ରହ କଳ୍ପନାରେ ଆରାଧନା କରିଥାଏ । ସନାତନ ଧର୍ମର ବ୍ୟତିକ୍ରମ ଘଟିଥିଲେହେ ବର୍ତ୍ତମାନ ପରଂପରାଗତ ଅଭ୍ୟାସହେତୁ ଅଧିକାଂଶରେ ଚଳୁଛି ।

ମତାନ୍ତରେ ଗୁଣାତ୍ମକ ନାମ-ରୂପମୟ ଜଗତର ଉତ୍ପାଦକ ବା ମୂଳ-କାରଣ ଆଦ୍ୟାଶକ୍ତି ବା ଲକ୍ଷ୍ମୀ-ସରସ୍ୱତୀ ଏବଂ ନାରାୟଣ । ଯଥା—ଲାବଣ୍ୟୈଶ୍ୱର୍ଯ୍ୟମୟ ରୂପାତ୍ମକ ଲକ୍ଷ୍ମୀ ଆଉ ପ୍ରେମାନନ୍ଦ-ଲଳିତ୍ୟମୟ ନାମାତ୍ମକ ବା ଶବ୍ଦ-ସ୍ୱରାତ୍ମକ-ସରସ୍ୱତୀ ଏବଂ ଏ ସମସ୍ତରେ ନିର୍ଲିପ୍ତ-ପ୍ରଭବାତ୍ମକ ଚିଦ୍ଘନ ନାରାୟଣ । ରୂପାତ୍ମକସମୂହ ଶବ୍ଦକୌଶଳ-ଶୃଙ୍ଖଳା ନିୟନ୍ତ୍ରଣୀ-ଦ୍ୱାରା ଦୃଶ୍ୟମାନ ବ୍ରହ୍ମାଣ୍ଡାନ୍ତର୍ଗତ ପ୍ରତ୍ୟେକ ଓ ସମସ୍ତ ବସ୍ତୁରେ ସାଂସାରିକ ସମସ୍ତ କ୍ରୀଡ଼ା ଲାଗିଛି ବା କର୍ମ ଚଳୁଛି । ଗୋଟିକରେ

କିଛି ମାତ୍ର ହୋଇ ନ ପାରେ । ସ୍ଥାବରସମୂହ ଜଙ୍ଗମ-ମାନଙ୍କର ଉପଭୋଗ୍ୟ । ଜଙ୍ଗମମାନଙ୍କ ଶରୀର ପୁଣି ସ୍ଥାବରରେ ପରିଣତ । କେତେକ ହିଂସ୍ରପଶୁ, ପକ୍ଷୀ, ପତଙ୍ଗାଦି ଖାଦ୍ୟ ସମ୍ବନ୍ଧରେ ବିପରୀତ । କେତେକ ରଜଃତମାତ୍ମକ ସନାତନୀ ସବିଧି ବନ୍ଧନରେ ଚଳୁଥିଲେ । କିନ୍ତୁ ବର୍ତ୍ତମାନ ତଦ୍‌ବଂଶୀୟଙ୍କଠାରେ ବିପରୀତ ଯାହା କି ଅନ୍ତ୍ୟଜ-ଚଣ୍ଡାଳ ସମାଜରେ ନିୟମ ଶିଥିଳତା ହେତୁ ଚଳୁଥିଲା । କାଳର ଗତି ବିପରୀତ । ସେ ଯାହାହେଉ ଲକ୍ଷ୍ମୀ ଓ ସରସ୍ୱତୀଙ୍କ ନିୟନ୍ତ୍ରଣରେ ସ୍ଥାବରାତ୍ମକ ଓ ଜଙ୍ଗମାତ୍ମକ ରୂପ ଓତପ୍ରୋତ ଭାବରେ ପରିଣତ ହେଉଛି । ଏହିପରି ଭାବରେ ଚତୁର୍ବିଧ ରୂପ ବା ଶରୀରାତ୍ମକ-ସମୂହ କ୍ରୀଡ଼ନକ ହୋଇଛନ୍ତି । ସମସ୍ତଙ୍କଠାରେ ଚିଦ୍ଘନ ନାରାୟଣଙ୍କର ସତ୍ତା ବା ଅଂଶ କିମ୍ବା ପ୍ରତିବିମ୍ବ ଜୀବାତ୍ମାଖ୍ୟାରେ ଖ୍ୟାତ । ତ୍ରିଗୁଣର ନ୍ୟୂନାଧିକ ବ୍ୟତିକ୍ରମଦ୍ୱାରା ନାମ-ରୂପାତ୍ମକ ଜଙ୍ଗମମାନେ ଏକ ଉପାଦାନ ସମ୍ଭୂତ ହେଲେହେଁ କର୍ମାନୁଗତ ପାପ-ପୁଣ୍ୟର ନ୍ୟୂନାଧିକାଂଶ ହେତୁ ପ୍ରତ୍ୟେକ ଏକରୁ ଅନ୍ୟ ପୃଥକ । କିନ୍ତୁ ଗୁଣ-କର୍ମାଶ୍ରୟ ଓ ସବିଶେଷ ଶକ୍ତି-ସମ୍ପନ୍ନ ହେତୁ ସୂକ୍ଷ୍ମଭୂତ-ଶରୀରାତ୍ମକ ଦେବତାମାନେ ଏ ସମସ୍ତରୁ ପୃଥକ୍ ଓ ଶ୍ରେଷ୍ଠ । ଭକ୍ତର ସବିଧି-ନିବେଦିତ ପବିତ୍ର ବସ୍ତୁର ସୂକ୍ଷ୍ମ-ବିଷୟ ଉପଭୋଗ କରି ବର୍ଦ୍ଧିତ ହୁଅନ୍ତି ଓ ଜଗତ ପାଳନ କରନ୍ତି; ମଧ୍ୟ ସ୍ୱେଚ୍ଛାରେ ସ୍ଥୂଳ-ଶରୀର ଧାରଣ କରିପାରନ୍ତି । ସମସ୍ତ ଦେବୀମାନେ ଉଭୟାତ୍ମକ ହେଲେହେଁ କେତେକ ଲକ୍ଷ୍ମୀଙ୍କ ସତ୍ତା-ବିଶେଷରେ ଏବଂ କେତେକ ସରସ୍ୱତୀଙ୍କ ସତ୍ତାବିଶେଷରେ ଯଥୋପଯୁକ୍ତ ଲୀଳା ସକାଶେ ବିଭିନ୍ନ ନାମ-ରୂପରେ ଅବତୀର୍ଣ୍ଣ ହୋଇଥାନ୍ତି । ସେମାନଙ୍କୁ ଯଥୋପଯୁକ୍ତ ନାମ-ରୂପାତ୍ମକ ବିଧି ଓ ସ୍ୱ ସ୍ୱ ମନ୍ତ୍ର ଓ ସ୍ତବାଦିଦ୍ୱାରା ଆରାଧନା କରିବା ସମୁଚିତ । ଦେବତାମାନେ ଏହି ଉଭୟାତ୍ମକ ସତ୍ତା ଏବଂ ନାରାୟଣଙ୍କ

ସବିଶେଷ ସତ୍ତାରେ ଯଥୋପଯୁକ୍ତ ଲୀଳା ପ୍ରକାଶେ ଯଥାକାଳରେ ଆବିର୍ଭୂତ ହୋଇଥାନ୍ତି । ହେଲେହେଁ ସେମାନଙ୍କୁ ଯଥୋକ୍ତ ବିଧିରେ ଆରାଧନା କରିବା କର୍ତ୍ତବ୍ୟ । ସବୁ ଦେବଦେବୀମାନେ ଆବାହନ-ନ୍ୟାସାଦିଦ୍ୱାରା ବେଦୋକ୍ତ-ବିଧି-ପ୍ରତିଷ୍ଠିତ ବିଗ୍ରହ-ମାନଙ୍କରେ ଆରାଧିତ ହୋଇଥାନ୍ତି । ଅତଏବ ବିଶେଷତ୍ୱ ନେଇ ଇନ୍ଦ୍ରାଦି ଦେବତାମାନେ ଏକମାତ୍ର ନାରାୟଣ ଏବଂ ଆଦ୍ୟାଶକ୍ତି ହେତୁ ସମସ୍ତ ଦେବୀମାନଙ୍କ ମଧ୍ୟରେ କେତେକ ଲକ୍ଷ୍ମୀ ଓ କେତେକ ସରସ୍ୱତୀ । ସୁତରାଂ କୌଣସି ଦେବଦେବୀଙ୍କି ନ୍ୟୂନାଧିକ ଭାବିବା ଅନୁଚିତ । କାହାକୁ ହେୟଜ୍ଞାନ ନ କରି ଯେ କୌଣସି ଦେବତାଙ୍କୁ ସବୁ ବୋଲି ଭାବି ଆରାଧନା କରାଯାଇପାରେ । ତାହା ଉଚିତ ଧାରଣା । ଯତଃ ଲୀଳା ବିଶେଷ ହେତୁ 'ବୈଶିଷ୍ଟ୍ୟାତ୍ତ୍ ତଦ୍‌ବାଦସ୍ତଦ୍‌ବାଦଃ' ( ବେଦାନ୍ତସାର ) ନ୍ୟାୟରେ ବିଭିନ୍ନ ବୋଲାଯାନ୍ତି ମାତ୍ର ।

---

## ଅପବିତ୍ରତାର ପ୍ରତ୍ୟକ୍ଷ ଫଳ

ବର୍ତ୍ତମାନ ସାଂସାରିକ ପ୍ରଚଳନକୁ ଅନୁସନ୍ଧାନ କଲେ ଦେଖାଯାଏ ଯେ, ପ୍ରକୃତିର ନିୟନ୍ତ୍ରଣଦ୍ୱାରା କାମାଦି ବଶବର୍ତ୍ତିରେ ଗୁଡ଼ାଏ ସନ୍ତାନ ଆମଦାନୀ ହେଉଛନ୍ତି । ଅତି ଅକର୍ମଣ୍ୟ, କଦର୍ଯ୍ୟ, ଅମାନିଆ, ଦୁଷ୍ଟ, ଅଜ୍ଞ ସନ୍ତାନକୁ ମାତୃଜାତୀୟା-ମାନେ କ୍ଷୀରାଦି ଭକ୍ଷ ଦେଇ ଜୀବିତ ରଖିଲା ପରି ଆଦ୍ୟାଶକ୍ତି ବା ପ୍ରକୃତି ( ଲକ୍ଷ୍ମୀ ଓ ସରସ୍ୱତୀ ) ସ୍ୱଶକ୍ତିଦ୍ୱାରା ଭୂ-ମାତା ଓ ଗୋ-ମାତା ପ୍ରଭୃତିଙ୍କଠାରୁ ଶବ୍ଦକୌଶଳ ନିୟନ୍ତ୍ରଣରେ ଅମେଧ୍ୟ ରୂପାନ୍ତରି, କୃଷିଜାତ-ଶସ୍ୟ ଓ କ୍ଷୀରାଦି ସମନ୍ୱିତ ସ୍ଥୂଳ-ଶରୀରୋପଯୋଗୀ ଖାଦ୍ୟ ଯୋଗାଇବାରୁ ଲୋକମାନେ ତାହା ଖାଇ ରୋଗ-ଶୋକାକୁଳ, ପୂଜ-ରକ୍ତାଦି ସମନ୍ୱିତ, ତୁଚ୍ଛ-ସ୍ଥୂଳ-ଶରୀର ଧାରଣ କରି ଜୀବିତ ରହିଛନ୍ତି ମାତ୍ର । କିନ୍ତୁ ସନାତନ

ଧର୍ମ-ଶାସ୍ତ୍ରୋକ୍ତ ସଦନୁଷ୍ଠାନ ବ୍ୟତିକ୍ରମରୁ ସେ ଖାଦ୍ୟରେ ସାତ୍ତ୍ୱିକ-ସାର ଓ ସୁମିଷ୍ଟ ନାହିଁ । ଗୋଟିଏ ଅନୁଭବ ବିଷୟ ଅନୁସନ୍ଧାନ ସକାଶେ ଅନୁରୋଧ କି, ବୟୋବୃଦ୍ଧଙ୍କଠାରୁ ପ୍ରତ୍ୟକ୍ଷ ବୃତ୍ତାଯାଉ; ପ୍ରାୟ ୫୦।୬୦ ବର୍ଷ ପୂର୍ବେ ଗବ୍ୟଦୁଗ୍ଧ ଏବଂ ଘୃତରେ ଯେପରି ସୁବାସ ଓ ସୁମିଷ୍ଟ ଥିଲା, ବର୍ତ୍ତମାନ ଯେ କୌଣସି ଗାଈଠାରୁ ସାକ୍ଷାତ ଦୁଗ୍ଧ ଦୋହନ କରି ଘୃତ ପ୍ରସ୍ତୁତ କଲେ ସେ ଦୁଗ୍ଧ ଓ ଘୃତରେ ପୂର୍ବକାଳ ସୁବାସ ଓ ସୁମିଷ୍ଟ ଅଛି କି ? ଅମୃତର ମାହାତ୍ମ୍ୟ ଶୁଣିଥିବା ଲୋକ ଅମ୍ଳ ମଧୁର-ମିଶ୍ରିତ ପଦାର୍ଥ ଖାଇ ଅମୃତ ବୋଲି ମନେ କରିବା ପରି ଅଧୁନିକମାନେ ଦୁଗ୍ଧ-ଘୃତାଦି ଖାଇ ଆନନ୍ଦିତ ହେଉଛନ୍ତି ମାତ୍ର । ସମସ୍ତ ଫଳ ମୂଳାଦି ମଧ୍ୟ ଏହିପରି । ପ୍ରତିବର୍ଷ ଯେପରି ବହୁ ପରିମାଣରେ ଅମ୍ବ ଫଳୁଥିଲା ଏବଂ ତହିଁରେ ଯେ ସୁମିଷ୍ଟ ଓ ସୁବାସ ଥିଲା, ତାହା ଅଛି ନା ପ୍ରତିବର୍ଷ ସେହି ଗଛ ମଧ୍ୟ ସେପରି ଫଳୁଛି ନା ସେ ସୁମିଷ୍ଟ-ସୁବାସ ଅଛି କି ? ସବୁ ଶସ୍ୟ ଏହିପରି । ଏ ସବୁର ମର୍ମ ସନାତନଧର୍ମ ଶାସ୍ତ୍ରୋକ୍ତ ସତ୍‌କ୍ରିୟା ଏବଂ ଯଜ୍ଞହୂତ-ଧୂମଜାତ ସାରସମନ୍ୱିତ ପବିତ୍ର ପର୍ଜନ୍ୟଶୂନ୍ୟ ଏବଂ ଅପବିତ୍ରତାରୁ ଘଟି ନାହିଁ କି ? ଯାହାହେଉ ସନାତନ ଧର୍ମ-ଶାସ୍ତ୍ରୋକ୍ତ ସତ୍‌କ୍ରିୟା ବ୍ୟତୀତ ଭଗବତ୍ତତ୍ତ୍ୱ ବା ଅପ୍ରୋଦ୍ଧାର ହୋଇ ନ ପାରେ । ତେଣୁ ସାଧାରଣ ଲୋକେ କ୍ଷୀଣରୁ କ୍ଷୀଣତର ଓ କ୍ଷୀଣତମ ।

ପ୍ରତିକ୍ରିୟା, ଯଥା—ଯେପରି କୌଣସି ରୋଗୀ ସମ୍ପ୍ରଯୁକ୍ତ ଚିକିତ୍ସକ ମତାନୁସାରେ ସମ୍ପ୍ରଯୁକ୍ତ ମୂଳ ମୂଳିକା ସମ୍ପ୍ରଯୁକ୍ତ ଭାବରେ ଆହରଣ କରି ଆୟୁର୍ବେଦ ବିଧି ମୁତାବକ ପ୍ରସ୍ତୁତ ଔଷଧ ସେବନ କଲେ ଅତି ସମ୍ପ୍ରଯୁକ୍ତ ଆହାର ବିହାର-ଦ୍ୱାରା ସମ୍ପ୍ରଯୁକ୍ତ ଭାବରେ ରହିଲେ ନିରୁଜ ହୋଇ କାର୍ଯ୍ୟକ୍ଷମ ହୋଇଥାଏ; ସେହିପରି ନିଷିଦ୍ଧାଶନ ବର୍ଜନ ଓ ପବିତ୍ର

ଆହାର ବହାରାଦଦ୍ୱାରା ସଚ୍ଛାସ୍ତ୍ରୋକ୍ତ ବଧିରେ ରହି ସମ୍ପ୍ରଯୁକ୍ତ ସଦ୍‌ଗୁରୂପଦେଶାନୁଯାୟୀ ଦେଶ-କାଳ-ପାତ୍ର ଓ ବର୍ଣ୍ଣାଶ୍ରମ ଧର୍ମ ନିରୂପଣ ବିଧିରେ ସଦନୁଷ୍ଠାନାତ୍ମକ ସଗୁଣୋ-ପାସନା ବା ନିର୍ଗୁଣ-ସାଧନାଦ୍ୱାରା ମାନବମାନେ ପଞ୍ଚ-କ୍ଲେଶାଦି ତ୍ରିତାପାନ୍ୱିତ ସଂସାର-ସାଗରରୁ ଶୀଘ୍ର ବା ବିଳମ୍ବରେ ଉଦ୍ଧାର ହୋଇପାରିବେ । ବ୍ୟତିକ୍ରମାନୁସାରେ ବ୍ୟତିକ୍ରମ ଫଳ ଓ ବିପରୀତାନୁସାରେ ବିପରୀତ ଫଳ ଘଟିବଇ ଘଟିବ, ଏହା ନିଶ୍ଚୟ !

ସୃଷ୍ଟିକର୍ତ୍ତା ବା ପ୍ରକୃତିର ନିୟମାନୁସାରେ ପ୍ରକୃତି-ରୂପିଣୀ ଯେ କେହି ଜରାୟୁଜାଦି ବିଶେଷତଃ ମାନବୀମାନେ ଗର୍ଭଧାରଣ କଲାମାତ୍ରେ ସେ ଗର୍ଭସ୍ଥ-ଶିଶୁର ଆହାର ନିମନ୍ତେ ଜନନୀର ସ୍ତନରେ ସଙ୍ଗେ ସଙ୍ଗେ କ୍ଷୀର ସଂଗ୍ରହ ବା ସଞ୍ଚିତ ହୋଇଥାଏ । କିନ୍ତୁ ବିଧର୍ମୀମାନଙ୍କ ଅଧିକାଂଶ ଏବଂ ଏବେ ହିନ୍ଦୁମାନଙ୍କ ମଧ୍ୟରୁ କେତେକ ତାହାର ବିପରୀତ ବା ବିରୁଦ୍ଧାଚରଣ କରି ସେ କ୍ଷୀରକୁ ସେ ଶିଶୁକୁ ଖାଇବାକୁ ନ ଦେଇ ବହୁସଂଖ୍ୟକ ସନ୍ତାନ ଲୋଭ ଓ ଯୌବନ ସୁସମାଲାଳସାରେ ଅନ୍ୟ କ୍ଷୀରାଦି ଆହାର ଖୁଆଇ ସେ ସନ୍ତାନକୁ ଜୀବିତ ଓ ବର୍ଦ୍ଧିତଦ୍ୱାରା ଜଗତରେ ଜନସଂଖ୍ୟା ବଢ଼ାଇବା ( ସେନ୍‌ସେସ ରିପୋର୍ଟକୁ ଅନୁସନ୍ଧାନ କରାଯାଉ) ବିଶେଷତଃ କେତେକ ବିଧର୍ମୀ-ଦେଶରେ ଖାଦ୍ୟାଭାବ ଘଟିବା, ଯାହାର ପରିଣାମ ସର୍ବଧ୍ୱଂସ ବୋଲି ଅନୁମାନ ହୁଏ । ଏହା ସୃଷ୍ଟିକର୍ତ୍ତାଙ୍କର ନିୟମବିରୁଦ୍ଧ କାର୍ଯ୍ୟ ନୁହେ କି ? ସେ ସନ୍ତାନ ଉପରେ ମାତା ପିତାଙ୍କର ସତ୍ତା ଶିଥିଳ ହେଲା ନାହିଁ କି ? ସନାତନଧର୍ମ ଶାସ୍ତ୍ରୋକ୍ତ ବିଧିଅନୁସାରେ ସେ ସନ୍ତାନ ପ୍ରଦତ୍ତ ଜଳ-ପିଣ୍ଡାଦିରେ ମାତା-ପିତାଙ୍କର ସମ୍ପୂର୍ଣ୍ଣ ଅଧିକାର ହୋଇପାରେ କି ? ( ଗୟାଶ୍ରାଦ୍ଧ ପଦ୍ଧତି ବିଶେଷତଃ ତଦନ୍ତର୍ଗତ ମାତୃଷୋଡ଼ଶ ପିଣ୍ଡ-ବାକ୍ୟ ଦ୍ରଷ୍ଟବ୍ୟ ) । ବଂଶ-ପରଂପରା ରକ୍ତଗତ ସମ୍ବନ୍ଧ, ଧର୍ମଭାବ, ଗୃହସ୍ଥାଶ୍ରମର ସମୁଚିତ

ବଧି, ମାତୃ-ପିତୃତ୍ୱ-କର୍ତ୍ତବ୍ୟକର୍ମ ପ୍ରଭୃତି ନେଇ ସେ ସନ୍ତାନ ପ୍ରତି ବ୍ୟତିକ୍ରମ ଘଟିବ ନାହିଁ କି ?

"ଯୋ ମେ ଗର୍ଭଗତସ୍ୟାପି ବୃତ୍ତିଃ ସଂସ୍ଥିତବାନ୍ ପୟଃ ।
ଶେଷବୃତ୍ତିବିଧାନାର୍ଥଂ ସ କିଂ ଶୁପ୍ତୋଽଥବା ମୃତଃ ।"

---

## ସନାତନ ଧର୍ମାତ୍ମକ ଜଡ଼ବିଜ୍ଞାନର ଅଦ୍ଭୁତ ସାଧନ, ଅଧ୍ୟାତ୍ମ-ବିଜ୍ଞାନ, ସତ୍କ୍ରିୟାଭ୍ରଷ୍ଟର କାରଣ, ପରାଧୀନତା

ପୃଥିବୀର ଅନ୍ୟାନ୍ୟ ଦେଶ-ପ୍ରଦେଶ ପ୍ରଚଳିତ ଇତିହାସରୁ ଏବଂ ଆମ୍ଭର ଏହି ଭାରତୀୟ ହିନ୍ଦୁ ଧର୍ମାତ୍ମକ ଇତିହାସ ବା ଶାସ୍ତ୍ର ପୁରାଣାଦିରୁ ଓ ସମସ୍ତ ପ୍ରତିଭାଶାଳୀ ଏବଂ ଐତିହାସିକ-ମାନଙ୍କଦ୍ୱାରା ପ୍ରମାଣ ମିଳେ ଯେ, ଭାରତବର୍ଷ ଓ ଭାରତୀୟ-ମାନେ ବହୁକାଳ ବା ସର୍ବ-ପ୍ରଥମ ଉନ୍ନତି ଲଭିଥିଲା ଓ ଥିଲେ । ଏହା ତ ଭିନ୍ନିମ ବାଜୁଛି । ବର୍ତ୍ତମାନ ବିଶିଷ୍ଟମାନଙ୍କୁ ଅନୁରୋଧ ଯେ, ନିଜ ହୃଦୟକୁ ସାକ୍ଷୀକରି କହନ୍ତୁ ତ, ଉକ୍ତ ଉନ୍ନତି କେଉଁ କାରଣରୁ ଏବଂ କାହା ବଳରେ ହୋଇଥିଲା ? ସୁତରାଂ ସର୍ବ ଶେଷରେ ନିଶ୍ଚୟ ପ୍ରମାଣ ହେବ ଯେ, ସଂସ୍କୃତ-ଭାଷା ଏବଂ ସନାତନ ଧର୍ମଶାସ୍ତ୍ର ଶ୍ରୁତି-ସ୍ମୃତି-ପୁରାଣୋକ୍ତ ପୂର୍ବପ୍ରଚଳିତ ବିଧିବିଧାନ, ସତ୍କ୍ରିୟାକଳାପ, ସଦାଚାର ବ୍ୟବହାର, ନିୟମନିଷ୍ଠା ଓ ବର୍ଣ୍ଣାଶ୍ରମଧର୍ମ ଜାଗ୍ରତ ହେତୁ ଜଡ଼ବିଜ୍ଞାନ ଓ ଆଧ୍ୟାତ୍ମିକ ବିଜ୍ଞାନ ବଳରେ ଉନ୍ନତି ଲଭିଥିଲା ।

ଭାଷା ବା ସ୍ୱରର ମାହାତ୍ମ୍ୟ ବରାବର ଅଛି । ଲଳିତ୍ୟ ସ୍ୱର ଶୁଣି ମୃଗାଦି ସ୍ଥିର ହେବା, ପଦ-ମନ୍ତ୍ର ବା ପଦ୍ମତୋଳା-ଦ୍ୱାରା ଅତି କ୍ରୂର ସର୍ପ ବଶ ବା ଆୟତ୍ତ ହେବା, ଅଧିକାଂଶ ପଶୁ, ପକ୍ଷୀ ମଧ୍ୟ ଏହିପରି । ସଦ୍‌ଭାବ ଓ ସ୍ୱରଦ୍ୱାରା ସଚ୍ଛକ୍ତି-ସମ୍ପନ୍ନ ପ୍ରତିଭାଶାଳୀ ମାନବ ମନ ବଶ ଓ ପରିବର୍ତ୍ତନ ହେବା,

କ୍ରୂରକର୍ମୀ ବ୍ୟତୀତ ସାଧାରଣଙ୍କ ଭାବ ଅପେକ୍ଷାକୃତ ଶିଥିଳ ହୋଇଥାଏ । ଦେବଭାଷା ଯଥା—ବୈଦିକ ଓ ସଂସ୍କୃତ ଭାଷାରେ ଦେବତାମାନେ ସନ୍ତୁଷ୍ଟ ହେବା ତ ନିଶ୍ଚୟ । ସ୍ୱଭାଷାପ୍ରିୟ ଇନ୍ଦ୍ରିୟାଧିଷ୍ଠିତ ଦେବତାମାନଙ୍କ ଆରାଧନାଜନିତ ଅନୁଗ୍ରହ ବିନା ଇନ୍ଦ୍ରିୟମାନଙ୍କଦ୍ୱାରା ଅଦ୍ଭୁତ ଓଜଶୀଳ ବା ସଦନୁଷ୍ଠାନାତ୍ମକ ସଦ୍ଭାବ ବା ମୁକ୍ତି ସାଧିତ ହୋଇ ନ ପାରେ । ଆଉ ସାଂସାରିକ ସମସ୍ତ ବିଷୟ ଏବଂ ସ୍ୱ ଶରୀରାଦି ମମତା ତ୍ୟାଗ ପୂର୍ବକ ଶ୍ରଦ୍ଧାସମ୍ବଳିତ ଏକାନ୍ତ ଭାବ ଭକ୍ତିଦ୍ୱାରା ଭଗବାନ୍ ପ୍ରାପ୍ତ ହେବା ନିଶ୍ଚୟ । ଦେବସତ୍ତ୍ୱାତ୍ମକ ଇନ୍ଦ୍ରିୟଯୁକ୍ତ ମାନବ କେବଳ ସଂସ୍କୃତ ଭାଷାରେ ଶାନ୍ତି ଲଭିବା ନିଶ୍ଚୟ, ସଂସ୍କୃତ ଓ ଅନ୍ୟ ଭାଷାନଭିଜ୍ଞ ବା ସମାନାଭିଜ୍ଞ ନିକଟରେ ଉଭୟ ଭାଷା ପଦ୍ୟ ସମୁଚିତ ସ୍ୱର ଲାଳିତ୍ୟରେ ଗାନ କଲେ ନ୍ୟୂନାଧିକ ଶାନ୍ତି ସୁଖ ନିଶ୍ଚୟ ବୋଧ ହେବଇ ହେବ । ଯେ କେହି ଏକ ଭାଷାଜ୍ଞ ସହଜାତ ଭାବ ନେଇ ସବିଶେଷ ଆହ୍ଲାଦିତ ହୋଇପାରେ ।

ଆର୍ଯ୍ୟଭୂମି ଭାରତବର୍ଷରେ ଭାରତୀୟଙ୍କର ମୂଳଭାଷା ସଂସ୍କୃତ ଓ ମୂଳଧର୍ମ ସନାତନ ଧର୍ମ । ସେହି ସଂସ୍କୃତ-ଭାଷା ଅପଭ୍ରଂଶ ହୋଇ ଗୋଟିଏ ଗୋଟିଏ ପ୍ରଦେଶରେ ତଦନୁକରଣରେ ଗୋଟିଏ ଗୋଟିଏ ପ୍ରାଦେଶିକ ଭାଷା ପାଲଟି ଯାଇଛି । ବର୍ତ୍ତମାନ ଭାରତର ପ୍ରଧାନ ନେତା ଗାନ୍ଧୀ ଓ ତଦନୁଗତ ପ୍ରଧାନ ପ୍ରଧାନ ନେତାମାନେ ପ୍ରାୟ ଅଧିକାଂଶ ହିନ୍ଦିଭାଷୀ ଥିବାରୁ କୂଟନୀତିଦ୍ୱାରା ହିନ୍ଦି-ଭାଷାକୁ ଭାରତତମାମ୍ ରାଷ୍ଟ୍ରଭାଷା କରିବା ପାଇଁ ଓ ତାଙ୍କ ଗୋଡ଼ାଣିଆ ଅନ୍ୟାନ୍ୟ ଭାଷା-ଭାଷୀ କେତେକ ମନଃ ପ୍ରାଣ ଢାଳି ଦେଇଛନ୍ତି । କିନ୍ତୁ କେତେକ ଦେଶୀୟ ସେ କୂଟନୀତି ବୁଝିପାରି ବିଶେଷତଃ ଦାକ୍ଷିଣାତ୍ୟରେ ହିନ୍ଦିଭାଷା ବିରୁଦ୍ଧରେ ଅଧିକାଂଶ ସତ୍ୟାଗ୍ରହ କରିବାର ଶୁଣାଯାଏ ।

କିନ୍ତୁ ସଂସ୍କୃତ-ଭାଷା ରାଷ୍ଟ୍ର-ଭାଷା ହେଲେ କେହି ଆପତ୍ତି କରି ନ ପାରନ୍ତି । ଭାରତର ସର୍ବସତ୍ତ୍ୱ ଓ ତତ୍ତ୍ୱ ସେହି ଦେବ-ଭାଷାରେ ବିଦ୍ୟମାନ ଓ ଦେଦୀପ୍ୟମାନ । ସନାତନୀୟ ସଂସ୍କାରାଦି ସମସ୍ତ ଧର୍ମ୍ୟକର୍ମ ସେହି ଭାଷାରେ ସାଧିତ ହେଉଛି । ସେ ଭାଷା ରାଷ୍ଟ୍ରଭାଷା ହେଲେ ସବୁ ପ୍ରଦେଶବାସୀ ମନେ କରିବେ ଆମ୍ଭର ମହାତ୍ମା ପିତାମହାଦି ପିତୃଗଣ ବହୁକାଳାନ୍ତେ ତୀର୍ଥାଟନରୁ ଫେରିଲେ । ତଦ୍ଦ୍ୱାରା ଭାରତୀୟ ପୂର୍ବ ଗୌରବ ଦେଦୀପ୍ୟମାନ ହେବାର ହେବ । ଅଉ ଜର୍ମାନ ଆମେରିକାଦି ସବଶେଷ ଦେଶରେ ଯେପରି ସଂସ୍କୃତର ଆଦର ଶୁଣାଯାଏ, ସେମାନେ ଯତ୍ପରୋନାସ୍ତି ସମାଦର ଓ ଶ୍ରେୟ କରିବେ, ଏହା ନିଶ୍ଚୟ ! ସନାତନଧର୍ମ ଓ ସଂସ୍କୃତ-ଭାଷା ସମସ୍ତ ଜଗତରେ ବିଖ୍ୟାତ ହୋଇ ଜଗତ ପ୍ରେମମୟ ହେବ । ସମସ୍ତେ ଭାରତୀୟ ମତକୁ ଅନୁକରଣ କରି ଗୁରୁ-ମାନ୍ୟ କରିବେ,—ଏହା ନିରାଟ ସତ୍ୟ । କିନ୍ତୁ ଆଧୁନିକ ଭାରତୀୟ ନେତାମାନେ ଅହଂମନ୍ୟେ ବା ଗର୍ବରେ 'ଆମ୍ଭେ ସବୁ କରିଦେବୁଁ' ବୋଲି ଭାବ ଅମୃତ ଢାଳିଦେଇ ମଇଳାରେ ଘାଣ୍ଟି ହେବା ପାଇଁ ବିଦେଶୀୟଙ୍କ ଗୋଡ଼ାଣିଆ ହୋଇ ତାଙ୍କ ଆଚରିତ ମ୍ଳେଚ୍ଛତ୍ୱକୁ ଅନୁକରଣ-ଦ୍ୱାରା ସନାତନଧର୍ମକୁ ଧ୍ୱଂସ କରିବାପାଇଁ ପ୍ରାଣପ୍ରାୟୁଷ୍ଟିତ ହୋଇ ମଜ୍ଜିଛନ୍ତି । "ଈଶ୍ୱରେଚ୍ଛା ନିରଙ୍କୁଶା"; ସଂସ୍କୃତ-ଭାଷାର ମାହାତ୍ମ୍ୟ, ତତ୍ତ୍ୱ, ଅଳ୍ପ ସମୟ ମଧ୍ୟରେ ଯେପରି ସୁସାଧ୍ୟ ଓ ମାତୃଭାଷାରେ ପରିଣତ ହୋଇପାରିବ ତାହା 'ନିବେଦନ' ପୁସ୍ତକରେ ପ୍ରଚ୍ଛିନ୍ନ ଭାବରେ ବୁଝାଇ ଦିଆଯାଇଛି । ବିପରୀତ ମତର ମଧ୍ୟ କାରଣ ନିର୍ଦ୍ଦେଶ ହୋଇଛି । ଦେଖିବାକୁ ଅନୁରୋଧ । ଜଣେ ପଣ୍ଡିତଙ୍କର ପୁତ୍ର ପ୍ରାୟ ୯।୧୦ ବର୍ଷର ବାଳକ ୨।୩ ବର୍ଷ ତଳେ ପୁରୀ ଚନ୍ଦନଯାତ୍ରା ସମୟେ ଚନ୍ଦନ-ମଣ୍ଡପରେ କେତେକ ପଣ୍ଡିତମାନଙ୍କ ସହିତ ସଂସ୍କୃତ ଭାଷାରେ

ଉତ୍ତର ପ୍ରତ୍ୟୁତ୍ତର ଓ ଆଳାପ ପ୍ରଳାପ କରୁଥିବାର ବହୁତ ଲୋକ ଶୁଣି ଅତି ପ୍ରେମରେ ଅନନ୍ଦିତ ହେଉଥିବା ଦେଖା-ଅଛନ୍ତି । ପ୍ରତ୍ୟେକ ପ୍ରଦେଶର ଉପାଦେୟ ଭାଷା-ଶାସ୍ତ୍ର ସଂସ୍କୃତ ଭାଷାରେ ପରିଣତ ହୋଇପାରେ ବା ରହିପାରେ । "ଏକକ୍ରିୟା-ଦ୍ୟର୍ଥକସ୍ତି ବିଭୁବ" । ଆଧୁନିକ ମତାନୁଯାୟୀ ଅବନତ, ଅର୍ଥାନାଶ୍ଚନ, ଅବ୍ୟବସ୍ଥିତ ଧାର୍ମିକ ବିଶୃଙ୍ଖଳ ସଭ୍ୟବହୀନ ଭାରତୀୟ ପ୍ରତାପଶାଳୀମାନଙ୍କ ମତକୁ ଅନୁମାନ କଲେ ଗାନ୍ଧିଙ୍କ ପରେ ଯେ କେହି ଅନ୍ୟ ପ୍ରଦେଶୀୟ ପ୍ରଧାନ ନେତା ବନିବେ, ସେ ତାଙ୍କ ପ୍ରଦେଶ-ଭାଷାକୁ ରାଷ୍ଟ୍ରଭାଷା କରିବେ, ଭାରତ-ମାହାତ୍ମ୍ୟକୁ ସମୂଳେ ଲୋପ କରିବେ, ଦେବ-ବିଗ୍ରହ ଓ ବଡ଼ ବଡ଼ ଦେବାଳୟ ପ୍ରଭୃତିକୁ ଧ୍ୱଂସ କରିବେ । ସନାତନ-ଧର୍ମ-ଶାସ୍ତ୍ରୋକ୍ତ ପରଂପରା-ପ୍ରଚଳିତ ସତ୍‌କ୍ରିୟାକୁ ବ୍ୟତିକ୍ରମ କରିବେ । ସୁତରାଂ ସମସ୍ତେ ମ୍ଳେଚ୍ଛ ହୋଇ ଏକାକାର ହେବେ । ରୂପଲାବଣ୍ୟ ଓ ମନୋମତାନୁଯାୟୀ ସବୁ ସ୍ତ୍ରୀ ସବୁ ପୁରୁଷଙ୍କର ଓ ସବୁ ପୁରୁଷ ସବୁ ସ୍ତ୍ରୀଙ୍କର ହେବେ । ଯେ ବଳିଷ୍ଠ ହେବେ ସେ ଅନ୍ୟାନ୍ୟମାନଙ୍କୁ ଧ୍ୱଂସ କରି ଇନ୍ଦ୍ରିୟପ୍ରବୃତ୍ତି ଚରିତାର୍ଥ କରିବେ । ପରଂବ୍ରହ୍ମ-ସନାତନ ଅନନ୍ତଶାୟୀ ନାରାୟଣଙ୍କର ନାଭିପଦ୍ମୋଦ୍ଭବ ସୃଷ୍ଟିକର୍ତ୍ତା-ବ୍ରହ୍ମା ଯେ ପଦ୍ମରୁ ଜାତ ହୋଇ ସୃଷ୍ଟି ସର୍ଜନା କରିଥିଲେ, ସେହି ପଦ୍ମ ହେଉଛି "ଅଜନାଭ" ଅର୍ଥାତ୍ ଅଜଙ୍କର ନାଭି (ଶ୍ରୀମଦ୍ଭାଗବତ ୫ମ ସ୍କନ୍ଧ ୭ମ ଅଃ ୩ୟ ବାକ୍ୟ) । "ଅଜନାଭଂ ନାମୈତଦ୍‌ବର୍ଷଂ ଭାରତମିତ ଯତ ଆରଭ୍ୟ ବ୍ୟପ-ଦିଶ୍ୟନ୍ତି ।" ଶ୍ରୀଧରସ୍ୱାମୀ । "ଭାରତମିତି ସ୍ୱନାମାଖ୍ୟାପକତ୍ୱେନ ଧର୍ମାଦ୍ୟତିଶୟଃ ସଚିତଃ ।" ଋଷଭଙ୍କ ସୁତ ବିଷ୍ଣୁ ଅଂଶ ଭରତଙ୍କ ପ୍ରଜାପାଳନ ସମୟରୁ 'ଭାରତବର୍ଷ' ନାମରେ ବିଖ୍ୟାତ ହେଲା । ବର୍ତ୍ତମାନ ସେ ନାମ ପରିବର୍ତ୍ତରେ ବିଦେଶୀୟଙ୍କ ପ୍ରଚଳିତ ନାମ 'ଇଣ୍ଡିଆ' ବୋଲି ପ୍ରଚାର କରିବା ସମ୍ଭାବନା । ଧନ୍ୟ ରେ ଭାରତୀୟ ନେତା ଧନ୍ୟ !

---

ଜଡ଼ବିଜ୍ଞାନର ଉନ୍ନତି—ଜଡ଼ବିଜ୍ଞାନ ଭାରତରେ ନ ଥିବା କୁହାଯାଇ ନ ପାରେ । ଯତଃ—ସ୍ୱେଚ୍ଛାଚାଳିତ ବ୍ୟୋମଯାନ ବା ପୁଷ୍ପକ-ବିମାନ, ଆକାଶରେ ଯୁଦ୍ଧରଥ ଚାଳନ, ମନୋନୀତ ଶର ସନ୍ଧାନ ପ୍ରଭୃତି ବରାବର ଥିଲା,—ଯାହାର ଆଂଶିକ ପ୍ରକ୍ରିୟା ଭାରତରୁ ଯାଇ ବିଗତ ଜର୍ମାନ ଯୁଦ୍ଧରେ ବିକୃତ ଭାବେ ପ୍ରତ୍ୟକ୍ଷ ହୋଇଛି । ତତ୍ପରେ ଅନ୍ୟାନ୍ୟ ଦେଶ ପ୍ରଦେଶରେ ଉଡ଼ାଜାହାଜ, ବୁଡ଼ାଜାହାଜ, ବୋମା ପ୍ରଭୃତି ଉତ୍କଟ ଯୁଦ୍ଧକାଣ୍ଡ ଚାଲୁଛି । ଏହା ବା ଉଡ଼ାଇ ଦିଆଯାଇପାରେ; କିନ୍ତୁ ପ୍ରତ୍ୟକ୍ଷ କଥା, ଯଥା—ପୁରୀ, ଭୁବନେଶ୍ୱର, କୋଣାର୍କ ପ୍ରଭୃତି ବଡ଼ ବଡ଼ ଦେବାଳୟ-ମାନଙ୍କରେ ପାଟପଥର, ମୁଦ୍‌କଳଶ ବା ଅମୃଳାଶ୍ରୀ ପ୍ରଭୃତି ଦେବାଳୟର ଉଚ୍ଚସ୍ତରରେ ଜଡ଼ିତ ହୋଇଛି । ପୁରୀର ଅରୁଣସ୍ତମ୍ଭ ଇତ୍ୟାଦି ଇତ୍ୟାଦି । କୋଣାର୍କ ଦେବାଳୟ ୧୬୦ ହାତ, ତାହାର ଉଚ୍ଚସ୍ତରରେ ଜଡ଼ିତ ହୋଇଥିବା ନବଗ୍ରହ ପ୍ରସ୍ତର ମୂର୍ତ୍ତିରୁ ଅଧିକାଂଶ ବା ବାରପଣ ଛେଦନ ହୋଇ ମଧ କଲିକତା ଯାଦୁଘରକୁ ଯିବାପାଇଁ ମନୁଷ୍ୟ ବଳ କି ଗାଡ଼ିର ବଡ଼ ବଡ଼ ଇଞ୍ଜିନ୍‌ଦ୍ୱାରା ଉତ୍ଥିତ ହୋଇପାରିଲା ନାହିଁ । ଏହିପରି ଓ ଏହାଠାରୁ ବଡ଼ ବଡ଼ ପ୍ରସ୍ତର ଅମୃଳାଶ୍ରୀ, ଗଜସିଂହମୂର୍ତ୍ତି ଜଡ଼ିତ ଥିଲା; ସେ ସବୁ ଅସ୍ତବ୍ୟସ୍ତ ହୋଇ ତଳେ ପଡ଼ିଛି । ସେତୁବନ୍ଧ ରାମନାଥଙ୍କ ଅତି ବିଶାଳ ମହାକାୟ ବୃଷଭ, ତାଞ୍ଜୋରସ୍ଥ ଦଶ ହାତ ଲମ୍ବ ଆଠ ହାତ ଉଚ୍ଚ ବୃଷଭ, ଷୋଳ ହାତ ଲମ୍ବ ଦେଢ଼ ହାତ ମୁଖ ମୋଟା ଲୌହ-ତୋପ, କାଞ୍ଚିସ୍ଥ ଶିବମୂର୍ତ୍ତି ଉପରକୁ ପ୍ରାୟ ଦଶ ହାତ ଉଚ୍ଚ, ପାଞ୍ଚ ହାତ ମୋଟ, ମାତ୍ର ତଳକୁ କେତେ ଅଛି କହି ହେଉ ନାହିଁ । ୨୦ ବା ୨୨ହାତ ଉଚ୍ଚ ଯୁଗପତ୍ ଭୟଭୀତି-ପ୍ରଦ ଆହ୍ଲାଦମୟ ନିବିକ୍ରମ ମୂର୍ତ୍ତି । ଏ ସବୁ ଗୋଟିଏ ଗୋଟିଏ ପ୍ରସ୍ତରରେ ନିର୍ମିତ । ଏହିପରି ବହୁସଂଖ୍ୟକ ମୂର୍ତ୍ତି, ରାମନାଥ ଓ

ଦ୍ୱାରକା ଦେବାଳୟ ସଂଲଗ୍ନ ବଡ଼ ବଡ଼ ପାଠପ୍ରସ୍ତର, ହସ୍ତିନା ନିକଟବର୍ତ୍ତୀ ୧୬୦ ହାତ ଘୂର୍ଣ୍ଣସ୍ତମ୍ଭ, ତନ୍ନିକଟ ଅନଙ୍ଗପାଳଙ୍କ ପ୍ରକାଣ୍ଡ ଲୌହସ୍ତମ୍ଭ ଇତ୍ୟାଦି ଇତ୍ୟାଦି । ଭାରତବର୍ଷରେ ଏହିପରି ବହୁସଂଖ୍ୟକ ବିଦ୍ୟମାନ ଏବଂ ବହୁସଂଖ୍ୟକ ଉଚ୍ଚ ଦେବାଳୟ, ଗୋପୁରରେ ବିଶାଳ ସ୍ତମ୍ଭ, ପାଠପ୍ରସ୍ତର ଏବଂ ଅନ୍ୟାନ୍ୟ ଅସଂଖ୍ୟ ବଡ଼ ବଡ଼ ମୂର୍ତ୍ତି ବିଦ୍ୟମାନ ।

ସୂର୍ଯ୍ୟଦେବ ଆକାଶରେ ଗତି କଲାପରି କୋଣାର୍କ ସୂର୍ଯ୍ୟମନ୍ଦିର ଆକାଶରେ ବିହାର କରିବାପାଇଁ ଗୋଟିଏ ଦହ ମଧ୍ୟରେ ତଳସ୍ତର ଏକ ଚକ ଉପରେ କ୍ରମେ କ୍ରମେ ରଥାକୃତି ଭାବେ ଗଠିତ ହୋଇ ଭୂମିସ୍ତର ଚତୁର୍ବିଂଶ ସଂଖ୍ୟକ ଚକ ଉପରେ ବିଜ୍ଞାନ ପ୍ରକ୍ରିୟାଦ୍ୱାରା ଗଠିତ ହୋଇ ବୃହତ୍ ଚୁମ୍ବକ ପ୍ରସ୍ତର ଜଡ଼ିତ ହୋଇଥିଲା । 'ଭାଗବତ ୫ମ ସ୍କନ୍ଧ ୧ମାଧ୍ୟାୟ ବର୍ଣ୍ଣିତ ୨ୟ ସୂର୍ଯ୍ୟ ସ୍ୱରୂପ ଆକାଶରେ ବିହାର କରୁଥିବା ପ୍ରିୟବ୍ରତଙ୍କ ବ୍ରହ୍ମା ତହିଁରୁ ବିରତ କଲାପରି, ୧୬ଶତ-ସଂଖ୍ୟକ ଶିଳ୍ପୀଙ୍କ ମସ୍ତକ ଛେଦନ ପରିବର୍ତ୍ତେ ଏକମାତ୍ର ଗୁରୁ-କୋପଯଗୀର ଶିରଛେଦନ-ରୂପ ବିଧିଦ୍ୱାରା ଉକ୍ତ ଦେବାଳୟ ଆକାଶ-ବିହାରରୁ ବିରତ ହୋଇଥିଲା । ( ଷୋଳଶ ବଢ଼େଇରେ ଦାୟ ନା ପୁଅରେ ଦାୟ ? ) ପ୍ରାଚୀ ନଦୀକୂଳ ଅନ୍ତର୍ବେଦୀ ନିକଟ ଦ୍ୱାଦଶଭୁଜା ଦେବୀଙ୍କ ପୁରାତନ କୂପର ଇଷ୍ଟକରେ କାରିଗରର ଅଙ୍ଗୁଳିସହ ହସ୍ତାକୃତି ଦେଖିଲେ ପୂର୍ବେ କପରି ବପୁଶାଳୀ ମାନବ ଥିଲେ, ଅନୁମାନ କରାଯାଇପାରେ । କୋଣାର୍କ ନିକଟରେ ପାହାଡ଼ ପ୍ରସ୍ତର ନାହିଁ, ତାହା ସବୁ ବହୁଦୂରରୁ ଏବଂ ମୁଗୁନୀପ୍ରସ୍ତର ଏକମାତ୍ର ନୀଳଗିରି ଗଡ଼ଜାତରୁ ଆସିବାର ସମ୍ଭବ । ଏହିପରି ଯାହା ଯାହା ସ୍ଥୂଳଚକ୍ଷୁରେ ଦେଖାଯାଏ, ତାହା ସବୁ ଭାରତୀୟଙ୍କ ସନାତନ ଧର୍ମବଳର ମାହାତ୍ମ୍ୟ ନୁହେଁ କି ? ବେଶୀ ଅତୀତ କାଳ କଥା ଛାଡ଼ ।

ବର୍ତ୍ତମାନ କାଳସ୍ଥ ବୟୋଃଧିକ ସ୍ୱଚକ୍ଷୁରେ ଦେଖିଥିବା ୬୦।୭୦ ବର୍ଷାତୀତର ସାଧାରଣ ବପୁଶାଳୀ ଓ ବଳଶାଳୀ ଲୋକଙ୍କ ପରି ଆଜକାଲି ଜଣେ ମାତ୍ର ଦେଖାଯାଉଛନ୍ତି କି ? ନିଜର ପିତା, ପିତାମହଙ୍କ ବପୁ ଓ ବଳକୁ ଏବଂ ସେ ସମୟର ସାଧାରଣ ଲୋକଙ୍କୁ ଆଉ ନିଜକୁ ଓ ନିଜର ପୁତ୍ରପୌତ୍ରାଦିଙ୍କ ଶରୀର ଓ ବଳକୁ ଅନୁମାନ କରାଯାଉ । ସନାତନ ଧର୍ମଭ୍ରଷ୍ଟ ଅସ୍ମମାନଙ୍କୁ ଧିକ୍, ଧିକ୍ ! ଯେଉଁମାନେ ଏହି ସବୁ ଜଡ଼ପଦାର୍ଥ ସ୍ଥୂଳଚକ୍ଷୁରେ ଦେଖିଲେହେଁ ସନାତନଧର୍ମର ଜଡ଼ ବିଜ୍ଞାନାତ୍ମକ ମାହାତ୍ମ୍ୟକୁ ଆଲୋଚନା ନ କରି ହିନ୍ଦୁଧର୍ମାତ୍ମକ କ୍ରିୟାକଳାପକୁ ଅବିଶ୍ୱାସ କରୁଛନ୍ତି, ସେମାନେ ଅତି କଠିନ ସାଧନାତ୍ମକ ଆଧ୍ୟାତ୍ମିକ ବିଜ୍ଞାନର କ୍ରିୟାକଳାପ ଓ ମାହାତ୍ମ୍ୟର ଗନ୍ଧ ସମ୍ବନ୍ଧ ବୁଝିବାକୁ ସକ୍ଷମ ହୋଇ ନ ପାରନ୍ତି । ଅନ୍ୟାନ୍ୟ ଦେଶ ପ୍ରଦେଶରେ ଯାହା କିଛି ବିଶେଷତ୍ୱ ଅଛି, ତାହା ସବୁ ଭାରତୀୟଙ୍କ ସାହାଯ୍ୟରେ ହେବା ନିଶ୍ଚୟ,—ଏଥିରେ ଲେଶମାତ୍ର ସନ୍ଦେହ ନାହିଁ ।

ଆଧ୍ୟାତ୍ମିକ ବିଜ୍ଞାନ—ସ୍ୱର୍ଗାଦି ଅନ୍ୟାନ୍ୟ ଚତୁର୍ଦ୍ଦଶ ଭୁବନକୁ ଗମନ ଏବଂ ପଞ୍ଚାଶତ୍ କୋଟି ବ୍ରହ୍ମାଣ୍ଡର ନିର୍ଣ୍ଣୟ । ଏତଦ୍‌ବ୍ୟତୀତ ଅସଂଖ୍ୟ ଭୁବନର ଅଭାଷ, ପରକାୟ-ପ୍ରବେଶ, ସ୍ମରଣମାତ୍ରେ ବହୁଦୂର ବିଷୟ ଜ୍ଞାତ ଓ ଗମନ, ବିଶେଷତଃ ଅନିର୍ଦ୍ଦେଶ୍ୟ ପରଂବ୍ରହ୍ମ ନିର୍ଣ୍ଣୟ ଏବଂ ଆତ୍ମୋଦ୍ଧାର ବା ସଦ୍‌ଗତି । ଭୌତିକ ଜଡ଼ବିଜ୍ଞାନ ନିମ୍ନସ୍ତର ହେତୁ ଆଧ୍ୟାତ୍ମିକ-ବିଜ୍ଞାନ ସାଧନ ସକାଶେ ଶରୀର ଉପଯୋଗୀ ହେବାପାଇଁ କେତେକ କାର୍ଯ୍ୟକୁ ଅଭ୍ୟାସଦ୍ୱାରା ସାଧାରଣରେ ଧର୍ମ୍ମକର୍ମ ବୋଲି ଚଳାଇଦେଇ ଜଡ଼ବିଜ୍ଞାନକୁ ହେୟଜ୍ଞାନ କରିଥିବାରୁ ତାହା ପୂର୍ବରୁ ଲୋପ ହୋଇଥିଲା । ଆଧ୍ୟାତ୍ମିକ ବିଜ୍ଞାନ ସାଧନାର ଶିଥିଳତା ଘଟି ଅଭ୍ୟାସବଶରୁ ଯାହା କିଛି ସତ୍ତା ମାତ୍ର ସାମାନ୍ୟ

ଭାବରେ ଥିଲା । 'କର୍ପୂର ଯାଇ କନା ବାସନା ପରି' । ବର୍ତ୍ତମାନ ବଧର୍ମାତ୍ମକ ବଦେଶୀ ଶିକ୍ଷା-ବଶାରଦମାନେ ଅପଣା ଅପଣା ମଧ୍ୟରେ ସପକ୍ଷ ବପକ୍ଷ ବନ୍ଧ 'ଠକକୁ ଠକ, ଠକ ପଡ଼ଶା ତା ସଙ୍ଗେ ଥାଏ ଗୋଲଅମିଶା, ଏକ ଠକ ମାରେ ଅଷି, ଏକ ଠକ ହୁଏ ସାକ୍ଷୀ', ଓ କୁଟମୀତ ଶାସନରେ 'ଜଳ ପ୍ରବେଶକୁ ଅନିଚ୍ଛୁକ ମେଷପଲରୁ ଗୋଟାଏ ଜଳକୁ ଆଗ ଡେଇଁଲେ' ଆଉ 'ଘଣ୍ଟିରକ୍ଷକ ସଜବାଜ ହୋଇ ସଙ୍କେତ ଦେଲେ ଘଣ୍ଟିପଲ ଖେଦିଲା ପରି' ଅଧିକାଂଶ ସନାତନ ବଂଶୀୟ ସମ୍ପ୍ରଦାୟୁକ୍ତ କଠିନ ନିୟମାତ୍ମକ ଯଦ୍ୟପିନାସ୍ତି ମହୋପକାରୀ ସନାତନ-ଧର୍ମାତ୍ମକ ବଧି ବଧାନକୁ ସମୂଳେ ଧ୍ୱଂସ କରି ମୋହମୟ ବ୍ୟର୍ଥ ଦୈହିକ ପୁଷ୍ଟି ପାଇଁ ଅନାୟାସସାଧ୍ୟ ମ୍ଲେଚ୍ଛକ୍ରିୟାକୁ ଅନୁକରଣ କରିବା ଓ କରାଇବାକୁ ପ୍ରବଳ ଚେଷ୍ଟା କରି 'କମ୍ବୁକ ରବ' ସମାନ ବିରୁଦ୍ଧ-ମତକୁ ସର୍ବଦା ଚହଟାଇବାରୁ ଅଜ୍ଞତାବଶତଃ ଅଧିକାଂଶ ଲୋକେ ଅଗ୍ନିରେ ପତଙ୍ଗ ପଡ଼ିବା ପରି ଅନୁକରଣ କରୁଛନ୍ତି । ମହୋପକାରୀନଭିଜ୍ଞ ହେଲେହେଁ ( ମତାନ୍ତର ଥାଇ ପାରେ ) କିନ୍ତୁ ଉକ୍ତ ମହାଭ୍ରମୋକ୍ତ ବଷୟ ବିଶିଷ୍ଟମାନଙ୍କ ପ୍ରତି ଅନୁମାନ, ପ୍ରତ୍ୟକ୍ଷ ବା ଅଶାସ୍ତ୍ରୀୟ ବୋଲି ଆଉ ଶ୍ରେୟ ବୁଝିପାରନ୍ତୁ ବା ନ ପାରନ୍ତୁ ସନାତନଧର୍ମ-ଶାସ୍ତ୍ରୋକ୍ତ କେଉ ବିଧି ବା ନିୟମ ଜଗତ ବା ନିଜ ପକ୍ଷରେ ଅନିଷ୍ଟକର ବୋଲି କେହି କହିପାରିବ କି ? ଅତଏବ ନିଦ୍ୱାଳକୁ ଆଲୋଚନା କରି ଚଳିବା ସମୁଚିତ । ମୁଁ ଗୋଟିଏ ସାମାନ୍ୟ ବା ନଗଣ୍ୟ ବୋଲି ମତେ ହେୟଜ୍ଞାନ କଲେହେଁ ମୋ ଲିଖିତ 'ଗୁରୁ-ଶିଷ୍ୟ ତତ୍ତ୍ୱସଂହିତା', 'ନିବେଦନ' ଆଉ ଉକ୍ତ 'ମହାଭ୍ରମ ଓ ଆତ୍ମୋନ୍ନତି' ପୁସ୍ତକକୁ ହେୟଜ୍ଞାନ ନ କରି ଉତ୍ତମରୂପେ ଅନୁଶୀଳନ କଲେ ଅଧିକାଂଶ ସନ୍ଦେହ ଦୂର ହେବ ।

ବର୍ତ୍ତମାନ ଜଳ-ସ୍ଥଳ-ସମନ୍ବିତ ଜଗତକୁ କଳନା କରିବା ପାଇଁ କେତେ ପ୍ରତିଭାଶାଳୀ ବ୍ୟକ୍ତି ନାନାପ୍ରକାର ଯନ୍ତ୍ର ଓ ଯାନ ସାହାଯ୍ୟରେ ଲାଗିଲେହେଁ କଳନା ହୋଇପାରୁ ନାହିଁ । କିନ୍ତୁ ଆମ୍ଭମାନଙ୍କର ପୂର୍ବ-ପୁରୁଷମାନେ ଏହି ଜଗତ ସହ ସପ୍ତ ସ୍ୱର୍ଗ ଓ ସପ୍ତ ପାତାଳ, ଧ୍ରୁବଲୋକ ଏବଂ ବ୍ରହ୍ମଲୋକ ପ୍ରଭୃତି ସମସ୍ତ ବ୍ରହ୍ମାଣ୍ଡକୁ ଗତି କରିବା ଇତ୍ୟାଦି ଇନ୍ଦ୍ରିୟ-ଶକ୍ତି ବଳରେ ନିର୍ଣ୍ଣୟ କରିଥିଲେ । ମଧ୍ୟ ଏହାପରି ପଞ୍ଚାଶକୋଟି ବ୍ରହ୍ମାଣ୍ଡ ଥିବାର ନିରୂପଣ କରିଛନ୍ତି । ଏତଦ୍‌ବ୍ୟତୀତ ଅଶେଷ ବ୍ରହ୍ମାଣ୍ଡ ଥିବାର ସୂଚି ଦେଇଛନ୍ତି । ବର୍ତ୍ତମାନ ଜଡ଼ବିଜ୍ଞାନାତ୍ମକ ଅଣୁବିକ୍ଷଣ, ଦୂରବିକ୍ଷଣ, ଟେଲିଗ୍ରାଫ, ଟେଲିଫୋନ୍, ଫଟୋଯନ୍ତ୍ର ଅତି ବିପଦ୍‌ଜନକ ରେଲ୍, ଜାହାଜ, ଉଡ଼ାଜାହାଜ, ବୁଡ଼ାଜାହାଜ, ମଟର, ଇଞ୍ଜିନ ପ୍ରଭୃତିଦ୍ୱାରା ଯେ ସବୁ କାର୍ଯ୍ୟ ସାଧନ ହେଉଛି, ହିନ୍ଦୁମାନେ ଏହାଠାରୁ ଅତି ସୁବିଧାଜନକ ନିରାପଦ ବୋଇତ, ଆକାଶରଥ, ପୁଷ୍ପକଯାନ, ମନୋଯାନ ଏବଂ ନିଜ ସ୍ଥୂଳ-ଶରୀର ଓ ଚତୁର୍ଦ୍ଦଶ-ଦେବସତ୍ତାତ୍ମକ ଚତୁର୍ଦ୍ଦଶ ଇନ୍ଦ୍ରିୟ ବଳରେ ଏହାଠାରୁ ଅତି ଉତ୍କୃଷ୍ଟ କାର୍ଯ୍ୟ ଅଳ୍ପାୟାସରେ ଓ ଅନାୟାସରେ ଏବଂ ଅତି ବିଚକ୍ଷଣ ଭାବରେ ସାଧନ କରୁଥିଲେ । ପ୍ରକୃତିର ନିୟମାନୁଯାୟୀ ଆଳସ୍ୟ ଓ ଷଡ୍‌ରିପୁ ବଶବର୍ତ୍ତୀ ହୋଇ ତଦ୍‌ବଂଶୀୟ ଆମ୍ଭେମାନେ ବାମ୍ଭୁଡ଼ି କାମୁଡ଼ି ହୋଇ ଏଣେ ତେଣେ ମୁଣ୍ଡିଆ ମାରୁଥାଉଁ । "ହା ହତୋଽସ୍ମି" । 'ନିର୍ଜୀବ-ବାଦ୍ୟ ତେଣି ଭାବରେ ଥିବା ଛବିକି ଦେଖିବା ଚମକ ପରି' ଭାରତର ପୂର୍ବ-ଗୌରବ ଜଡ଼ବିଜ୍ଞାନାତ୍ମକ ଦେବାଳୟାଦିର ଅଦ୍ଭୁତ କୌଶଳକୁ ପ୍ରତ୍ୟକ୍ଷ ଦେଖି ଓ ଇତିହାସରୁ ବିଗତ-ଉନ୍ନତିକି ସ୍ମରଣ କରି ବିଦେଶୀ-ଶାସକ ପୂର୍ବ ସନାତନ-ଧର୍ମ କ୍ରିୟାକୁ କଠୋରତାଦ୍ୱାରା ଭ୍ରଷ୍ଟ କରାଉଥିଲେହେଁ, ତଦ୍‌ଭୟ ହେତୁ ଭାରତୀୟଙ୍କୁ ସମୁଚିତ କ୍ଷମତା ଦାନରେ କୁଣ୍ଠିତ ହୋଇ ଜାଗ୍ରତ ଅଛନ୍ତି । ତଦନ୍ତର୍ଗତ

ଉତ୍କଳ ସର୍ବପ୍ରଧାନ ଥିବା ମାହାତ୍ମ୍ୟକୁ ପ୍ରତ୍ୟକ୍ଷ କରି ଓ ବିଗତ ମୁସଲମାନ ଶାସକଙ୍କ ଜୟଚେଷ୍ଟା ବିଫଳର ଅଭ୍ୟାସ ପାଇଁ ଖଣ୍ଡ ଖଣ୍ଡ କରି ଏଣେ ତେଣେ ଯୋଡ଼ିଦେଇଥିଲେହେଁ ବର୍ତ୍ତମାନ ସୁଦ୍ଧା ଏକତ୍ର କରୁ ନାହାନ୍ତି ବା ସବିଶେଷ ସମୁଚିତ ସାହାଯ୍ୟ ଦାନରୁ ବଞ୍ଚିତ କରୁଛନ୍ତି ।

ଆଜିକାଲି ଜଗତ ଅତି ଅଶାନ୍ତି-ଅନଳରେ ସନ୍ତପ୍ତ ଓ ହୁଲ୍‌ସ୍ଥୂଲ୍; କିନ୍ତୁ ସନାତନଧର୍ମ ଜାଗ୍ରତ ଥିଲେ ଧର୍ମନେତା ବ୍ରାହ୍ମଣମାନେ ନିତ୍ୟ-ନୈମିତ୍ତିକାଦି କର୍ମାନ୍ତେ ଯେଉଁ ସ୍ୱସ୍ତିବାକ୍ୟ ବୋଲିଥାନ୍ତି, ତାହା ଯଦି ସଦାଗ୍ରହରତ ହୋଇ ସମସ୍ତେ ପାଠ କରୁଥାନ୍ତେ, ତେବେ ନାନାବିଧ ରୋଗ, ଅନାଟନ, ଦୁର୍ଭିକ୍ଷ, ବିପ୍ଳବ, ବିଭ୍ରାଟ ଓ ରାଜବିଦ୍ରୋହ ଘଟୁ ନ ଥାନ୍ତା; ଯଥା—

"ସ୍ୱସ୍ତିଃ ପ୍ରଜାଭ୍ୟଃ ପରିପାଳୟନ୍ତୁ
ନ୍ୟାଯ୍ୟେନମାର୍ଗେଣ ମହୀଂ ମହୀଶାଃ ।
ଗୋବ୍ରାହ୍ମଣେଭ୍ୟଃ ଶୁଭମସ୍ତୁ ନିତ୍ୟଂ
ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ ॥"

"କାଳେ ବର୍ଷନ୍ତୁ ପର୍ଯ୍ୟନ୍ୟଂ ପୃଥିବୀ ଶସ୍ୟଶାଳିନୀ ।
ଦେଶୋଽୟଂ କ୍ଷୋଭରହିତୋ ବ୍ରାହ୍ମଣାଃ ସନ୍ତୁ ନିର୍ଭୟାଃ ॥"

ସେ ଯାହାହେଉ ଇଂରେଜମାନେ ଭାରତୀୟଙ୍କୁ ସମୁଚିତ କ୍ଷମତା ନ ଦେବା ଓ ସନାତନ ଧର୍ମ ଏବଂ ସଂସ୍କୃତ-ଭାଷାକୁ ଜାଗ୍ରତ ପରିବର୍ତ୍ତେ ବ୍ୟତିକ୍ରମ କରିବା ହେତୁ ସମୟକ୍ରମେ ପସ୍ତେଇବେ । ବ୍ରିଟିଶ-ସର୍କାର ଯେପରି କଳକୌଶଳୀ ଓ ବଳଶାଳୀ ତହିଁରେ ଭାରତୀୟଙ୍କ ଦୈହିକବଳ ଏବଂ ଦୈବବଳ ଯୋଗ ହୋଇଥିଲେ କୌଣସି ରାଷ୍ଟ୍ରବିପ୍ଳବବେଳେ ପ୍ରତିକାର ଲୋଡ଼ିବାକୁ ପଡ଼ନ୍ତା ନାହିଁ । ସମୟକ୍ରମେ ନଈରେ ହଜାଇ ପୋଖରୀରେ ଖୋଜିବା ଘଟିପାରେ ।

ଯୁଗାନୁସାରେ ଅବିଦ୍ୟା ପ୍ରବଳରୁ ପୁଣ୍ୟର ଶିଥିଳତା ଓ ପାପର ବୃଦ୍ଧି ହୋଇ ବର୍ଣ୍ଣାଶ୍ରମଧର୍ମର କ୍ରିୟାକଳାପ ଶିଥିଳ ହେଲା; ସାଧାରଣ ଲୋକେ ଅଜ୍ଞ ହେଲେ । କାମର ବଶବର୍ତ୍ତୀ ହେବାରୁ ଗୁଡ଼ାଏ ବର୍ଣ୍ଣସଙ୍କର ସୃଷ୍ଟି ହେଲେ । ଉତ୍କୃଷ୍ଟ ବର୍ଣ୍ଣମାନେ ଜ୍ଞାନାତ୍ମକ ବିଦ୍ୟାରେ ହେୟଜ୍ଞାନ କରି ସନାତନଧର୍ମ-ବିରୋଧୀ କୂଟନୀତି ରାଜକାର୍ଯ୍ୟ ପରିଚାଳନାତ୍ମକ ବା ବିଧର୍ମାତ୍ମକ ଅର୍ଥକରୀ ଶିକ୍ଷାରେ ମାତିଲେ । ବିଶେଷତଃ ସନାତନ ଧର୍ମନେତା ଅଧିକାଂଶ ବ୍ରାହ୍ମଣବଂଶୀୟ ଲଘୁଶଙ୍କା ପ୍ରଭୃତିରେ କର୍ଣ୍ଣୋ-ପବୀତୀ ହେଲେହେଁ ମୃତ୍ତିକାଦିଦ୍ୱାରା ସବିଧି-ଶୌଚୀ ହେଲେ ନାହିଁ । କେହି ସଦୁପଦେଶ ଦେଲେ ଅନ୍ୟାନ୍ୟ ବିପଥଗାମୀଙ୍କ ଉଦାହରଣ ଦେବା ( ସେଥି ମଧ୍ୟରେ ଯେ ସେ ଜଣେ ନ ଭାବି ) ବାହାଦୁରୀ ଓ ବିତଣ୍ଡାଦ୍ୱାରା ହେୟଜ୍ଞାନ କରିବା, ଚିତା, ଚଳୁ ରହିତ, ନଖ ରଖିବା, ଯଜ୍ଞୋପବୀତ ତ୍ୟାଗ ବା ଲୁଗ୍ରଇବା, ଶିଖା ବନ୍ଧନ, ନୀବୀବନ୍ଧନ ତ ନଦାରଦ । ଦିନେ ସନ୍ଧ୍ୟା ନ କଲେ ବ୍ରହ୍ମତ୍ୱ ହାନି ହୋଇଥାଏ । ଅଶୌଚରେ ଅନ୍ୟାନ୍ୟ ନିତ୍ୟକର୍ମାଦି ସବୁ ବନ୍ଦ ହେଉଥିଲେହେଁ ଗାୟତ୍ରୀଦ୍ୱାରା ସୂର୍ଯ୍ୟାଞ୍ଜଳି ବ୍ୟତୀତ ଅନ୍ୟାନ୍ୟ ଜଳ-ଦାନ ବିନା ସନ୍ଧ୍ୟା ସ୍ମରଣ ହୋଇଥାଏ । "ଅହରହ ସନ୍ଧ୍ୟାମୁପାସିତ ।" ସାମାନ୍ୟକୁ ଯେ ହେୟଜ୍ଞାନ କରୁଛନ୍ତି, ସେ କଠିନ ସାଧନ କରିପାରନ୍ତି କି ?

"ବିପ୍ରୋ ବୃକ୍ଷ ମୂଳତସ୍ତସ୍ୟ ସନ୍ଧ୍ୟା
ବେଦଃ ଶାଖା ଧର୍ମକର୍ମାଣି ପତ୍ରଂ ।
ତସ୍ମାତ୍ ମୂଳଂ ଯତ୍ନତୋ ରକ୍ଷଣୀୟଂ
ମୂଲେ ଛିନ୍ନେ ନୈବ ପତ୍ରଂ ନ ଶାଖା ॥"

ବିଶେଷତଃ ସଦ୍‌ଗୁରୁଠାରୁ ସମୁଚିତ ଶିକ୍ଷା-ଦୀକ୍ଷା, ସଦାଚାର, ନିତ୍ୟ ଅର୍ଥାତ୍ 'ନିତ୍ୟାନି ଅକରଣେ ପ୍ରତ୍ୟବାୟ

ସାଧନାରେ ସନ୍ଧ୍ୟା ବନ୍ଦନାଦୀନି’ (ବେଦାନ୍ତସାର) ନୈମିତ୍ତିକ ଆହ୍ନିକ ପଞ୍ଚୈଷ୍ଟମନ୍ତ୍ର ବନ୍ଦନାଦି ସତ୍କର୍ମ ଓ ଆଚରଣଦ୍ୱାରା ସତ୍ପ୍ରଥାବଲମ୍ବନ କଲେ ନାହିଁ । ତୁଚ୍ଛ ଶୂଦ୍ର ପୌରହିତ୍ୟ ମଧ୍ୟ କଲେ । (ହିମାଳୟସ୍ଥ ଧର୍ମାରଣ୍ୟସ୍ଥ ନୈଷ୍ଠିକ ବ୍ରାହ୍ମଣ ଶଦ୍ର-ପୌରହିତ୍ୟ କରି ଜନ୍ମାନ୍ତରରେ ଅଧୋଗତ ଲଭିବା ମହାଭାରତ ଅନୁଶାସନ ପର୍ବ ସପ୍ତମ ଅଧ୍ୟାୟ ଦ୍ରଷ୍ଟବ୍ୟ) । ଶୂଦ୍ରାନ୍ନ, ଶୂଦ୍ର-ଗୋଷ୍ଠିରେ ଭୋଜନ କଲେ, ତାହା ଯେ ନିତାନ୍ତ ଅମଙ୍ଗଳକର ତା ଭାବିଲେ ନାହିଁ ।

“ଶୂଦ୍ରାନ୍ନଂ ଶୂଦ୍ର ସମ୍ପର୍କଂ ଶୂଦ୍ରଂ ଦୃଷ୍ଟ୍ୱା ଚ ଭୋଜନମ୍ ।
ସପ୍ତଜନ୍ମ ଭବେତ୍ ଶୂଦ୍ରଃ ଜନ୍ମେ ଜନ୍ମେ ଦରିଦ୍ରତା ॥”

ସଦ୍‌ବର୍ଣ୍ଣମାନଙ୍କ ପୌରହିତ୍ୟ ଓ ଅନ୍ୟାନ୍ୟ ସଦନୁଷ୍ଠାନ ମଧ୍ୟ ସବିଧିରେ ନ କରିବାରୁ ସଂକଳ୍ପିତ ଫଳର ବ୍ୟତିକ୍ରମ ଘଟନ୍ତେ ସାଧାରଣଙ୍କର ତହିଁରୁ ବିଶ୍ୱାସ ଉଠିଗଲା; ତେଣୁ ନିଜେ ଅବନତ ଓ ଅଧୋଗତ ଲଭିଛନ୍ତି । ଯେଉଁ ବ୍ରାହ୍ମଣ ବଂଶୀୟ-ମାନେ ସଂସ୍କୃତ-ଭାଷା ଅଧ୍ୟୟନ କଲେ, ସେଥି ମଧ୍ୟରୁ ଅଧିକାଂଶ ଶାସ୍ତ୍ରୋକ୍ତ ସବିଧି କର୍ମ ନିଜେ ଆଚରଣ ନ କରି ଜ୍ଞାନ-ମାର୍ଗକୁ ଛାଡ଼ି “ଅହଂମନ୍ୟେ” ବା ଖଳସ୍ୱଭାବ ବିବାଦରେ ମାତି ନିଜର ଉଦର ପୂରଣ ଓ ଜାହ୍ନେଯାପସ୍ଥ-ଚରିତାର୍ଥରେ ମଜ୍ଜିଲେ । କେତେକଙ୍କର ସଦ୍‌ବିଷୟ ଓ ତତ୍ତ୍ୱରେ ପ୍ରବେଶ-ଶକ୍ତି ଥିଲେ ମଧ୍ୟ ଏବଂ କର୍ମଯୋଗାତ୍ମକ ସଦନୁଷ୍ଠାନ ଓ କ୍ରିୟାକଳାପଙ୍କ ସତ୍ତ୍ୱେ ଓ ମାନହାନି ହେବ ଭାବି ସଦାଚରଣ କରୁ ନାହାନ୍ତି ଓ ସଚ୍ଛାସ୍ତ୍ରରେ ହେୟଜ୍ଞାନ କରି ଆଦୌ ଦେଖି ନାହାନ୍ତି । ପୂର୍ବ-ପର ଶାସ୍ତ୍ର ନ ମିଳାଇ ବାକ୍‌ପଟୁତାରେ ସାଧାରଣଙ୍କୁ ଭୁଲାଇ ନିରୀହ ବଶିଷ୍ଟମାନଙ୍କୁ ବିତଣ୍ଡାଦ୍ୱାରା ପରାସ୍ତ କରି ନିଜର ପାଣ୍ଡିତ୍ୟାଭିମାନଦ୍ୱାରା ବାହାଦୁରୀ ବା ଚଟକ ଦେଖାଇ ଅର୍ଥ ପିପାସାରେ ମଜ୍ଜି, କୁକାର୍ଯ୍ୟକୁ

ଲଜ୍ଜା ନ କର, ଶାନ୍ତ ଶିଷ୍ଟମାନଙ୍କୁ ଖାତର ନ କର ପଣ୍ଡିତ ବୋଲାଇ ପରମାର୍ଥ-ଜ୍ଞାନୀ ବୋଲି ପରିଚୟ ଦେବାରେ କୁଣ୍ଠିତ ହେଲେ ନାହିଁ । ଅଜ୍ଞ ଓ ସାଧାରଣ ତାଙ୍କର ଅନୁଗତ ହେବାରୁ କାଳର ଗତିକୁ ଅନୁମାନ କରି ବିଜ୍ଞମାନେ ଚୁପ୍ ହୋଇ ଚଳିଲେ ।

"ଦର୍ଦୁରା ଯତ୍ର ବକ୍ତାରସ୍ତତ୍ରଃ ମୌନୋ ହି କୋକିଳଃ ।"

କେତେକ ବନ, ପର୍ବତ, ଗୁମ୍ଫା ବିଶେଷତଃ ହିମାଳୟ ପର୍ବତକୁ ଆଶ୍ରୟ କରି ଜଗତକୁ ଉନ୍ମୁଖ ହେଲେ ନାହିଁ । ସାଧୁ-ସିଦ୍ଧ ପୁରୁଷଙ୍କ ଅଦର୍ଶନରୁ ଅଧୁନିକ ସର୍ବସାଧାରଣ ଉଦ୍ଧତ ଓ ବ୍ୟତିବ୍ୟସ୍ତ ହୋଇ ଶାନ୍ତି-ସୁଖ ପରିବର୍ତ୍ତରେ ସର୍ବଦା ସନ୍ତପ୍ତାନଳରେ ଜର୍ଜରିତ ହେଉ ନାହାନ୍ତି କି ? କେବେ ହେଲେ କାହାରିଠାରୁ ଶୁଣାଯାଏ କି 'ମୋର କିଛି ଅଭାବ ନାହିଁ; ମୁଁ ଆନନ୍ଦରେ ଓ ଶାନ୍ତିରେ ଚଳୁଛି ।' ଅଧ୍ୟାତ୍ମ ରାମାୟଣ ଅଯୋଧ୍ୟା କାଣ୍ଡ ୨ୟ ସର୍ଗରେ ବଶିଷ୍ଠ ଶ୍ରୀ ରାମଚନ୍ଦ୍ରଙ୍କୁ କହିଥିଲେ, "ପୌରହିତ୍ୟ କର୍ମ ଦୁଷ୍ୟ, ଗର୍ହିତ୍ୟ ଓ ଅଗ୍ରାହ୍ୟ ହେଲେହେଁ ପୂର୍ବେ ବ୍ରହ୍ମାଙ୍କଠାରୁ ଶୁଣିଥିଲି 'ପରମାତ୍ମା ରାମ ଇକ୍ଷ୍ୱାକୁ-ବଂଶରେ ଜନ୍ମ ହେବେ' । ଅତଃ ହେ ରାମ ! ତୁମ୍ଭ ସମ୍ବନ୍ଧାଶାରେ ଇକ୍ଷ୍ୱାକୁ-କୁଳରେ ମୁଁ ପୌରହିତ୍ୟ ସ୍ୱୀକାର କରିଛି ।"

"ପୌରହିତ୍ୟମହଂ ଜାନେ ବିଗର୍ହ୍ୟଂ ଦୁଷ୍ୟଜୀବନଂ
ଇକ୍ଷ୍ୱାକୂଣାଂ କୁଲେ ରାମଃ ପରମାତ୍ମା ଜନିଷ୍ୟତି ।
ଇତି ଜ୍ଞାନଂ ମୟା ପୂର୍ବଂ ବ୍ରହ୍ମଣା କଥିତଂ ପୁରା
ତତୋଽହମାଶୟା ରାମ ତବ ସମ୍ବନ୍ଧକାଂକ୍ଷୟା ॥
ଅସ୍ୱତାସି ମଳଂ ଭୁଂକ୍ତେ ଅଜପୀ ପୂଜଶୋଣିତଂ ।
ଅହୁତ୍ୱା ଚ କ୍ରମୀନ୍ ଭୁଂକ୍ତେ ଅଦତ୍ୱା ବିଷଭୋଜନଂ ॥"

"ଶାସ୍ତ୍ରାନ୍ୟଧୀତ୍ୟାଽପି ଭବନ୍ତି ମୂର୍ଖା
ଯସ୍ତୁ କ୍ରିୟାବାନ୍ ପୁରୁଷଃ ସ ବିଦ୍ୱାନ୍ ।
ସୁଚିନ୍ତିତଂ ଚୌଷଧମାତୁରାଣାଂ
ନ ନାମମାତ୍ରେଣ କରୋତ୍ୟରୋଗଂ ॥"

"ବିଦ୍ୟା ବିବାଦାୟ ଧନଂ ମଦାୟ
ଶକ୍ତିଃ ପରେଷାଂ ପରିପୀଡ଼ନାୟ ।
ଖଳସ୍ୟ, ସାଧୋର୍ବିପରୀତମେତତ୍
ଜ୍ଞାନାୟ ଦାନାୟ ଚ ରକ୍ଷଣାୟ ॥"

"ଅଧିଗତପରମାର୍ଥାନ୍ ପଣ୍ଡିତାନ୍ ମାମବସ୍ଥା
ତୃଣମିବ ଲଘୁଲକ୍ଷ୍ମୀର୍ନୈବ ତାନ୍ ସଂରୁଣଦ୍ଧି ॥"

"ଅଭିନବମଦରେଖାଶ୍ୟାମଗଣ୍ଡସ୍ଥଲାନାଂ ।
ନ ଭବତି ବିଷତନ୍ତୁର୍ବାରଣଂ ବାରଣାନାଂ ॥"

ନୂତନ ମଦ୍‌ଜଳସ୍ରାବୀ ମତ୍ତହସ୍ତିକି ପଦ୍ମନାଡ଼ ଯେପରି ଆବଦ୍ଧ କରି ନ ପାରେ, ସେହିପରି ପରମାର୍ଥବିତ୍ ବିଦ୍ୱାନ୍ ଜ୍ଞାନୀ ବ୍ୟକ୍ତିକି ଲକ୍ଷ୍ମୀ ବା ସମ୍ପତ୍ତି ମୋହିତ କରିପାରେ ନାହିଁ । ଅତଏବ ସନାତନଧର୍ମାତ୍ମକ ଜଡ଼ବିଜ୍ଞାନ ଏବଂ ଆଧ୍ୟାତ୍ମିକ ବିଜ୍ଞାନ ଆଲୋଚନା ଓ ଅନୁଶୀଳନ ପ୍ରତି ହେୟ ଜ୍ଞାନ କରି ବିଦେଶୀୟ କୁହୁକରେ ମୋହିତ ହୋଇ ଅନୁକରଣ କରିବା ମହତ୍ ଭ୍ରମ ନୁହେଁ କି ?

## ପୂର୍ବ-ପର ତୁଳନା ଓ ସନାତନଧର୍ମର ମାହାତ୍ମ୍ୟ

ପୁରାଣ-ବର୍ଣ୍ଣିତ କୁବେର ପ୍ରଭୃତିଙ୍କର ପୁଷ୍ପକବିମାନ, ନାରଦ ପ୍ରଭୃତିଙ୍କର ମନୋଯାନ ଗମନାଦି, ଶାଲ୍ୱ ପ୍ରଭୃତିଙ୍କର ଆକାଶଗ ଯନ୍ତ୍ରରଥ, ଅର୍ଜ୍ଜୁନ ପ୍ରଭୃତିଙ୍କର ମୋହାତ୍ମକ ଶରସନ୍ଧାନ, ଏକ ଏକ ଶରରେ ଶତ ଶତ ସହସ୍ର ସହସ୍ର ଧ୍ୱଂସ, ଶରଦ୍ୱାରା ଚତୁର୍ଦ୍ଦଶ-ଭୁବନ ଓ ଦଶ ଦିଗପାଳଙ୍କ ପୁର ଅନୁସନ୍ଧାନ,

ଶୁକ୍ର, ବୃହସ୍ପତିଙ୍କର କ୍ଷତାରୋଗ୍ୟ ଓ ମୃତ-ଜୀବିତ, ସ୍ମରଣମାତ୍ରେ ବହୁଦୂର ବାର୍ତ୍ତାପ୍ରେଷ ଓ ସ୍ମରଣ, କଳିଯଗର ଶେଷ ଶାସନାପେକ୍ଷାରେ ଦେବାପି ପ୍ରଭୃତିଙ୍କର ଇଚ୍ଛାଧୀନ ଜୀବତ, ଶରଦ୍ୱାରା ବରୁଣ-ପୁରରୁ ଜଳାହରଣ, ଏହାପର ନାନା ଅଦ୍ଭୁତ କ୍ଷମତା ଓ ଚାନ୍ଦ୍ରାୟଣାଦି କଠିନ ବ୍ରତ ଓ ଅନଶନ କ୍ରିୟା। ନିକଟାତୀତ ପୁରୀ ଅର୍ଦ୍ଧାଶନୀ-ପୀଠସ୍ଥ ଯୋଗସିଦ୍ଧ ବ୍ରହ୍ମଚାରୀ ଓ ବଡ଼ଛତା ମହନ୍ତ ରଘୁବର ଦାସ, ଦୁଃଖୀଶ୍ୟାମ ବାବା, ଓଡ଼ିଆ ଜଗନ୍ନାଥ-ଦାସ, କବିର, ଭାସ୍କରାନନ୍ଦ ସରସ୍ୱତୀ, ଶ୍ୟାମାନନ୍ଦ, ତୈଲଙ୍ଗ ସ୍ୱାମୀ ପ୍ରଭୃତି ବହୁ ସଂଖ୍ୟକ ଅଦ୍ଭୁତ କ୍ଷମତାଶାଳୀ ଥିଲେ। କଳ୍ପଜୀବୀ ସୌଭରୀ, ଚ୍ୟବନ ମହର୍ଷି ଏବଂ ଯଯାତି ପ୍ରଭୃତିଙ୍କର ଅବସ୍ଥା ପରିବର୍ତ୍ତନ, ଶାନ୍ତନୁଙ୍କର କର-ସ୍ପର୍ଶଦ୍ୱାରା ବୃଦ୍ଧ ଯୁବାରେ ପରିଣତ, ବିପୁଳ ମହର୍ଷି ଓ ଶଙ୍କରାଚାର୍ଯ୍ୟ ପ୍ରଭୃତିଙ୍କ ପରକାୟ-ପ୍ରବେଶ ଓ ଅଭିଳାଷ ସିଦ୍ଧି ଓ ବାକ୍‌ସିଦ୍ଧତା, ରାବଣ-ହନୁମାନ-ମହୀରାବଣ ପ୍ରଭୃତିଙ୍କର ପର୍ବତୋତ୍ପାଟନାଦି ପୁରାଣ-ବର୍ଣ୍ଣିତ ଅଦ୍ଭୁତ କ୍ଷମତାକୁ ବିଧର୍ମୀମାନେ ଏବଂ ଆମ୍ଭ ହିନ୍ଦୁ ବଂଶୀୟ କେତେକ ବୁଦ୍ଧିବନ୍ତମାନେ ଗୁଲ୍‌ଖିଆ ଗପ ବୋଲି ଉପହାସ କରୁଥିଲେ। ଜର୍ମାନୀ-ଯୁଦ୍ଧ ପୂର୍ବରୁ ଆମ୍ଭ ଦେଶରୁ କେତେକ ଜଡ଼ବିଜ୍ଞାନ-ତତ୍ତ୍ୱ ଯାଇ ତନ୍ମଧ୍ୟରୁ କେତେକ ଜର୍ମାନୀ-ଯୁଦ୍ଧରେ ଓ ତତ୍ପରେ ଅନ୍ୟାନ୍ୟ କେତେକ ଦେଶରେ ତାହାର ବ୍ୟତିକ୍ରମାତ୍ମକ ଆଭାଷ ମିଳୁଛି। ଯଥା—ଯନ୍ତ୍ରାତ୍ମକ ଟେଲିଫୋନରେ ଦୂର ଦେଶ ବାକ୍ୟ ଶ୍ରବଣ, କଳଗାଡ଼ୀ, ଅନାବୃତ୍ତ ଉଡ଼ାଜାହାଜ, ବୋମା, ବିଷାକ୍ତବାଷ୍ପ ପ୍ରଭୃତି କଦର୍ଯ୍ୟ କାଣ୍ଡ କ୍ରମେ କ୍ରମେ ଅନ୍ୟାନ୍ୟ ଦେଶରେ ଖେଳୁଛି।

ସେ ଯାହାହେଉ ସନାତନ ଧର୍ମାତ୍ମକ ଅସଂଖ୍ୟ ଓ ଆଶ୍ଚର୍ଯ୍ୟ କ୍ରିୟା ପରୋକ୍ଷରେ ସାଧିତ ହେଉଥିଲେହେଁ ଏବେ ମାଳ୍ୟବ୍ୟଙ୍କ ଜୀର୍ଣ୍ଣାବସ୍ଥା ପରିବର୍ତ୍ତନ ଓ ତାଙ୍କ ଗୁରୁଙ୍କ ମାହାତ୍ମ୍ୟ, ସାଧକ

ଗାର୍ଗୀଙ୍କ କଣ୍ଟୁ ଦନ ଅନଶନାଦ ସାମାନ୍ୟ କେତେକର ଅଭାଷ ପାଇ ପୁରାଣବର୍ଣ୍ଣିତ କେତେକ ବଷୟ ପ୍ରତ୍ତ କେତେକ ଲୋକ ତୃଣୀ ହୋଉ ମୃଣ୍ଡ ଟୁଙ୍ଗାରୁଛନ୍ତି । ଆଉ ଜଗଣଜ୍ଞାନାତ୍ମକ ଯେ ସବୁ ବଷୟ ଏ ଦେଶରୁ ଯାଇ ନାହିଁ ବା ପ୍ରକାଶ ପାଇ ନାହିଁ, ତାହା ମାନୁଛୁ କଏସେ ? ଆଉ ବ୍ୟାସ ଅଶ୍ୱତ୍ଥାମା ପ୍ରଭୃତ ଅସଂଖ୍ୟ କଳ୍ପଜୀବୀ ଭୂ-ମଧ୍ୟରେ ପାହାଡ଼, ପର୍ବତ, ଗୁମ୍ଫା ଆଶ୍ରୟ କରି ଅଲକ୍ଷିତ ଭାବରେ ଅଛନ୍ତି ଓ ଗୁପ୍ତରେ ବଚରଣ କରୁଛନ୍ତି, ତାହା ଜାଣିବା ସହଜ ନୁହେ । ଅତୀତ ଯୁଗ-ମାନଙ୍କରେ ସନାତନ ଧର୍ମର ସମ୍ପୂର୍ଣ୍ଣ ଜାଗ୍ରତ ହେତୁ ପ୍ରଥମରେ ସଦ୍‌ବର୍ଣ୍ଣ ସମସ୍ତେ ସାଧକ ଥିଲେ, କ୍ରମେ କ୍ରମେ ଶିଥିଳ ହୋଇ ଆସୁଥିଲେହେଁ ବର୍ତ୍ତମାନ ଅଧିକାଂଶ ଆଧୁନକ-ଶିକ୍ଷିତ କୃଷ୍ଟି-ନୀତର ବଶବର୍ତ୍ତୀ ହୋଇ ମୋହ ବଶରେ ସେ ବଧିଙ୍କ ସମୂଳେ ଧ୍ୱଂସ କରିବା ପାଇଁ ପ୍ରାଣପ୍ରାୟଶ୍ଚିତ୍ତ ହୋଇ ମଜ୍ଜିଛନ୍ତି । ଯଦ୍ଦ୍ୱାରା ଭାରତୀୟମାନେ ମ୍ଳେଚ୍ଛ ବନିପାରନ୍ତି; ଯାହା କି ଅତ ଉତ୍କୃଷ୍ଟ ଓ ଧ୍ୱଂସର ପୂର୍ବାବସ୍ଥା, ଏଥିରେ ଲେଶ ମାତ୍ର ସନ୍ଦେହ ନାହିଁ । ଶେଷଫଳ ଏହି ହେବ ଯେ, ସନାତନ ଧର୍ମକ୍ରିୟା ଲୋପ ପ୍ରାପ୍ତ ହେବ, ଆଉ ବଦେଶୀ-ବପ୍ଳବାତ୍ମକ ଉନ୍ନତ କଦାଚ ହୋଇପାରିବ ନାହିଁ । ସୁତରାଂ "ଅତୋ ଭ୍ରଷ୍ଟସ୍ତତୋ ଭ୍ରଷ୍ଟଃ" ଅତଏବ ସାବଧାନ ସାବଧାନ ! ଶୁଣା ଅଛୁ ପୂର୍ବେ ସମ୍ପ୍ରଦାୟଯୁକ୍ତ ଯାଚକମାନେ ଯଥୋପଯୁକ୍ତ ଗୃହସ୍ଥାଶ୍ରମୀମାନଙ୍କ-ଠାରୁ ସମୁଚତ ଦ୍ରବ୍ୟାଦ ଯାଚଜ୍ଞା କରିବା ନମିତ୍ତ ପ୍ରତ୍ୟେକ ଗୃହୀମାନଙ୍କ ବାହାର ଦ୍ୱାରଦେଶରେ ନଜ ନଜ ଜାତଗତ ସନ୍ତକ ଚହ୍ନ ରହୁଥିଲା । ପ୍ରାର୍ଥୀମାନେ ତାହା ଦେଖି ଉପଯୁକ୍ତ ପ୍ରାର୍ଥନା କରୁଥିଲେ ବା କରୁ ନ ଥିଲେ । ପୂର୍ବ କାଳ ଧର୍ମ ଜାଗ୍ରତକୁ ଧନ୍ୟ ! ତତଃ ସମସ୍ତ ହିନ୍ଦୁ ପବତ୍ର ଓ ଯଥୋପଯୁକ୍ତାନ୍ତଃ-କରଣ ଏବଂ ସବଳକାୟ ଥିଲେ । ଯତଃ ଜଗତରେ ଶୀର୍ଷସ୍ଥାନ

ଅଧିକାର କରିଥିଲେ । ବର୍ତ୍ତମାନ କାଶୀକ୍ଷେତ୍ର ପ୍ରଭୃତି କେତେକ ବଶିଷ୍ଟ-ପବିତ୍ର ସ୍ଥାନରେ କେତେକ ସନ୍ନ୍ୟାସୀ ସେହିପରି ଚଳିଆସନ୍ତି । ସେ ଯାହାହେଉ ବର୍ତ୍ତମାନ ସଂସର୍ଗ ଦୋଷରେ କେତେକ ବ୍ୟତିକ୍ରମ ଘଟୁଥିଲେହେଁ ଭାରତୀୟ ମାରବାଡ଼ୀ ପ୍ରଭୃତି କେତେକ ହିନ୍ଦୁ ନିଜ ନିଜ ଭିତରେ ସହାନୁଭୂତି ଓ ଧର୍ମଭୀରୁ ହେତୁ ସର୍କାର ବା ଯେ କୌଣସି ବିଭାଗ-ଗୋଲମିଲ ତେଡେ ଆଶ୍ରୟ ନ କରି ଅନ୍ୟାନ୍ୟ ଦେଶୀୟଙ୍କ ସହ ଯଥୋପଯୁକ୍ତ ସମ୍ପର୍କ ରଖି ଭାରତର ସର୍ବତ୍ର ବେପାର-ବାଣିଜ୍ୟଦ୍ୱାରା ଧନ-କୁବେର ବନି ନିଜେ ସୁଖ-ସ୍ୱଚ୍ଛନ୍ଦରେ ଚଳି, ଉଦ୍‌ବୃତ୍ତ ଧନକୁ ଧର୍ମକାର୍ଯ୍ୟ ଓ ତତ୍ସମ୍ବନ୍ଧୀୟ ସାଧାରଣ ହିତକର କାର୍ଯ୍ୟରେ ଅଧିକାଂଶ ବ୍ୟୟ କରିଥାନ୍ତି । ସାଧନା ଓ ଅମିଷାଦ୍ୟ ଅଶନ ବ୍ୟତୀତ ପ୍ରାୟ ସବିଶେଷ ବଳଶାଳୀ ପରି ଅନୁମାନ ହୁଅନ୍ତି ।

---

## ଅବତାର ଓ ସାମ୍ପ୍ରଦାୟିକ ଭାବ, ସ୍ୱାଧୀନତା ନଷ୍ଟ

"ଏକମେବାଦ୍ୱିତୀୟଂ" ପରଂବ୍ରହ୍ମ ଗୁଣାତ୍ମକ-ଲୀଳା ସମ୍ପାଦନାର୍ଥ ନାନା ଦେବ-ଦେବୀରୂପେ ଅବତୀର୍ଣ୍ଣ ହେଲେହେଁ ପ୍ରଧାନତଃ ସୃଷ୍ଟି ସୃଷ୍ଟି-ପାଳନ-ସଂହାର ସକାଶେ ରଜଃ-ସତ୍ତ୍ୱ-ତମୋଗୁଣାତ୍ମକ ବ୍ରହ୍ମା-ବିଷ୍ଣୁ-ଶିବ ତ୍ରିରୂପ ଧାରଣ କରିଥାନ୍ତି । ତନ୍ମଧ୍ୟରେ ବିଷ୍ଣୁ ସୃଷ୍ଟିର ବ୍ୟତିକ୍ରମ ନିବାରଣାର୍ଥ ଯଥା-ସମୟରେ ଶରୀର ଧାରଣଦ୍ୱାରା ସୁଶାସିତ କରିଥାନ୍ତି । ବିଶେଷତଃ ଶନକାଦିଙ୍କ ଅଭିଶାପ ହେତୁ ନିଜର ଦ୍ୱାରପାଳ ଜୟ ବିଜୟଙ୍କ ଉଦ୍ଧାର ପାଇଁ ସବିଶେଷ-ଶରୀର ଧାରଣ କରିଥିଲେ । କୃଷ୍ଣାବତାରରେ ତାହା ପୂର୍ଣ୍ଣ ହେଲା । ସବିଶେଷ କାରଣ ଥିଲେହେଁ ସେହି ସକାଶେ କୃଷ୍ଣଙ୍କୁ ପୂର୍ଣ୍ଣାବତାର ବୋଲି କେତେକ କହିଥାନ୍ତି । ଲୀଳା-ଉପକ୍ରମର ଉପସଂହାର ସକାଶେ ସେହି ପରଂବ୍ରହ୍ମ ଜ୍ଞାନାତ୍ମକ ବୁଦ୍ଧ-ଶରୀର ଧାରଣ କରି ସନାତନ-

ଧର୍ମନିଷ୍ଠମାନଙ୍କୁ ଜ୍ଞାନାଲୋକ ଦେଖାଇଦେଇ, ଦୈତ୍ୟ ଦାନବ-ମାନଙ୍କୁ ମୋହିତ କରି ଶେଷାବତାରୋପଯୋଗୀ କ୍ରିୟା ଅର୍ଥାତ୍ ମ୍ଳେଚ୍ଛସଂହାର ସକାଶେ ସନାତନ ଧର୍ମାତ୍ମକ କର୍ମଯୋଗର ବିଭ୍ରାଟ କରାଇଦେଲେ । "ନମୋ ବୁଦ୍ଧାୟ ଶୁଦ୍ଧାୟ ଦୈତ୍ୟଦାନବ-ମୋହିନେ" । ଭାଃ ୧୦ମଃ ୪୦ଅଃ ୨୨ଶ୍ଳୋକଃ ।

"ଦେବଦ୍ୱିଷାଂ ନିଗମବର୍ତ୍ମନି ନିଷ୍ଠିତାନାଂ
ପୂର୍ଭିର୍ମୟେନ ବିହିତାଭିରଦୃଶ୍ୟତୂର୍ଭିଃ ।
ଲୋକାନ୍ ଘ୍ନତାଂ ମତି ବିମୋହମତିପ୍ରଲୋଭଂ
ବେଶଂ ବିଧାୟ ବହୁଭାଷିତ ଔପଧର୍ମ୍ୟଂ" ।୩୭। ଅ୭ଃ ୨ସ୍କଭାଃ।

ଦେବଦ୍ୱେଷୀ ଅସୁରଗଣ ଉତ୍ତମ-ରୂପେ ବେଦମାର୍ଗ ଅବଲମ୍ବନ କରି ମୟ-ଦାନବ-କୃତ ଦୁର୍ଲକ୍ଷ୍ୟବେଗ-ପୁରଦ୍ୱାରା ଲୋକମାନଙ୍କୁ ବିନାଶ କରନ୍ତେ ଭଗବାନ୍ ସେହି ଅସୁରମାନଙ୍କ ବୁଦ୍ଧିର ଭ୍ରମସାଧନ ଓ ଲୋଭ ଉତ୍ପାଦନାର୍ଥ ବୁଦ୍ଧାବତାର ହୋଇ ପାଷଣ୍ଡ-ବେଶରେ ସେମାନଙ୍କୁ ନାନା ଉପଧର୍ମର ଉପଦେଶ ଦେଲେ । 'ପ୍ରବୁଦ୍ଧ ବୁଦ୍ଧ ଅବତାରେ, ଜ୍ଞାନ ବିସ୍ତାରି ଏ ସଂସାରେ' ( ଭାଃ ) । ସନାତନଧର୍ମର ବିଭ୍ରାଟ ଘଟନ୍ତେ ପରେ "ଶଙ୍କରଃ ଶଙ୍କରଃ ସାକ୍ଷାତ୍" ମହାତ୍ମା ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଦିଗ୍‌ବିଜୟଦ୍ୱାରା ଚାରି ଦିଗର ଚାରି ଧାମରେ ଚାରି ସ୍ୱର୍ଗସ୍ତମ୍ଭ ସ୍ୱରୂପ ଚାରି ଆଶ୍ରମ ସ୍ଥାପନ କରି ନାସ୍ତିକ ଓ ବୌଦ୍ଧମାନଙ୍କୁ ପୁଣ୍ୟଭୂମି ଭାରତବର୍ଷରୁ ନିକାଲି କରିଦେଲେ । ଆଦିଦୈତ୍ୟ ହିରଣାକ୍ଷ୍ୟାଦିଙ୍କ ଅନ୍ୱୟ ଦନୁଜ ରାକ୍ଷସମାନେ ଆର୍ଯ୍ୟାବର୍ତ୍ତରୁ ଅନ୍ୟାନ୍ୟ ଦେଶକୁ ଆଗରୁ ତଡ଼ା ହୋଇ-ଥିଲେହେଁ ସମୟେ ସମୟେ ସେମାନେ ଆସି ବିପ୍ଳବ ଘଟାନ୍ତେ ସନାତନଧର୍ମ-ନିରତ ଆର୍ଯ୍ୟମାନଙ୍କଦ୍ୱାରା ପରାସ୍ତ ହେଉ-ଥିଲେ । ସୁତରାଂ ରାଜାଧିରାଜ-ବଂଶାବତଂଶ ବୁଦ୍ଧଦେବଙ୍କଦ୍ୱାରା ସନାତନଧର୍ମ-ଶାସ୍ତ୍ରୋକ୍ତ କ୍ରିୟାକଳାପର ବିଭ୍ରାଟ ହେତୁ

ଗୃହ-ବିବାଦ-ବଶତଃ ବିଦେଶୀୟମାନେ ବର୍ତ୍ତମାନ ଭାରତରେ ଆଧିପତ୍ୟ କରୁଛନ୍ତି ।

ପୂର୍ବେ ବୁଦ୍ଧଦେବ ପ୍ରଭୃତି ଓ ପରେ ସମ୍ପ୍ରଦାୟକ ନିମ୍ବାର୍କାଚାର୍ଯ୍ୟ, ରାମାନୁଜ, ବଲ୍ଲଭସ୍ୱାମୀ, ମାଧବାଚାର୍ଯ୍ୟ ପ୍ରଭୃତି ପ୍ରତ୍ୟେକେ ଶଙ୍କରାଚାର୍ଯ୍ୟଙ୍କ ପ୍ରଚାରିତ ମତର ଆଂଶିକ ମତ ପ୍ରଚାରଦ୍ୱାରା କେତେକଙ୍କୁ ମତାଇ ସ୍ୱ ସ୍ୱ ମତ ପ୍ରଚାରଦ୍ୱାରା ନିଜ ନିଜର ଠେକ ସ୍ଥାପନ କରିଛନ୍ତି । ଏହାପର ବର୍ଣ୍ଣାଶ୍ରମଧର୍ମର କେତେକ ବ୍ୟତିକ୍ରମ ଘଟି ନାନାପ୍ରକାର ସାମ୍ପ୍ରଦାୟିକ ଭାବ ହେତୁ ସନାତନ-ଧର୍ମରେ ଗୋଳମାଳ ହେବାରୁ ଭାରତର ଅଧୋଗତି ଘଟିଛି, ଅଉ ନାନକ, କବିର, ଜୈନ, ହନୁମାନ ( ଧର୍ମ ପ୍ରଚାରକ ବିଶେଷ ) ଆଉ ବଙ୍ଗ-ଦେଶରେ ବିଶେଷ ସଂଖ୍ୟକ ପାଷଣ୍ଡ ବା ପାମର ହେତୁ ଭକ୍ତାବତାର ଚୈତନ୍ୟ ପ୍ରଭୃତି ସନାତନ ଧର୍ମର କେତେକ ବ୍ୟତିକ୍ରମାତ୍ମକ ଆଂଶିକ-ମତ ପ୍ରଚାର କରି କେତେକଙ୍କଦ୍ୱାରା ସମ୍ମାନିତ ଏବଂ କେତେକଙ୍କଦ୍ୱାରା ଈଶ୍ୱର ବୋଲି ପ୍ରମାଣିତ ହେଉଛନ୍ତି । ପୁଣି କିଛିପୂର୍ବେ ରାଜା ରାମମୋହନ, ରାମକୃଷ୍ଣ ପରମହଂସ ଓ ଚରଣଦାସ ପ୍ରଭୃତି ପ୍ରେମିକ ଏବଂ ତତ୍ତ୍ୱଦର୍ଶୀ ହେତୁ ତାଙ୍କର ମଧ୍ୟ ବହୁ ଉପାସିକ ଓ ଶିଷ୍ୟ ହୋଇ ବୈଷୟିକ-ଉପକାର କରୁଥିଲେହେଁ ସେହି ଶିଷ୍ୟମାନଙ୍କ ମଧ୍ୟରେ ନାନାପ୍ରକାର ମତଭେଦ ଦେଖାଯାଏ । ସାମ୍ପ୍ରଦାୟିକମାନେ ବାତୁଳଭଳି ବୋଲଣ୍ଟାଞ୍ଜିପରି ଦୁଇଭାଗଶାଳୀଙ୍କ ପ୍ରଭାବରେ ଏଣିକି ତେଣିକି ଅଉଜି ଯାଉଥାନ୍ତି । ପରଂପରା ପ୍ରଚଳିତ ହିନ୍ଦୁଧର୍ମ ବିକୃତ ନାମ-କୀର୍ତ୍ତନାଦି ଓ ସଙ୍କୁଡ଼ି ପଦାର୍ଥକୁ ନାମ ମାନିକ ସମର୍ପଣ କରି ଜାତିଭେଦ ନିର୍ବିଶେଷରେ ଛୁଆଁ ଛୁଇଁ ହୋଇ ମହାପ୍ରସାଦାକାରେ ସେବନ କିୟାକୁ ଦେଖି ବର୍ତ୍ତମାନ ବିଧର୍ମୀ-ଶିକ୍ଷିତ ନବ୍ୟସଭ୍ୟମାନେ ଅବ୍ରାହ୍ମଣ-ଚଣ୍ଡାଳ ଏବଂ ମୁସଲମାନାଦି ସମସ୍ତଙ୍କୁ ଏକଜାତି କରିବାପାଇଁ

ଯତ୍ପରୋନାସ୍ତି ଚେଷ୍ଟା ଓ ପ୍ରଚାରରେ ଲାଗିଛନ୍ତି । ଏ ସବୁର ପରିଣାମ ଯାହା ହେବ ଭାବଲେ ଯୋଭ ଆସେ ।

ବର୍ତ୍ତମାନ ଆପଣା ଆପଣା ମଧ୍ୟରେ ମତଭେଦ ଥିଲେହେଁ ପରପ୍ରପୀଡ଼ିତ କଷ୍ଟସହିଷ୍ଣୁ ରାଜନୈତିକ-ଧୁରନ୍ଧର ମହାତ୍ମା ଗାନ୍ଧିଙ୍କୁ ଯେପରି ପ୍ରତିଭାଶାଳୀ ବ୍ୟକ୍ତି ମାନୁଛନ୍ତି ଏବଂ ତାଙ୍କ ଆଜ୍ଞାନୁବର୍ତ୍ତୀ ହୋଇ ଚଳୁଛନ୍ତି, ସମୟକ୍ରମେ ସେ ଯେ ଅତି କନ୍ଦର୍ପ୍ୟ କଷ୍ଟସହିଷ୍ଣୁ ପରପ୍ରପୀଡ଼ିତ ହୋଇଥିଲେହେଁ ସଦୁପଦେଶଦାତା ହେତୁ ଯୀଶୁଖ୍ରୀଷ୍ଟ ଓ ମହମ୍ମଦଙ୍କ ପରି ଈଶ୍ୱର-ପଦବାଚ୍ୟ ହୋଇ ନ ପାରନ୍ତି, ଏଥିରେ ସନ୍ଦେହ କାଣ ? ଆଜିକାଲି କାହାରିଠାରେ ପୂର୍ବସାଧିତ ପ୍ରତିଭା ବା ସବିଶେଷ-ଶକ୍ତି ଥିବାର ଅନୁମାନ କଲେ ତାଙ୍କୁ କେତେକ ଲୋକ ଈଶ୍ୱରାବତାର ବୋଲି ମଧ୍ୟ ମାନିବାର ଦେଖାଯାଏ । ସେ ଯାହାହେଉ ଭାରତରେ ଗୁଣାତ୍ମକ-ଲୀଳା ସମ୍ପାଦନାର୍ଥ ସର୍ବ-ଶକ୍ତିମାନ୍ ଈଶ୍ୱର ଅବତୀର୍ଣ୍ଣ ହୋଇ ଅମାନୁଷିକ ଅତି ଅସାଧ୍ୟ ଓ ଦୁଃସାଧ୍ୟ କାର୍ଯ୍ୟମାନ ଅକ୍ଲେଶରେ ସମ୍ପୂର୍ଣ୍ଣ କରିଛନ୍ତି । "ପୂର୍ଣ୍ଣମଦଂ ପୂର୍ଣ୍ଣମିଦଃ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ । ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ" । ( ପ୍ରଦୀପରୁ ପ୍ରଦୀପ ପରି ) ଆଉ ଧର୍ମ ପ୍ରଚାର ସକାଶେ ଯେତେ ସ୍ୱାତନ୍ତ୍ର୍ୟ ପ୍ରତିଭାଶାଳୀ ମହାତ୍ମାମାନେ ଭାରତରେ ଆବିର୍ଭୂତ ହୋଇଥିଲେ, ତାହାର ଲୌକିକ-ଦୃଷ୍ଟାନ୍ତ ଯଥା—ସେ ପ୍ରତ୍ୟେକ ଗୋଟିଏ ଗୋଟିଏ ଖଳାରେ ଏକ ଏକ ପ୍ରକାର ଶସ୍ୟର ନ୍ୟୂନାଧିକ ଗୋଟିଏ ଗୋଟିଏ ଶସ୍ୟ-ଗଦା ପରି; କିନ୍ତୁ 'ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଗୋଟିଏ ବଡ଼ ଖଳାରେ ସମସ୍ତ ପ୍ରକାର ଶସ୍ୟର ସବିଶେଷ ଗୋଟିଏ ଗୋଟିଏ ଗଦା ସ୍ଥାପନ କରି ସର୍ବୋପାଦେୟ ସମ୍ପୂର୍ଣ୍ଣ ଭାବ ବୃହତ୍ ଗୋଟିଏ ବଡ଼ ଧାନଗଦା ପରି' ସର୍ବ ସଦ୍ଧର୍ମ-ସମନ୍ୱିତ, ବିଶୁଦ୍ଧ, ସ୍ୱଚ୍ଛ ଧର୍ମମତ ସ୍ଥାପନ କରି ପ୍ରଚାର କରିଛନ୍ତି ।

ଅତଏବ ସନାତନଧର୍ମ ଶାସ୍ତ୍ରୋକ୍ତ ଧର୍ମାନଭିଜ୍ଞ କେତେକଙ୍କ ସାମ୍ପ୍ରଦାୟିକ ମତରେ ମାତିବା ଭ୍ରମ ନୁହେ କି ?

---

## ବିକୃତ ଉପାସନା, ଜ୍ଞାନମାର୍ଗାତ୍ମକ ଦ୍ୱିବିଧ ଯୋଗାଭ୍ୟାସ, ସଗୁଣ ଉପାସନା, ମୋକ୍ଷାତ୍ମକ ବିଭିନ୍ନ ସୂକ୍ଷ୍ମସାଧନା, ଆତ୍ମା ବା ବ୍ରହ୍ମ ନିର୍ଣ୍ଣୟ

ଆଜିକାଲି କେତେକ ଅହଂମନ୍ୟେ ନବ୍ୟସଭ୍ୟ 'ଆକାଶ ବା ଗୋଲକାର ବସ୍ତୁ କିମ୍ବା ପରିଧିର ଅଦ୍ୟନ୍ତମଧ୍ୟ ନିରୂପଣ ରହିତ ପରି' ପରଂବ୍ରହ୍ମଙ୍କର ଗୁଣାବତାର ବା ପ୍ରତିଷ୍ଠିତ ବିଗ୍ରହ ବ୍ୟତୀତ ଅକ୍ଷି ବୁଜି ମୁହଁ ଉପରକୁ ଟେକି ଦାମ୍ଭିକ-ଭାବରେ ନିରାକାର ବା ନିର୍ଗୁଣ ପରଂବ୍ରହ୍ମଙ୍କର ବିକୃତାତ୍ମକ କିମ୍ବା ପକ୍ଷାନ୍ତରେ ନାମ-ରୂପ-ଗୁଣବିଶିଷ୍ଟ ସୃଷ୍ଟି-କୌଶଳର ଧନ୍ୟ-ବାଦାତ୍ମକ ଉପରଠାଉରିଆ ଉପାସନା କରିଥାନ୍ତି । କଠିନ ସାଧନା ପ୍ରଥା ବ୍ୟତୀତ ନିର୍ଗୁଣ ପରଂବ୍ରହ୍ମଙ୍କର ଉପାସନା ଯେ ଆଦୌ ହୋଇ ନ ପାରେ, ତାହାର ଗନ୍ଧ ସମ୍ବନ୍ଧ ତାଙ୍କୁ ଜଣା ନାହିଁ । ଚତୁର୍ଦ୍ଦଶ ଇନ୍ଦ୍ରିୟାଧିଷ୍ଠିତ ଚତୁର୍ଦ୍ଦଶ ଦେବସତ୍ତାତ୍ମକ ଯଥା,—ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ ଏକ ହେଲେହେଁ ଚାରି ଅନ୍ତରେନ୍ଦ୍ରିୟ ବ୍ୟତୀତ ମନୁଷ୍ୟର ଏପରି କୌଣସି ଇନ୍ଦ୍ରିୟ ନାହିଁ, ଯଦ୍ଦ୍ୱାରା ନିରାକାର ପରଂବ୍ରହ୍ମଙ୍କର ଧ୍ୟାନ ଧାରଣା ହୋଇପାରେ । "ଅବାଙ୍ମନସଗୋଚରଃ, ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ" । 'ଯାହାଙ୍କୁ ନ ପାଇ ମନ ସହିତ ବଚନ ଫେରିଆସେ' । ଯଥୋପଯୁକ୍ତ କର୍ମେନ୍ଦ୍ରିୟଙ୍କ-ଦ୍ୱାରା ଭଗବଦ୍‌ବିଗ୍ରହଙ୍କର ଯଥୋପଯୁକ୍ତ କର୍ମ ନିଜେ ନ କଲେ ଭଗବାନଙ୍କ ପ୍ରତି ଅଭିଳାଷ ହୃଦୟରେ ଜାତ ହୋଇ ନ ପାରେ । ଜନ୍ମାନ୍ତର ସାଧନାରୁ ଯଦିଚ କାହାର ହୋଇ-ପାରେ ସେ ସାଂସାରିକରେ ଗଣ୍ୟ ନହେ, ଯେପରି 'ଶୁକଦେବ' ।

ପରେ ଜ୍ଞାନେନ୍ଦ୍ରିୟ ଏବଂ ଅନ୍ତରେନ୍ଦ୍ରିୟ ବା ସାଧନାଦ୍ୱାରା ଭଗବାନଙ୍କୁ ଜାଣିବା ଶକ୍ତି ବା ପ୍ରାପ୍ତି ହୋଇଥାଏ । କିନ୍ତୁ ପ୍ରଥମତଃ ନିତ୍ୟ-ନୈମିତ୍ତିକ କର୍ମ ଓ ଯମ-ନିୟମାଦିଦ୍ୱାରା ଶରୀରେନ୍ଦ୍ରିୟାଦି ପବିତ୍ର ବା ଯଥୋପଯୁକ୍ତ ନ ହେଲେ ଏ ସବୁ ବା କୌଣସି ସତ୍କର୍ମ ସାଧନ ହୋଇ ନ ପାରେ । ଅଉ ମଧ୍ୟ ସେହି କର୍ମେନ୍ଦ୍ରିୟଙ୍କଦ୍ୱାରା ଅନ୍ୟାୟ୍ୟ କାର୍ଯ୍ୟ; ଯଥା—ଶାସ୍ତ୍ର ଓ କୌଳିକ-ନିଷିଦ୍ଧ ଖାଦ୍ୟାଶନ, ଅଗମ୍ୟାଗମନ, କୁତ୍ସିତ ସହବାସ, ପରାନିଷ୍ଟ ସାଧନ, କଟୁ କଥନ ପ୍ରଭୃତିଦ୍ୱାରା ପାପଜନକ ଅଧୋଗତି ବା ନର୍କଗତି ହୋଇଥାଏ । ଅନ୍ୟଦ୍ୱାରା ସାଧନ କରାଇଲେ ଉପରୋକ୍ତ ଉଭୟବିଧ କାର୍ଯ୍ୟ ଦେଶ-କାଳ-ପାତ୍ର ନେଇ ଯଥୋପଯୁକ୍ତ ସବିଶେଷ ଫଳପ୍ରାପ୍ତ ହୋଇଥାଏ ।

ମାନବର ତ୍ରି-ଶରୀର ମଧ୍ୟରୁ ପଞ୍ଚଭୂତସମଷ୍ଟି ସ୍ଥୂଳ-ଶରୀର ଅଂଶାନୁସାରେ ସେହି ପଞ୍ଚଭୂତରେ ମିଶିଯାଏ । ସୂକ୍ଷ୍ମ କାରଣ-ଶରୀରାତ୍ମକ ଜୀବାତ୍ମା ବୀଜାଙ୍କୁର ନ୍ୟାୟରେ ସୁକର୍ମ ବା କୁକର୍ମ ନେଇ ଅନ୍ୟ ଯେ କୌଣସି ଶରୀର ଧାରଣ କରି ପୂର୍ବକୃତ ସୁ-କୁ-କର୍ମର ଫଳ ଭୋଗ କରେ । "ପୁନରପି ଜନନଂ ପୁନରପି ମରଣଂ ପୁନରପି ଗର୍ଭନିବାସଂ" ନାରଦଃ । ହେଲେହେଁ ସନାତନଧର୍ମ-ଶାସ୍ତ୍ରୋକ୍ତ-ବିଧିରେ ଚଳୁଥିବା ଲୋକର ସ୍ୱର୍ଗାଦି ଊର୍ଦ୍ଧ୍ୱଲୋକାତ୍ମକ-ଶରୀର ଧାରଣ କରି ଶିତାପାତିତ-ବିବିଧ ସୁଖ ଭୋଗ କଲେହେଁ ଗତାଗତ ଚିନ୍ତା ଥାଏ । ଉଭୟ କର୍ମକର୍ତ୍ତା ମର୍ତ୍ତ୍ୟଲୋକରେ ସୁ-କୁ-କର୍ମାନୁଯାୟୀ ଶରୀର ଧାରଣ କରି ସାଂସାରିକ ଇନ୍ଦ୍ରିୟ-ମୋହାତ୍ମକ ସୁଖଦୁଃଖାଦି ଭୋଗ କରିଥାଏ । ସତ୍ସାଧକ କଠିନ ସାଧନାଦ୍ୱାରା ଏବଂ ନୈଷ୍ଠିକ ଭଗବଦ୍ଭକ୍ତ ଏକାନ୍ତ ଭକ୍ତିଦ୍ୱାରା ପ୍ରେମାନନ୍ଦମୟ ଚିଦ୍ଘନ ପରଂବ୍ରହ୍ମରେ ମିଶିଯାନ୍ତି । ତଦେତର ଅଧୋଗତି ବା ଅଶେଷ କୋଟି ଯୋନିରେ ଭ୍ରମଣ କରି ପୂର୍ବ-ସଞ୍ଚିତ ଦୁଷ୍କୃତ କର୍ମାନୁସାରେ

ତ୍ରିତାପରେ ସନ୍ତପ୍ତ ହେଉଥାନ୍ତି । ଏ ସମସ୍ତଙ୍କର ଜଗଦ୍ଧ୍ୱଂସରୂପ କଳ୍ପାନ୍ତେ ମହାପ୍ରଳୟରେ ବାସନାରୂପ ମୋହ ଆଉ ପର-କଳ୍ପରେ ଗତ-କଳ୍ପର ସଞ୍ଚିତ-କର୍ମାନୁଯାୟୀ ତଦନୁରୂପ ଶରୀର ଧାରଣ କରି ପୂର୍ବାର୍ଜିତ ସୁ-କୁ-କର୍ମର ଫଳ କ୍ଷୟ ନ ହୋଇ ଭୋଗ କରିବା ନିଶ୍ଚୟ । କିନ୍ତୁ ତାହା ସବୁ ସ୍ମରଣ ହୁଏ ନାହିଁ । "ଇଚ୍ଛାଦ୍ୱେଷସମୁତ୍ଥେନ ଦ୍ୱନ୍ଦ୍ୱମୋହେନ ଭାରତ ! ସର୍ବଭୂତାନି ସମ୍ମୋହଂ ସର୍ଗେ ଯାନ୍ତି ପରଂତପ ।" ୨୭ ଅ: ୭ ଗୀତା । ଆତ୍ମସାକ୍ଷାତକାର ବ୍ୟତୀତ କର୍ମର ଫଳ କ୍ଷୟ ହୁଏ ନାହିଁ । "ନ ହି କର୍ମାଣି କ୍ଷୀୟନ୍ତେ କଳ୍ପକୋଟିଶତୈରପି" । କଠିନ-ସାଧକ ପରମାତ୍ମଜ୍ଞାନୀ ଚିଦ୍‌ଘନରେ ମିଳିଗଲେ ତାହାର ଆଉ ଶରୀର ଧାରଣ ନାହିଁ । "ଯଦ୍‌ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ" ଗୀତା । କିନ୍ତୁ ଏକାନ୍ତ ଭଗବଦ୍ଭକ୍ତ ମାତୃ-ଗର୍ଭରେ ବା ଶରୀର ଧାରଣ କରି ମଧ୍ୟ ତ୍ରିତାପ-ତାପିତରେ ମଧ୍ୟ ସମସ୍ତଙ୍କୁ ଭଗବନ୍ମୟ ମଣି ପ୍ରେମରେ ଆନନ୍ଦିତ ହେଉଥାଏ । ଅନ୍ୟ ବିଷୟ କଥା କିଏ ପଚାରେ ? ନିଜର ଦେହ ପ୍ରତିଓ ତାଙ୍କର ସେତେ ଲକ୍ଷ ନ ଥାଏ ।

'ହରିବୋଲ ରେ ଜୀ/, ହରିବୋଲଠାରୁ ନାହିଁ ଭଲ ଟର ।
ହରିବୋଲ ମନ ହରିବୋଲ ରେ ।
ଭବେ ଭୁଲି ନୁହ କଳିବଳି, ମନ ଭବେ ଭୁଲି ନୁହ କଳିବଳି ରେ
ଯେତେ ଯା ଦେଖୁଛୁ ସବୁ ସଳ ରେ ॥'

---

## ବ୍ୟଷ୍ଟି-ସମଷ୍ଟି, ତ୍ରି-ଶରୀର, ତ୍ରି-ଅବସ୍ଥା, ଅଷ୍ଟଚୈତନ୍ୟ, ଇନ୍ଦ୍ରିୟାଧିଷ୍ଠିତ ଦେବତା

ନାନା ପ୍ରକାର ବୃକ୍ଷ-ଲତା ଏକତ୍ର ଥିବାରୁ ତାକୁ ବନ ବା 'ସମଷ୍ଟି' କୁହାଯାଏ । ବନାନ୍ତର୍ଗତ ଏକ ଏକ ବୃକ୍ଷକୁ 'ବ୍ୟଷ୍ଟି'

କୁହାଯାଏ । ପ୍ରତ୍ୟେକ ପ୍ରାଣିର ସ୍ଥୂଳ-ସୂକ୍ଷ୍ମ-କାରଣ-ଶରୀର ମିଶି ଏକସଙ୍ଗରେ ଗୋଟିଏ ଶରୀର । ତଦ୍ଭୋଗ୍ୟ ଯଥାକ୍ରମରେ ଜାଗ୍ରତ୍-ସ୍ୱପ୍ନ-ସୁଷୁପ୍ତି ତିନିଗୋଟି ଅବସ୍ଥା । ସ୍ଥୂଳ ବା ରୂପାତ୍ମକ ସମସ୍ତ ଅବୟବ ବା ଅଙ୍ଗପ୍ରତ୍ୟଙ୍ଗ ଓ ସର୍ବୀୟ ସ୍ଥୂଳେନ୍ଦ୍ରିୟଯୁକ୍ତ ସ୍ଥୂଳ-ଶରୀରର ଜାଗ୍ରତ ଅବସ୍ଥା । ସୂକ୍ଷ୍ମ-ସତ୍ତାତ୍ମକ ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ ପ୍ରାଣ, ଏକ ହେଲେହେଁ ଚାରି ଅନ୍ତଃକରଣ ଯଥା—ମନ-ବୁଦ୍ଧି-ଚିତ୍ତ-ଅହଂକାର ଏ ସମଷ୍ଟି ପଞ୍ଚତନ୍ମାତ୍ର ବା ସୂକ୍ଷ୍ମ-ମହାଭୂତ ସଂଘଟିତ ଚତୁର୍ବିଂଶ ତତ୍ତ୍ୱାତ୍ମକ ସୂକ୍ଷ୍ମ-ଶରୀରର ସ୍ୱପ୍ନାବସ୍ଥା । ଅନିର୍ବଚନୀୟ ବା ଅବ୍ୟକ୍ତ ସତ୍ତାମାତ୍ର କାରଣ-ଶରୀରର ସୁଷୁପ୍ତି ବା ଗାଢ଼ନିଦ୍ରାବସ୍ଥା ।

'ନିର୍ଗୁଣ-ନିରାକାର-ନିର୍ଲିପ୍ତ ପରଂବ୍ରହ୍ମ ପରମାତ୍ମା ଚିଦ୍ଘନ ବା ଚୈତନ୍ୟ ଏକମାତ୍ର ସର୍ବବ୍ୟାପୀ ହେଲେହେଁ ସୁବୋଧ ସକାଶେ ତତ୍ତ୍ୱ-ଶାସ୍ତ୍ରମାନଙ୍କରେ ଅଠ ପ୍ରକାର ନିରୂପଣ ହୋଇଛନ୍ତି । ଯଥା—୧ ବ୍ୟଷ୍ଟି ବା ଏକ ସ୍ଥୂଳଶରୀରାଧିଷ୍ଠିତ ଚୈତନ୍ୟଙ୍କୁ 'ବିଶ୍ୱ' କୁହାଯାଏ । ୨ ସମଷ୍ଟି ବା ସମସ୍ତ ସ୍ଥୂଳ-ଶରୀରାଧିଷ୍ଠିତ ଚୈତନ୍ୟଙ୍କୁ 'ବୈଶ୍ୱାନର' କୁହାଯାଏ । ୩ ବ୍ୟଷ୍ଟି ବା ଏକ ସୂକ୍ଷ୍ମ-ଶରୀରାଧିଷ୍ଠିତ ଚୈତନ୍ୟଙ୍କୁ 'ତୈଜସ' କୁହାଯାଏ । ୪ ସମଷ୍ଟି ବା ସମସ୍ତ ସୂକ୍ଷ୍ମ-ଶରୀରାଧିଷ୍ଠିତ ଚୈତନ୍ୟଙ୍କୁ 'ହିରଣ୍ୟଗର୍ଭ' ଓ 'ସୂତ୍ରାତ୍ମା' କୁହାଯାଏ । ୫ ଏକ କାରଣ-ଶରୀରାଧିଷ୍ଠିତ ଚୈତନ୍ୟଙ୍କୁ 'ପ୍ରାଜ୍ଞ' କୁହାଯାଏ । ୬ ସମଷ୍ଟି ବା ସମସ୍ତ କାରଣ-ଶରୀରାଧିଷ୍ଠିତ ଚୈତନ୍ୟଙ୍କୁ 'ଈଶ୍ୱର' କୁହାଯାଏ । ୭ ସମସ୍ତ ପ୍ରାଣୀଙ୍କ ହୃଦୟରେ ଚୈତନ୍ୟାଭାସ ଗ୍ରହଣ କରିବା ଚୈତନ୍ୟଙ୍କୁ 'ଆଭାସ-ଚୈତନ୍ୟ' କୁହାଯାଏ । ୮ ସମସ୍ତ ଗ୍ରାମ-ନଗର-ବନ-ପର୍ବତ ଚତୁର୍ବିଧ ପ୍ରାଣୀ ଦେବ-ନର-ରାକ୍ଷସାଦି ମହାପ୍ରପଞ୍ଚ ବା ସମସ୍ତ ବ୍ରହ୍ମାଣ୍ଡକୁ ବ୍ୟାପିକରି ଅନନ୍ତକାଳରୁ ଅନନ୍ତ କାଳ ପର୍ଯ୍ୟନ୍ତ ଅଖଣ୍ଡ ଭାବରେ ଯେ ଚୈତନ୍ୟ ଅଛନ୍ତି, ତାଙ୍କୁ 'କୂଟସ୍ଥ', 'ତୁରୀୟ' ଏବଂ 'ଚତୁର୍ଥ' କୁହାଯାଏ । ସମଷ୍ଟି

ଚୈତନ୍ୟ ଏକମାତ୍ର ହେଲେ ହେଁ ସୁବୋଧ ସକାଶେ ଏହିପରି ଅଠ ପ୍ରକାର ନିରୂପଣ ହୋଇଛନ୍ତି । ଏହି ପରଂବ୍ରହ୍ମ ବା ପରମାତ୍ମାଙ୍କୁ କିମ୍ବା ଚୈତନ୍ୟଙ୍କୁ ଜାଣିବା କିମ୍ବା ପ୍ରାପ୍ତ ହେବା ବା ମୋକ୍ଷ ହେବା ସକାଶେ ତଦନୁଷ୍ଠାନ କଠିନ-ସାଧନା ବା ଅଷ୍ଟାଙ୍ଗ ସାଧନାତ୍ମକ ସମାଧି ବା ଯୋଗ ସାଧନା ନିରୂପଣ ହୋଇଛି । ତାଙ୍କର ଉପାସନା ହୋଇ ନ ପାରେ । ବେଦ, ଉପନିଷଦ, ଯୋଗଶାସ୍ତ୍ର, ଦର୍ଶନ ଏବଂ ତତ୍ତ୍ୱଗ୍ରନ୍ଥମାନଙ୍କରେ ସେ ସାଧନା ଅତି କଠିନ ଓ ଦୁଃସାଧ୍ୟ ବୋଲି ଉଲ୍ଲେଖ ହୋଇଛି । 'ସେ ପଥ ଅତ୍ୟନ୍ତ କଠିନ । ଭୟେ ଭାଜିଲେ ମୁନିଜନ ।'

ଇନ୍ଦ୍ରିୟାଧିଷ୍ଠିତ ଦେବତା ଯଥା—"ତଦାନୀମେତୌ ବିଶ୍ୱ-ବୈଶ୍ୱାନରୌ ଦିଗ୍‌ବାତାର୍କପ୍ରଚେତାଶ୍ୱିଭିଃ କ୍ରମାନ୍ନିୟନ୍ତ୍ରିତେନ ଶ୍ରୋତ୍ରାଦୀନ୍ଦ୍ରିୟପଞ୍ଚକେନ କ୍ରମାଚ୍ଛବ୍ଦସ୍ପର୍ଶରୂପରସଗନ୍ଧାନ୍, ଅଗ୍ନୀନ୍ଦ୍ରୋପେନ୍ଦ୍ରଯମପ୍ରଜାପତିଭିଃ କ୍ରମାନ୍ନିୟନ୍ତ୍ରିତେନ ବାଗାଦୀନ୍ଦ୍ରିୟ-ପଞ୍ଚକେନ କ୍ରମାଦ୍‌ବଚନାଦାନଗମନବିସର୍ଗାନନ୍ଦାନ୍; ଚନ୍ଦ୍ର-ଚତୁର୍ମୁଖଶଙ୍କରାଚ୍ୟୁତୈଃ କ୍ରମାନ୍ନିୟନ୍ତ୍ରିତେନ ମନୋବୁଦ୍ଧ୍ୟ-ହଙ୍କାରଚିତ୍ତାଖ୍ୟେନାନ୍ତରେନ୍ଦ୍ରିୟଚତୁଷ୍କେଣ କ୍ରମାତ୍ ସଂଶୟ-ନିଶ୍ଚୟାହଙ୍କାର୍ଯ୍ୟଚୈତ୍ତାଂଶ୍ଚ ସର୍ବାନେତାନ୍ ସ୍ଥୂଳବିଷୟାନନୁ-ଭବତଃ ।" ( ବେଦାନ୍ତସାର ) ।

ଉପରୋକ୍ତ ବିଶ୍ୱ-ବୈଶ୍ୱାନର ଦିକ୍-ବାୟୁ-ଅର୍କ-ବରୁଣ-ଅଶ୍ୱିନୀକୁମାରଙ୍କ ପ୍ରେରଣାରେ କ୍ରମଶଃ କର୍ଣ୍ଣ-ଚର୍ମ-ଚକ୍ଷୁ-ଜିହ୍ୱା-ନାସିକାଦ୍ୱାରା କ୍ରମରେ ଶବ୍ଦ-ସ୍ପର୍ଶ-ରୂପ-ରସ-ଗନ୍ଧ ଅନୁଭବ କରନ୍ତି । ଅଗ୍ନି-ଇନ୍ଦ୍ର-ଉପେନ୍ଦ୍ର=ବିଷ୍ଣୁ-ଯମ-ପ୍ରଜାପତିଙ୍କ ପ୍ରେରଣାରେ ମୁଖ-ହସ୍ତ-ପାଦ-ଗୁହ୍ୟେନ୍ଦ୍ରିୟ-ଉପସ୍ଥେନ୍ଦ୍ରିୟଙ୍କଦ୍ୱାରା କ୍ରମରେ ବଚନ ଆଦାନ-ପ୍ରଦାନ-ଗମନ-ତ୍ୟାଗ-ଆନନ୍ଦ ଅନୁଭବ କରନ୍ତି । ଚନ୍ଦ୍ର-ବ୍ରହ୍ମାଶଙ୍କର-ଅଚ୍ୟୁତଙ୍କ ପ୍ରେରଣାଦ୍ୱାରା ଯଥାକ୍ରମରେ ମନ-ବୁଦ୍ଧି-ଅହଙ୍କାର-ଚିତ୍ତଦ୍ୱାରା ସଂଶୟ, ନିଶ୍ଚୟ, ଅହଂଭାବ, ସ୍ମରଣ

ଅନୁଭବ ହୋଇଥାଏ । ଅତଏବ ଏ ସବୁ ତ ନାମରୂପମୟ ସଗୁଣ ପଞ୍ଚଭୂତାତ୍ମକ ବିଷୟ । ମନୁଷ୍ୟମାନଙ୍କର ଏତଦ୍‌ବ୍ୟତୀତ ଇନ୍ଦ୍ରିୟ ତ ନାହିଁ; ସୁତରାଂ ନିର୍ଗୁଣ ବା ନିରାକାର ଧ୍ୟାନ ଧାରଣା କରିବ କିଏ ? ତେବେ କୁହାଯାଇପାରେ ନାମ-ରୂପ-ଗୁଣ ନେଇ ସୃଷ୍ଟିକର୍ତ୍ତାଙ୍କର ସୃଷ୍ଟି କୌଶଳକୁ ଅନୁମାନ କରି ବାହ୍ୟାଡ଼ମ୍ବର ବା ବିକୃତାତ୍ମକ ଧନ୍ୟବାଦକୁ ଉପରଠାଉରିଆ ଉପାସନା କୁହାଯାଇପାରେ । ( ଗୁରୁ ଶିଷ୍ୟ ତତ୍ତ୍ୱ ସଂହିତା ଦ୍ରଷ୍ଟବ୍ୟ ) ।

ସୃଷ୍ଟି ସୃଷ୍ଟ ହେବା ପୂର୍ବେ ନିର୍ଲିପ୍ତ, ନିରାକାର, ନିର୍ଗୁଣ ପରଂବ୍ରହ୍ମଙ୍କ ସତ୍ତାଦ୍ୱାରା ଯେପରି ଗୁଣାତ୍ମକ ସାକାର ବା ନାମରୂପାତ୍ମକ ସୃଷ୍ଟି ହୋଇଛି ବା ସେ କରନ୍ତି, ତତ୍ସାଧନ-ପାଳନ-ଧ୍ୱଂସ ନିମିତ୍ତ ସେ ସେହିପରି ସଗୁଣ ସାକାର ଶରୀରଧାରଣ କରି ସୃଷ୍ଟିଲୀଳା ସମ୍ପାଦନ କରନ୍ତି ବା ହୋଇଥାଏ ବା ହୋଇଛି । ତାଙ୍କ ଆଦେଶ ଶ୍ରୁତି-ସ୍ମୃତି-ପୁରାଣାଦି ନିର୍ଦ୍ଦେଶାନୁସାରେ ତାଙ୍କ ନାମରୂପାତ୍ମକ ପ୍ରତିଷ୍ଠିତ ବିଗ୍ରହରେ 'ଦର୍ପଣ-ପ୍ରତିବିମ୍ବ ସମ' ସ୍ୱଚ୍ଛ ସତ୍ତାଧିକ୍ୟାଧିଷ୍ଠାନ ହେତୁ ସେ ଆରାଧିତ ହେଉଛନ୍ତି । ତାଙ୍କ ସୃଷ୍ଟ ସର୍ବଶ୍ରେଷ୍ଠ ମାନବମାନେ ସେହି ଲୀଳାବତାର ଓ ତତ୍ ପ୍ରତିଷ୍ଠିତ-ବିଗ୍ରହଙ୍କୁ ସବିଧି ଅର୍ଥାତ୍ ସକାମ-ନିଷ୍କାମ ଭାବରେ ଆରାଧନା ଓ ଉପାସନା କରି ଅଭୀଷ୍ଟ-ଫଳ ବା ତାଙ୍କୁ ପାଇଥାନ୍ତି ବା ମୋକ୍ଷ ଲଭନ୍ତି । ପରଂବ୍ରହ୍ମଙ୍କର ସଗୁଣ ବା ସାକାର-ଲୀଳାବତାର ମାହାତ୍ମ୍ୟ, କ୍ରୀଡ଼ା, କୀର୍ତ୍ତି—ଶ୍ରବଣ, ସ୍ମରଣ, ନାମକୀର୍ତ୍ତନାଦି ଏବଂ ତଦ୍ବର୍ଣ୍ଣିତ ନାମ-ରୂପାତ୍ମକ ସବିଧିନ୍ୟାସାଦିଦ୍ୱାରା ପ୍ରତିଷ୍ଠିତ ବିଗ୍ରହାଧିଷ୍ଠିତ ଭଗବାନଙ୍କର ଉପାସନା, ଅର୍ଚ୍ଚନାଦି ନବଧାଭକ୍ତି ସନାତନଧର୍ମ-ଶାସ୍ତ୍ରୋକ୍ତ ସଦାଚାରନିଷ୍ଠମାନଙ୍କ ପକ୍ଷରେ ନିରୂପିତ; ସୁତରାଂ ସମୁପଯୁକ୍ତ । ଅତି ଦ୍ୱନ୍ଦ୍ୱାତୀତ, ସର୍ବତ୍ୟାଗୀ, ତନ୍ମୟାନ୍ୱିତ ବା

ସର୍ବ ଦୁଃଖାଦ ସହନଶୀଳ ସାଧକ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ, ସବିକଳ୍ପକ-ସମାଧି ଏହି ଅଷ୍ଟାଙ୍ଗ ଯୋଗ-ସାଧକ ନିର୍ବିକଳ୍ପକ ସମାଧିସ୍ଥିତ-ଯୋଗୀ ସେହି ନିର୍ବିଶେଷ ସର୍ବକାରଣ ପରଂବ୍ରହ୍ମଙ୍କୁ ପ୍ରାପ୍ତ ହୋଇଥାନ୍ତି । ଏ ସାଧନାରେ ନାନାପ୍ରକାର ବିଘ୍ନର ସମ୍ଭାବନା; କିନ୍ତୁ ସଦ୍‌ଗୁରୁପଦେଶାନୁଯାୟୀ ଶ୍ରୀମନ୍ନାରାୟଣଙ୍କ ଅବଧି ଆଶ୍ରୟଦ୍ୱାରା ସମୁପଯୁକ୍ତ ସାଧନାରେ ନିଯୁକ୍ତ ଥିଲେ ସର୍ବ ବିଘ୍ନ ନିବାରଣ ହୋଇଥାଏ ।

"ମଥିତ୍ୱା ଚତୁରୋ ବେଦାନ୍ ସର୍ବଶାସ୍ତ୍ରାଣି ଚୈବ ହି ।
ସାରସ୍ତୁ ଯୋଗିଭିଃ ପିତଃ ତକ୍ରମଶ୍ନନ୍ତି ପଣ୍ଡିତାଃ ॥"

ମତାନ୍ତରେ ନିଗମ-ପ୍ରୁରମ୍ୟ ପୀଠରେ ସୀକାନ୍ତିକ ଶ୍ରଦ୍ଧା ଓ ଦୃଢ଼ତାଦ୍ୱାରା ପ୍ରଥମତଃ ନାମ-ରୂପ ଓ ଇନ୍ଦ୍ରିୟ-ବିଷୟମାନଙ୍କୁ ସମୁପଯୁକ୍ତ ଇନ୍ଦ୍ରିୟଶକ୍ତିଦ୍ୱାରା ସଂଯତ ଓ ଲୟ କରିବ । ୨ୟ ଇନ୍ଦ୍ରିୟ-ଶକ୍ତିକି ମନରେ ସଂଯତ ବା ଲୟ କରିବ, ୩ୟ ମନକୁ ଅହଂକାରରେ, ୪ର୍ଥ ଅହଂକାରକୁ ବୁଦ୍ଧିରେ, ୫ମ ବୁଦ୍ଧିକୁ ମହତ୍ତତ୍ତ୍ୱରେ, ୬ଷ୍ଠ ମହତ୍ତତ୍ତ୍ୱକୁ ପ୍ରକୃତିରେ, ୭ମ ପ୍ରକୃତିକି ପରଂବ୍ରହ୍ମରେ ଲୟ କଲେ ମୋକ୍ଷଲାଭ ହୋଇଥାଏ । ପ୍ରଥମାବଧି ପ୍ରକୃତିପର୍ଯ୍ୟନ୍ତ ସାଧନା-ସ୍ତରରୁ ବିଘ୍ନ ହେଲେ ସତ୍ସାଧକ ପୁନର୍ଜନ୍ମ ଲଭି ବା ଜନ୍ମାନ୍ତରେ ପୂର୍ବ-ସଂସ୍କାର ହେତୁ ଅଗତିକ-ଭାବରେ ଉପର୍ଯ୍ୟୁପରି ଉନ୍ନତି ଲଭିଥାଏ । କିନ୍ତୁ ପରଂବ୍ରହ୍ମରେ ମିଳିତ ହେଲେ ପୁନର୍ଜନ୍ମ ନାହିଁ । "ଯଦ୍‌ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ ।" 'ପ୍ରେମାନନ୍ଦମୟ ଲୀଳା କଲ୍ଲୋଳ । ଉଚ୍ଛୁଳି-ପଡ଼ଇ ତହିଁ କେବଳ ।'

ଉଭୟ-ସମନ୍ୱିତ ଉପାସନା ଯଥା—ସଗୁଣ-ନିର୍ଗୁଣ ସମନ୍ୱିତ ମତ ନେଇ ଉପାସନା ସମ୍ବନ୍ଧେ ଅଧିକାରୀ-ଭେଦରେ ନିର୍ଦ୍ଦେଶ ମଧ୍ୟ ଅଛି । ୧ମ ପରଂବ୍ରହ୍ମଙ୍କର ଲୀଳାତ୍ମକ ସାକାର ପ୍ରତିଷ୍ଠିତ ଯେ କୌଣସି ସାକାର-ବିଗ୍ରହ ସମ୍ମୁଖରେ ସନାମ-ଧ୍ୟାନ

ଉଭୟବିଧ ଉପାସନା କରଣୀୟ । ନିର୍ଗୁଣ-ସାଧନୋକ୍ତ ଯଥା ବେଦାନ୍ତସାର ୭ମ ସୂତ୍ର "ଉପାସନାନି ସଗୁଣବ୍ରହ୍ମବିଷୟକ ମାନସ ବ୍ୟାପାରରୂପାଣି ଶାଣ୍ଡିଲ୍ୟବିଦ୍ୟାଦୀନି ଉପାସନା ତୁ ଚିତ୍ତୈକାଗ୍ର୍ୟଂ ଶୁଦ୍ଧିଶ୍ଚ ।" ୨ୟ ତତ୍ତ୍ୱରେ ଶରୀର ବ୍ୟତୀତ ଅବତାରାତ୍ମକ ଯେ କୌଣସି ସଗୁଣ-ମୂର୍ତ୍ତିଙ୍କର ଧ୍ୟାନ ଧାରଣା ଲୟ କରି ଉଭୟଂ ବିଧ ଉପାସନା କରାଯାଏ । ୩ୟ ତତ୍ତ୍ୱରେ ନିଜ-ଶରୀରାଦି-ମମତା-ଶୂନ୍ୟ ଜୀବନ୍ମୁକ୍ତ ଶ୍ରେଷ୍ଠାଧିକାରୀ କେବଳ ମୋକ୍ଷୋଦ୍ଦେଶ୍ୟରେ ନାମରୂପାଦି-ରହିତ ଅବଲମ୍ବନଶୂନ୍ୟ ଭାବମୟାଭାବ ନିର୍ମଳ ସ୍ୱଚ୍ଛ ସୁଶାନ୍ତ ପ୍ରେମାନନ୍ଦମୟ ଭାବସାଗରରେ ଭାସମାନ ହେଉଥାଏ । 'ଅଛି କି ନାହିଁ ନିଜ ଦେହୀ, ଉଭୟ ମତ ନ ଜାଣଇ ।' 'ପ୍ରେମାନନ୍ଦମୟ ଲୀଳା-କଲ୍ଲୋଳ, ଉଚ୍ଛୁଳିପଡ଼ଇ ତହିଁ କେବଳ ।'

ପ୍ରକାରାନ୍ତରେ ମୋକ୍ଷାତ୍ମକ ସୂକ୍ଷ୍ମକ୍ରିୟା ଯଥା—ସମସ୍ତ ଇନ୍ଦ୍ରିୟ ଓ ଅନ୍ତଃକରଣାଦିରେ ଯାହା ଯାହା ନିରୂପଣ ହେଉଥିବ, ତାକୁ ସବୁ ଏକ ଏକ ପରେ ଏକ ଏକ କରି ଭାବନା କରୁଥିଲେ ଯାହା ଯାହା ନିରୂପଣ ହେଉଥିବ ସେ ସବୁ କେହି 'ଈଶ୍ୱର ନୁହନ୍ତି ?' ବୋଲି ବିରତ ହେଉଥିଲେ ଯେତେବେଳେ ଚିତ୍ତ ନିଶ୍ଚଳ ବା ନିର୍ବିକଳ୍ପକ ହୋଇଯିବ, ସେ ହେଉଛି 'ମୋକ୍ଷାବସ୍ଥା, ସଦ୍ସାଧନାତ୍ମକ ନୈଷ୍ଠିକ ପକ୍ଷରେ ଏହା ହୋଇପାରେ ।

ଆତ୍ମା ବା ବ୍ରହ୍ମ-ନିରୂପଣ ବିଷୟ ବେଦରେ ଅଧିକାରୀ-ଭେଦେ କ୍ରମଶଃ ଉଲ୍ଲେଖ ହୋଇଛି । ଯଥା—"୧ମରେ ପୁତ୍ର, ୨ୟରେ ସ୍ଥୂଳ-ଶରୀର, ୩ୟରେ ଇନ୍ଦ୍ରିୟ, ୪ର୍ଥରେ ପ୍ରାଣ, ୫ମରେ ମନ, ୬ଷ୍ଠରେ ବୁଦ୍ଧି, ୭ମରେ ଆନନ୍ଦ ବା ଅଜ୍ଞାନ, ୮ମରେ ପ୍ରଜ୍ଞାନାନନ୍ଦମୟ ଚୈତନ୍ୟ, ୯ମରେ ଅସତ୍ ବା ଶୂନ୍ୟ, ୧୦ମରେ ଚିନ୍ମୟ ସତ୍ ଅର୍ଥାତ୍ ସଚ୍ଚିଦାନନ୍ଦୈକ-ବ୍ରହ୍ମ ।"

"ସତ୍ ଶବ୍ଦେନ ସଦା ସ୍ଥାୟୀ ଚିତ୍ ଚୈତନ୍ୟଂ ପ୍ରକୀର୍ତ୍ତିତଂ । ଏକମଦ୍ୱୈତମୀଶାନ ବୃହତ୍ତ୍ୱାତ୍ ବ୍ରହ୍ମ ଗୀଯ୍ୟତେ ।" ଅତୁଏବ ଜୀବ-ଦର୍ଶନ ନ୍ୟାୟରେ ବ୍ରହ୍ମ ନିରୂପଣ ହୋଇଛନ୍ତି । ବେଦ-ବାକ୍ୟ କେହି ମିଥ୍ୟା ନୁହେ । ପାତ୍ରରେ ଭେଦ ମାତ୍ର । (ସବଶେଷରୁ ବେଦବାକ୍ୟ ଦିଆ ନୋହିଁ ତାର ଭାବ ଦିଆଗଲା ।) ଅତଃ ଉତ୍ତରୋତ୍ତର ବ୍ରହ୍ମ ହୃଦୟରେ ସ୍ଥାୟୀ ହେବା ଦୁଃସାଧ୍ୟ । ଯତଃ "ବ୍ରହ୍ମ ଜାନାତି ବ୍ରାହ୍ମଣଃ ।" ( ଗୁରୁ ଶିଷ୍ୟ ତତ୍ତ୍ୱସଂହିତା-ନ୍ତର୍ଗତ ସାକାର ନିରାକାର ପରିଚ୍ଛେଦ ଦ୍ରଷ୍ଟବ୍ୟ )।

ଜଗତରେ ଜନ୍ମଜନ୍ମାନ୍ତରବିଶ୍ୱାସୀ ହିନ୍ଦୁମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷାନୁଭୂତ ହେତୁ ସାମାନ୍ୟ କେତେକ ମାତ୍ର ନିର୍ଗୁଣ ସତ୍ୟସତ୍ତାତ୍ମକ ବ୍ରହ୍ମ ଲଭିବାକୁ ଶ୍ରୁତି-ସ୍ମୃତି-ପୁରାଣୋକ୍ତ ବିଧିକୁ ମାନି ତଦନୁସାରେ ଚେଷ୍ଟିତ ହୋଇ ଓ ଶରୀରମମତା ତ୍ୟାଗଦ୍ୱାରା ସତ୍ସାଧନା କରିଥାନ୍ତି । ଆଉ କେତେକ ସଗୁଣାତ୍ମକ ଲୀଳାନ୍ତର୍ଗତ ସତ୍ତ୍ୱଗୁଣାତ୍ମକ ସତ୍-ଶାସ୍ତ୍ରୋକ୍ତ-ବିଧିରେ ସେ ପଦାର୍ଥକୁ ଲଭିବା ପାଇଁ ମନ-ବଚନ-କର୍ତ୍ତବ୍ୟ ସହ ଏକାନ୍ତ ଭକ୍ତିରେ ଲାଗିଥାନ୍ତି । ଏତଦ୍‌ବ୍ୟତୀତ ଅନ୍ୟାନ୍ୟମାନେ ଯାହା ତା ବା ରଜସ୍ତମଗୁଣମୟ ଚତୁର୍ବିଧ ଯୋନିରେ ଯଥା 'କପଟକୁ ଚପଟ, ସାଙ୍ଗିକି ମାଙ୍ଗି' ନ୍ୟୂନାଧିକ ସୁ-କୁ-ଫଳ ଲଭି ଭ୍ରମଣ କରୁଥାନ୍ତି । ଅହଂକାରବିଭୂତ ପକ୍ଷରେ 'ଯେ ତୋତେ ମାଇଲା ତୁ ତାକୁ ମାର, ନାଥ ବୋଲେ ପୁତା ନାହିଁ ବଗର' । ପକ୍ଷାନ୍ତରେ ଯଥା—କାମାଦି ରିପୁ ବାଧା ଦେଲେ ତାଙ୍କୁ ମାରିବା ବା ଯବତ କରିବା ଉଚିତ । ସାଂସାରିକ ସଦୁପଦେଶାନୁସାରେ 'ଯେ ତୋତେ ମାଇଲା ତୁ ତାକୁ ନ ମାର ତାକୁ ମାରୁଥିବ ଆନ, ଦେଖୁଥିବ ତୋର ଦୁଇ ନୟନ ଶୁଣୁଥିବ ବେନି କାନ' । ଭିନ୍ନାର୍ଥେ ଯଥା—କୃତ୍ରିମ ଉପାୟରେ ଅବଶେନ୍ଦ୍ରିୟଙ୍କ ଶକ୍ତିକୁ ଧ୍ୱଂସ ନ କରି ଯଥୋପଯୁକ୍ତ ସମ୍ଭୋଗ-ଦ୍ୱାରା ଆୟତ୍ତ କରିବା ଉଚିତ ।

ଅନ୍ତ୍ୟଜାଦି ଯେ କେହି ହେଉ ପରଂପରାଗତ ସ୍ୱ ସ୍ୱ କୁଳ-ପ୍ରଚଳିତ କାର୍ଯ୍ୟ ପରିପାଟିରେ ସାଧନ କରି, ଅନ୍ୟର କୌଣସି ଅନିଷ୍ଟାଦି ବା ଅନ୍ୟାୟ୍ୟ କାର୍ଯ୍ୟ ନ କରି ଭଗବାନଙ୍କୁ ସ୍ମରଣ କରୁଥିଲେ ସମୟାନୁସାରେ ବା ଜନ୍ମଜନ୍ମାନ୍ତରେ ପବିତ୍ର ଦେହ ଲଭି ଦେହୀର କାର୍ଯ୍ୟ ସାଧନଦ୍ୱାରା ଭଗବାନଙ୍କୁ ପାଇପାରିବ ।

"ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ ।
ସ୍ୱକର୍ମନିରତଃ ସିଦ୍ଧିଂ ଯଥା ବିନ୍ଦତି ତଚ୍ଛୃଣୁ ।୪୫। ଗୀ: ୧୮ଅ:
ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତଂ ।
ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ।" ୪୬ ।,,

ସିଦ୍ଧବାକ୍ୟ । ନାମରୂପାତ୍ମକ ପଞ୍ଚଭୂତ-ସମଷ୍ଟି ଜଗତ ଓ ତଦନ୍ତର୍ଗତ ଚତୁର୍ବିଧ-ଶରୀରାତ୍ମକ ବା ମାନବାଦି ସମସ୍ତେ ବ୍ୟତିକ୍ରମ ଗୁଣାତ୍ମକ ଦ୍ୱନ୍ଦ୍ୱମୟ ମାତେଇ କାଳବଶରେ ଯହିଁରୁ ପ୍ରକାଶ ପାଇ ବୃଦ୍ଧି ଲଭିଛନ୍ତି; ସେହି କାଳବଶରେ ପୂର୍ବକୃତ ପାପ-ପୁଣ୍ୟ ବାସନାସହ ତହିଁରେ ଗୁପ୍ତ ହେବେ । ପାପ-ପୁଣ୍ୟ ଓ ଗୁଣ-ଦୋଷାଦି ଦ୍ୱନ୍ଦ୍ୱ-ଭାବ ନ୍ୟୂନାଧିକ-ମାତ୍ରାରେ ସମସ୍ତଙ୍କ-ଠାରେ ଅଛି । ସ୍ରଷ୍ଟାସୃଷ୍ଟ କାହାରିଠାରେ ଗୁଣ-ଦୋଷ ନ ଥାଇ ନାହିଁ । "ନ ହି ସର୍ବେ ସର୍ବଂ ବେତ୍ତି" ସମସ୍ତେ ବା ଯେ କେହି ସବୁ ଜାଣନ୍ତି ନାହିଁ । ପ୍ରତ୍ୟେକଠାରୁ ସଦ୍‌ଗୁଣ ଶିକ୍ଷା କରାଯାଇ-ପାରେ ଓ ଶିଖିବା ଉଚିତ । ସୃଷ୍ଟିକର୍ତ୍ତାଙ୍କର ଆନନ୍ଦାତ୍ମକ ଲୀଳା ମାନବଙ୍କଠାରେ ସମ୍ୟକ୍ ଭାବରେ ନିହିତ । ଅନ୍ୟାନ୍ୟମାନେ ମାନବମାନଙ୍କ ଉପକାରୋପଯୋଗୀ । ସାଂସାରିକ ସକୌଶଳା-ତ୍ମକ ଧୀଶକ୍ତି ମାନବଙ୍କଠାରେ ନିହିତ ହେତୁ ତାଙ୍କୁ ଅନ୍ୟାନ୍ୟ ସମସ୍ତେ ଭୟ କରନ୍ତି । ଅବିଦ୍ୟାବଶରୁ ମାନବମାନେ ମଧ୍ୟ ସମସ୍ତଙ୍କୁ ଭୟ କରନ୍ତି । ଭ୍ରମ ସମସ୍ତଙ୍କଠାରେ ଅଛି । ଅଜ୍ଞାନ ଓ ଭ୍ରମକୃତ ଦୋଷ କ୍ଷମଣୀୟ । ଦାମ୍ଭିକାଦି ଜ୍ଞାନକୃତ ଦୋଷର ପ୍ରତିକାର ନାହିଁ । ସୁତରାଂ ବିବେକବଳରେ ନିର୍ଣ୍ଣୟ କରି

ଯଥୋପଯୁକ୍ତ ପ୍ରତିକାରଦ୍ୱାରା ସଦ୍‌ଗତି ଲଭିବା-ଶକ୍ତି କେବଳ ମାନବଠାରେ ନିହିତ। ଅଧୋର୍ଦ୍ଧ୍ୱଗତି ସକାଶେ ମାନବ-ଜନ୍ମ ଦ୍ୱାର ସ୍ୱରୂପ। ଭଗବଦାଦେଶ ସଚ୍ଛାସ୍ତ୍ରମାନଙ୍କରେ ଏ ସବୁର ତତ୍ତ୍ୱ ଓ ପ୍ରତିକାର ନିହିତ ଥିବାରୁ ମନୁଷ୍ୟମାନଙ୍କ ଦୁଷ୍କୃତ-ଜନିତ କଷ୍ଟଭୋଗ ପ୍ରତି ସୃଷ୍ଟିକର୍ତ୍ତା ଦାୟୀ ନୁହନ୍ତି। ବିଶେଷତଃ କାହାର ଦୁର୍ଗୁଣ ପ୍ରତି ଦୃଷ୍ଟି ନ ଦେଇ ଦୁଃସାଧ୍ୟ ହେଲେହେଁ ସଦ୍‌ଗୁଣାଂଶ ଗ୍ରହଣ କରି ତଦବଲମ୍ବନରେ ସମୁଚିତ କାର୍ଯ୍ୟ କରିବା ସର୍ବତୋଭାବେ ବିଧେୟ। ଜନ୍ମଜନ୍ମାନ୍ତର ସଞ୍ଚିତ ସୁକୃତ ଓ ଦୁଷ୍କୃତଜନିତ କେତେକ ଫଳ ଇହ-ଶରୀରରେ ଭୋଗ କରିବାକୁ ନିର୍ଦ୍ଦିଷ୍ଟ ଥିଲେହେଁ ସ୍ରଷ୍ଟାଦତ୍ତ କର୍ତ୍ତୃତ୍ୱଶକ୍ତି ବା ପୌରୁଷ ପ୍ରୟୋଗରେ ଭଲ ବା ମନ୍ଦ ଫଳ ଯଥା—ପାପ ବା ପୁଣ୍ୟ, ବିତ୍ତ ବା ନିଃସ୍ୱତା, ବିଦ୍ୟା ବା ମୂର୍ଖତା ପ୍ରଭୃତି ସବିଶେଷ ନ୍ୟୂନାଧିକ ସଫଳ ବା ପ୍ରାପ୍ତ ହୋଇଥାଏ। ସାମାନ୍ୟକୁ ହେୟ ଜ୍ଞାନ କଲେ ଅବନତି ଘଟିବା ନିଶ୍ଚୟ। ବିପରୀତରେ ବିପରୀତ ଫଳ। ସବୁଠାରୁ ସମୟ ବହୁମୂଲ୍ୟ ବା ଅମୂଲ୍ୟ; ସେ ବ୍ୟର୍ଥରେ ବ୍ୟୟ ହେଲେ ଦୁର୍ଭାଗ୍ୟ ନିଶ୍ଚୟ। ସତ୍କର୍ମ ସାଧନରେ ପୂର୍ବକୃତ ପାପଜନିତ ଫଳର କଷ୍ଟ ଶିଥିଳ ହୋଇଥାଏ; ନିର୍ଦ୍ଦିଷ୍ଟ ଐଶ୍ୱର୍ଯ୍ୟ ବୃଦ୍ଧି ହୋଇଥାଏ, ଅଉ ଦୁଷ୍କୃତଦ୍ୱାରା ପୂର୍ବ ପାପାର୍ଜିତ ଦୁଃଖର ମାତ୍ରା ବୃଦ୍ଧି ଓ ସୁଖର ମାତ୍ରା କମ୍ ହୋଇଥାଏ। ଅଂଶ ବା ବିନ୍ଦୁ କମ୍ବା କାଠପରିଣାମୀ ଶରୀର ରକ୍ଷା ଓ ପୁଷ୍ଟି ସାଧନଠାରୁ ଶରୀରର ଉଚିତ କାର୍ଯ୍ୟ ଯତ୍ନସହକାରେ ସର୍ବଶ୍ରେଷ୍ଠ। ସତ୍କାର୍ଯ୍ୟର ସବିଶେଷ ସାଧନା ଯେତେ କଷ୍ଟକର, ତାହାର ଫଳ ତଦ୍ରୂପ ମହତ୍। ଅନ୍ୟର କିଛି ଶ୍ରେୟ କରିପାରି ତ କର; କିନ୍ତୁ ଅନିଷ୍ଟ କର ନାହିଁ। ସୁସାଧ୍ୟାତ୍ମକ ଓ ଅଜିତେନ୍ଦ୍ରିୟ ସୁଖାଭିଳାଷରେ ଅଧୋଗତି ନିଶ୍ଚୟ। ଜଗତରେ ବଚନ ସବୁଠାରୁ ମିଠା ଓ ମୂଲ୍ୟବାନ୍,

ତଦ୍ଦ୍ୱାରା ସବୁ ଜଣାଯାଇପାରେ । ମଧୁର ବାକ୍ୟରେ ସମସ୍ତେ ପ୍ରୀତ, ସେ କଠିନ ହେଲେ ସମସ୍ତେ ଶତ୍ରୁ ହୋଇଥାନ୍ତି । ଅତଃ କୋକିଳ କାହାକୁ କଣ ଦେଇଥାଏ ? ପେଚା କାହାର କଣ ନଷ୍ଟ କରିଥାଏ ?

"ବାଗ୍ମାଧୁର୍ଯ୍ୟା ସର୍ବଲୋକେ ପ୍ରିୟତ୍ୱସ୍ୟ
ସା କାଠିନ୍ୟ ସର୍ବଲୋକୋଽପି ଶତ୍ରୁଃ ।
କସ୍ମା ଦ୍ରବ୍ୟୈଃ କୋକିଳେନୋପଦତ୍ତଂ
କସ୍ମା ଲୋକେ ପେଚକସ୍ୟାପରାଧଃ ॥ "

ହିନ୍ଦୁ-ସାଧାରଣଙ୍କୁ ପ୍ରଶ୍ନ, ସନାତନ ବିଧି ଅନୁସାରେ ଯେ ଯାହାର ମାନ୍ୟ ବା ପୂଜନୀୟ ସେ ତାର ବହୁସଂଖ୍ୟକ ଇନ୍ଦ୍ରିୟଯୁକ୍ତ ଅଙ୍ଗ-ପ୍ରତ୍ୟଙ୍ଗ ଶରୀର ପ୍ରତ୍ୟକ୍ଷେଓ ଅନ୍ୟ କୌଣସି ଅଙ୍ଗକୁ ତେତେ ଖାତିର ନ କରି କେବଳ ପାଦରେ ମସ୍ତକ ସ୍ପର୍ଶାଦିଦ୍ୱାରା ନମସ୍କାର କରିବାର କାରଣ କଣ ? ଅଧିକାଂଶ ବଶିଷ୍ଟମାନେ ଦେବ ପାଦୋଦକ, ଅଉ ବ୍ୟକ୍ତିବିଶେଷ ବ୍ରାହ୍ମଣାଦି ଓ ଗୁରୁଜନମାନଙ୍କ ପଦଧୂଳି ଓ ପାଦୋଦକ ଗ୍ରହଣ କରିଥାନ୍ତି କାହିଁକି ? ଈଶ୍ୱରଙ୍କ ସୃଷ୍ଟିରେ ନାହିଁ କଣ ? ସେ କରି ନ ପାରନ୍ତି କଣ ? ( ଶଙ୍କରାଚାର୍ଯ୍ୟଙ୍କ ମତାନୁମୋଦିତ ) ବର୍ଣ୍ଣଗୁରୁ ଧର୍ମନେତା ବ୍ରାହ୍ମଣମାନଙ୍କର ଗୃହଦେବତାଙ୍କ ମୁଖ ପଶ୍ଚିମକୁ ହେବାର କାରଣ କଣ ? ଜଗତରେ ସମସ୍ତେ ଅନ୍ୟାନ୍ୟ ସମସ୍ତଙ୍କଠାରୁ ସବୁ ବିଷୟରେ ନିଜର ଶ୍ରେଷ୍ଠତ୍ୱକୁ ବାଞ୍ଛା ଓ ଚେଷ୍ଟା କରୁଥିଲେହେଁ ବିଶେଷତଃ ସନାତନଧର୍ମୀମାନେ ସମସ୍ତଙ୍କଠାରୁ ଓ ନିଜଠାରୁ ମଧ୍ୟ ନିଜ ପୁତ୍ରର ଶ୍ରେଷ୍ଠତ୍ୱରେ ଏକାନ୍ତ ଚେଷ୍ଟା ଏବଂ ସଫଳରେ ଅତି ଆନନ୍ଦିତ ହେବା ଓ ବିପରୀତରେ ବ୍ୟଥିତ ହେବାର କାରଣ କଣ ?

---

# ପୌରାଣିକ ଧର୍ମୋପଦେଶ

୧ ଶମ, ୨ ଦମ, ୩ ଯମ, ୪ ନିୟମ ପ୍ରଭୃତି ସଦ୍ସାଧନା ଶିଥିଳ ହେତୁ ଲୋକମାନଙ୍କର ଆୟୁ ଓ ସତ୍ତ୍ୱ କ୍ଷୀଣ ହୋଇଯିବାରୁ ଭଗବାନ୍ ବ୍ୟାସଦେବ ଭଗବଦ୍‌ବିଭୂତି-ଅବତାର ଧାରଣ କରି ବେଦର ତତ୍ତ୍ୱକୁ ବେଦାନ୍ତ-ରୂପରେ ପରିଣତ କଲେହେଁ ବେଦ-ବେଦାନ୍ତ ସହଜବୋଧ ନୁହେ; ମଧ୍ୟ ତହିଁରେ ସାଧାରଣଙ୍କର ଅଧିକାର ନ ଥିବାରୁ ସେ ସବୁର ଅଧିକାଂଶ ମତକୁ ଭାରତୀୟ ଐତିହାସିକ ଘଟନା ନେଇ ଲକ୍ଷସଂଖ୍ୟକ ଶ୍ଳୋକ-ସମନ୍ୱିତ 'ମହାଭାରତ' ନାମକ ଅଷ୍ଟାଦଶ ପର୍ବାତ୍ମକ 'ପଞ୍ଚମ ବେଦ' ବୋଲି ଅତି ପ୍ରକାଣ୍ଡ ଗ୍ରନ୍ଥ ରଚନା କରି, ତହିଁରେ ନାନାପ୍ରକାର ତତ୍ତ୍ୱ, ସତ୍‌କ୍ରିୟାକଳାପ, ସଦୁପଦେଶ, ନ୍ୟାୟା-ନ୍ୟାୟ କାର୍ଯ୍ୟର ପ୍ରତ୍ୟକ୍ଷ ପ୍ରମାଣ, ରାଜଧର୍ମ, ଦାନଧର୍ମ, ମୋକ୍ଷଧର୍ମ, ଦେଶ-କାଳ-ପାତ୍ର ଭେଦରେ ବ୍ରତୋପବାସାଦି, ବର୍ଣ୍ଣଧର୍ମ, ଆଶ୍ରମଧର୍ମ, ବିଶେଷତଃ ଗୃହସ୍ଥାଶ୍ରମୀ ପକ୍ଷରେ ନାନାପ୍ରକାର ଉପାଦେୟ ସଦୁପଦେଶ ନିହିତ ହୋଇଛି । 'ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ' । ତଦନ୍ତର୍ଗତ ବନପର୍ବରେ ସାକ୍ଷାତ୍ ଧର୍ମଦେବ ବା ଯକ୍ଷ ବକରୂପ ଧାରଣ କରି ଅନୁପମ ଧର୍ମନିଷ୍ଠ ସ୍ୱାତ୍ମଜ ମହାରାଜାଧିରାଜ ଯୁଧିଷ୍ଠିରଙ୍କୁ ଧର୍ମର ଅତି ଉପାଦେୟ ନିଗୂଢ଼ତତ୍ତ୍ୱ ପ୍ରଶ୍ନ କରି-

---

୧ଶମ=ସଦନୁଷ୍ଠାନ ବ୍ୟତୀତ ଇନ୍ଦ୍ରିୟ ଭୋଗ୍ୟ-ବିଷୟମାନଙ୍କରୁ ମନକୁ ନିଗ୍ରହ କରିବା । ୨ଦମ=ସଦନୁଷ୍ଠାନ ବ୍ୟତୀତ ବିଷୟ ଭୋଗରୁ ନିବୃତ୍ତ ହେବା । ୩ଯମ=ଅହିଂସା, ସତ୍ୟ, ଅଚୌର୍ଯ୍ୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ । ୪ନିୟମ=ଜଳ ମୃତ୍ତିକାଦିଦ୍ୱାରା ସର୍ବବିଧ ବାହ୍ୟ ଶୌଚ ଓ କ୍ରୋଧ ଦ୍ୱେଷାଦି ତ୍ୟାଗଦ୍ୱାରା ଅନ୍ତଃକରଣଶୌଚ, ସନ୍ତୋଷ, ତପସ୍ୟା, ଭଗବତ୍‌ତତ୍ତ୍ୱାତ୍ମକ ଶାସ୍ତ୍ର ପଠନ, ଶ୍ରବଣ ଓ ଆଲୋଚନା ଏବଂ ଈଶ୍ୱରଙ୍କଠାରେ ସ୍ଥିରଚିତ୍ତ ।

ଥିଲେ । ଯୁଧିଷ୍ଠିର ସେ ସବୁର ସମୁଚିତ ଉତ୍ତର ଦେଇଥିଲେ । ପ୍ରାପ୍ତ ଶତସଂଖ୍ୟକ ଶ୍ଳୋକ ସମନ୍ୱିତ ( ଧର୍ମତତ୍ତ୍ୱ ମୀମାଂସା ନାମକ ପୁସ୍ତକ ଦ୍ରଷ୍ଟବ୍ୟ ) ସେ ପ୍ରଶ୍ନୋତ୍ତର ମଧ୍ୟରେ ଅକ୍ଷୟ-ନରକ ଭୋଗର ପ୍ରଶ୍ନୋତ୍ତର; ଯଥା—

ଯକ୍ଷ ଉବାଚ

"ଅକ୍ଷୟୋ ନରକଃ କେନ ପ୍ରାପ୍ୟତେ ଭରତର୍ଷଭ !
ଏତନ୍ମେ ପୃଚ୍ଛତଃ ପ୍ରଶ୍ନଂ ତଚ୍ଛୀଘ୍ରଂ ବକ୍ତୁମର୍ହସି ।"

ଯକ୍ଷରୂପୀ ଧର୍ମ ପଚାରିଲେ, 'ହେ ଭରତ-ବଂଶ-ପ୍ରବର ଯୁଧିଷ୍ଠିର ! କେଉଁ ଲୋକ ଅକ୍ଷୟ-ନରକ ଭୋଗ କରେ ? ମୋହର ଏହି ପ୍ରଶ୍ନର ଉତ୍ତର ଶୀଘ୍ର ଦିଅ ।'

ଯୁଧିଷ୍ଠିର ଉବାଚ

"ବ୍ରାହ୍ମଣଂ ସ୍ୱୟମାହୂୟ ଯାଚମାନମକିଞ୍ଚନଂ ।
ପଶ୍ଚାନ୍ନାସ୍ତୀତି ଯୋ ବ୍ରୂୟାତ୍ ସୋଽକ୍ଷୟଂ ନରକଂ ବ୍ରଜେତ୍ ॥
ବେଦେଷୁ ଧର୍ମଶାସ୍ତ୍ରେଷୁ ମିଥ୍ୟା ଯୋ ବୈ ଦ୍ୱିଜାତିଷୁ ।
ଦେବେଷୁ ପିତୃକର୍ମେଷୁ ସୋଽକ୍ଷୟଂ ନରକଂ ବ୍ରଜେତ୍ ॥
ବିଦ୍ୟମାନେ ଧନେ ଲୋଭାତ୍ ଦାନଭୋଗବିବର୍ଜିତଃ ।
ପଶ୍ଚାନ୍ନାସ୍ତୀତି ଯୋ ବ୍ରୂୟାତ୍ ସୋଽକ୍ଷୟଂ ନରକଂ ବ୍ରଜେତ୍ ॥"

ଯୁଧିଷ୍ଠିର ଉତ୍ତର ଦେଲେ, 'ଯେ ଦରିଦ୍ର ଯାଚକ-ବ୍ରାହ୍ମଣକୁ ଆହ୍ୱାନ କରି ପରେ ନାହିଁ କରେ ଓ ଦିଏ ନାହିଁ, ସେ ଅକ୍ଷୟ-ନରକ ଭୋଗ କରେ । ବେଦରେ, ଧର୍ମଶାସ୍ତ୍ରରେ, ବ୍ରାହ୍ମଣଠାରେ, ଦେବତା ଏବଂ ପିତୃକର୍ମରେ ଯେ ମିଥ୍ୟାଜ୍ଞାନ କରେ ସେ ଅକ୍ଷୟ-ନରକ ଭୋଗ କରେ । ଧନ ଥାଇ ଯେ ନାହିଁ ବୋଲି କହେ ଏବଂ ନିଜେ ଉପଭୋଗ କରେ ନାହିଁ ଆଉ ଉପଯୁକ୍ତ ପାତ୍ରକୁ ଦିଏ ନାହିଁ, ସେ ଅକ୍ଷୟ-ନରକ ଭୋଗ କରେ ।'

---

# ବର୍ତ୍ତମାନ ଜଗତର ହାଲଚାଲ ଓ ବିଭ୍ରାଟ

ଭ୍ରାତୃବଧ-ସନ୍ତପ୍ତ-ଧୃବ ବହୁସଂଖ୍ୟକ ଯକ୍ଷମାନଙ୍କୁ ବଧ କରିବାର ଦେଖି, ଆଦିପୁରୁଷ ସ୍ୱାୟମ୍ଭୁବ ମନୁ କହିଲେ, "ହେ ଭ୍ରାତୃବତ୍ସଳ ଧ୍ରୁବ ! ଯକ୍ଷମାନଙ୍କ ମଧ୍ୟରୁ କେହି ଜଣେ ତୁମ୍ଭର ଭାଇକୁ ବଧ କରିଥିବ; କିନ୍ତୁ ଭ୍ରାତୃବଧାନଳରେ ସନ୍ତପ୍ତ ହୋଇ ଜଣକର ବଧରେ ଓ ଜଣକର ଅପରାଧରେ ବହୁସଂଖ୍ୟକ ପ୍ରାଣୀ କିପରି ବଧ କଲ ?"

"ନନ୍ୱେକାସ୍ୟାପରାଧେନ ପ୍ରସଙ୍ଗାତ୍ ବହବୋ ହତାଃ ।
ଭ୍ରାତୃବଧାଭିତପ୍ତେନ ତ୍ୱୟାଙ୍ଗ ଭ୍ରାତୃବତ୍ସଳଃ ।" ୯ ଅଃ୪ ଭାଃ୪

ବର୍ତ୍ତମାନ ଆମ୍ଭ ଦେଶରେ ଓ ଅନ୍ୟାନ୍ୟ ଦେଶରେ ଲୋଭ-ବଶରୁ ଯେପରି ପ୍ରତିକାର-ରହିତ ବହୁସଂଖ୍ୟକ ମହାପ୍ରାଣୀମାନଙ୍କୁ ଉତ୍କଟ-ପୀଡ଼ା ଦେଇ ଜଣକ ବଧରେ ଓ ଜଣକ ଅପରାଧରେ ବହୁସଂଖ୍ୟକ ନିରୀହ ମହାପ୍ରାଣୀମାନଙ୍କୁ ବଧ କରାଯାଉଛି, ଅନୁସନ୍ଧାନ କରାଯାଉ । କିନ୍ତୁ ଭିନ୍ନ ପ୍ରକାର ପ୍ରତିକ୍ରିୟା ହୋଇ-ଥିଲେ ସମୁଚିତ ଦଣ୍ଡଦ୍ୱାରା ଲୋକଶିକ୍ଷା ଓ ଶାନ୍ତି ଆସିଥାନ୍ତା । ଜଡ଼ବିଜ୍ଞାନାତ୍ମକ ଉନ୍ନତିଶୀଳମାନେ ବର୍ତ୍ତମାନ ଯେପରି ପ୍ରତିକ୍ରିୟା-ରହିତ ନିରୀହ ମହାପ୍ରାଣିମାନଙ୍କୁ ବିନାପରାଧରେ ଗ୍ରାମ, ନଗର, ଗୃହ, ଅଟ୍ଟାଳିକା ସହିତ ଧ୍ୱଂସ କରୁଛନ୍ତି, ସେମାନେ ଯେ ଭାରତୀୟଙ୍କୁ ଧ୍ୱଂସ କରି ନ ପାରନ୍ତି ଏଥିରେ ସନ୍ଦେହ କଣ ? ଯେଉଁ ସାମୁଦ୍ରିକ ଜନ୍ତୁମାନେ ବୋଇତ ଗିଳି ଦେଇପାରନ୍ତି ସେମାନେ ଖଣ୍ଡେ କାଠୁଆ ବା ଖଣ୍ଡେ କାଠ ଗିଳିଦେବା ଅସମ୍ଭବ କଣ ? ପରକାଳ-ବିଶ୍ୱାସ-ବିହୀନ ଉନ୍ନତ-ମାନେ କୂଟନୀତିଦ୍ୱାରା କେବଳ ଅନ୍ୟକୁ ଦେଖାଇବାପାଇଁ ଧର୍ମ, ନ୍ୟାୟ, ଆଇନ ଓ ସନ୍ଧି ପ୍ରଭୃତି ବିଧିର ପ୍ରଚାର କରୁଥାନ୍ତି; କିନ୍ତୁ ସମୟକ୍ରମେ ସବୁ କଚାଡ଼ି ଦେଇ ନିଜର ଶ୍ରେୟ ଓ ସୁବିଧା

ହାସଲ ସକାଶେ ଦେଖିଲ କାମ କରନ୍ତିଅନ୍ତି । ବର୍ତ୍ତମାନ ଭାରତୀୟଙ୍କ ଅବସ୍ଥାକୁ ଏବଂ ବିଦେଶୀୟ ବିପ୍ଳବକୁ ଅନୁଧ୍ୟାନ କଲେ ବ୍ରିଟିଶ-ସମ୍ବନ୍ଧରୁ ଅଲଗା ହୋଇଯିବା ବା ପୂର୍ଣ୍ଣ ସ୍ୱାଧୀନତା କଦାଚ ସମୀଚିନ ନୁହେ । ବିଦେଶୀୟ, ବିଧର୍ମୀ ଓ ହିନ୍ଦୁ-ଭିନ୍ନ ବା ବିପରୀତାଚାରମାନେ ଭାରତୀୟଙ୍କ ଅନିଷ୍ଟ କରି ପାରନ୍ତି । ବର୍ତ୍ତମାନ ଭାରତୀୟ ନେତାମାନେ ଯେ ମତ ପ୍ରଚାର କରୁଛନ୍ତି ତାହା ଯଦି ପରିବର୍ତ୍ତନ ନ ହୁଏ, ତେବେ ସମ୍ପୂର୍ଣ୍ଣରୂପେ ବା ସ୍ୱାଧୀନତା ହାସଲ ପରେ, ଭିନ୍ନ ପ୍ରଦେଶ ଓ ସମ୍ପ୍ରଦାୟ ନେଇ ଭାରତୀୟମାନେ ବିପ୍ଳବୀ ବନି ଆପଣା ଆପଣା ମଧ୍ୟରେ ହଣାହଣି ହୋଇ ଧ୍ୱଂସ ହେବା ନିଶ୍ଚୟ । କେତେକ ଅଚଳ ବୃଦ୍ଧ ଆଉ ପରାପର-ଜ୍ଞାନ ହୃଦୟରେ ଉଦ୍ଭିତ ହୋଇ ନ ଥିବା ଶିଶୁ ରହିପାରନ୍ତି । ସେମାନେ ନିର୍ଜନ-କନ୍ଦରାସ୍ଥ ସାଧ୍ୱାଧିକଙ୍କ ନିୟନ୍ତ୍ରଣଦ୍ୱାରା ଶୃଙ୍ଖଳିତ-ନିୟମରେ ପରିଚାଳିତ ହେବା ସମ୍ଭବ । ଅନ୍ୟାନ୍ୟ ବିପ୍ଳବୀମାନେ ମତ ପରିବର୍ତ୍ତନ ନ କଲେ ସମସ୍ତେ ଧ୍ୱଂସ ହେବା ନିଶ୍ଚୟ ! ଅତଏବ ସାବଧାନ ! ଶୁଣାଅଛୁ ଇଉରୋପରେ ବହୁସଂଖ୍ୟକ ସାମ୍ପ୍ରଦାୟିକ ମତ ପ୍ରଚଳିତ ହୋଇ ନିୟମବଦ୍ଧ-ଶୃଙ୍ଖଳା ହୀନରୁ ନାମ ସୁଦ୍ଧା ଲୋପ ପାଇଛି । କିନ୍ତୁ ବହୁକାଳାତୀତ ବା ଅନନ୍ତ-କାଳରୁ ନିୟମବଦ୍ଧ ଶୃଙ୍ଖଳା ହେତୁ ଭାରତରେ ସନାତନଧର୍ମ ଦେଦୀପ୍ୟମାନ ।

କଂଗ୍ରେସ ରାଜ୍ୟ-ଶାସନ-ପାଳନ-କ୍ଷମତା ପାଇଛି ବୋଲି କେତେକ ବୃଥା ହେଣ୍ଡି ମାରୁଛନ୍ତି; କିନ୍ତୁ ତାହାର ଉପମା ହେଉଛି 'ପେଡ଼ି ଭିତରେ ଗୋଟାଏ ଭାରି ବଡ଼ ବିଷାକ୍ତ ସର୍ପ କିମ୍ବା ଗୁଡ଼ାଏ ସ୍ୱର୍ଣ୍ଣ-ରତ୍ନାଦି ଥିବା ଛପ ପରି'; କିନ୍ତୁ ଗୁଙ୍ଗୁଡ଼ି କାଢ଼ି ଦେଖିଲାବେଳକୁ ଛମଣାଟାଏ ବା ଅଙ୍ଗାର ତୁଷ ଗୁଡ଼ାଏ

ମାତ୍ର । ଏକମାତ୍ର ଗାନ୍ଧୀଙ୍କ କଥାରେ ସମସ୍ତେ ଚଳୁଥିଲେ, କଂଗ୍ରେସରଉନ୍ନତ ଏବଂ ଭାରତୀୟଙ୍କର କି ଉପକାର ହୋଇଥାନ୍ତା ତାହା କଂଗ୍ରେସୀୟମାନେ ଭାବିପାରିଲେ ନାହିଁ । ଯଥା; ସାଧାରଣ ବ୍ୟବହାର୍ଯ୍ୟ କି ସ୍ୱଦେଶୀ କି ବିଦେଶୀ ଜିନିଷ ଉପରେ ଅତି ଉତ୍କୃଷ୍ଟ-କର ଆଦାୟଦ୍ୱାରା ଭାରତୀୟଙ୍କ ସାର ଶୋଷଣ ହୋଇ ବିଦେଶକୁ ଚାଲିଛି । ସୈନ୍ୟ ଓ ପୁଲିସମାନେ ସାଧାରଣଙ୍କ କଥା କିଏ ପଚାରେ କାଉନ୍‌ସିଲ ମେମ୍ବର ଓ ମନ୍ତ୍ରୀମାନଙ୍କୁ ବାନ୍ଧି ନେଇପାରନ୍ତି । ଦେବସ୍ୱାଦ ସର୍ବସାଧାରଣଙ୍କଠାରୁ ରାଜସ୍ୱ ଓ ନାନା ପ୍ରକାର କର ଏବଂ ଟିକସ ପ୍ରଭୃତି ଯାହା ଆଦାୟ ହୁଏ ତହିଁରୁ କେତେକ ମାତ୍ର ଧୋବଲଠକ ଖାନ୍ତି କିନ୍ତୁ ଅଧିକାଂଶ ବିଦେଶକୁ ଯାଏ । କର୍ତ୍ତୃତ୍ୱଶକ୍ତିରହିତ କଳଚାଳିତ ରାଜ-ବର୍ଗର, ଉପର ସଙ୍କେତ ଅନୁସାରେ ବା ବ୍ୟତିକ୍ରମ ଭାବରେ ଚାଲିଛି । ରକ୍ଷା ଓ ସ୍ୱାସ୍ଥ୍ୟ ସକାଶେ ନିଯୁକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ କେତେକଙ୍କର ସମୟେ ସମୟେ ଯାହା ଉତ୍କଟ କାର୍ଯ୍ୟ ଶୁଣାଯାଏ, ତହିଁରେ ମନ ଅତି ବ୍ୟାକୁଳ ଓ କ୍ଷୋଭିତ ହୋଇ ଥାଏ । 'ସବୁ ଚୋର, ମାତ୍ର କାହିଁରେ ହାତ ଦେବୁ ନାହିଁ' ପରି ମନ୍ତ୍ରୀମାନେ ନିଜେ, କମ ନେଲେହେଁ ଉପର କଥା କିଏ ପଚାରେ ? ନାମ ମାତ୍ରକ ଅଧୀନସ୍ଥ କର୍ମଚାରୀମାନଙ୍କ ମୋଟା ଦରମା ଓ ଚାକିରି ଉପରେ ହସ୍ତକ୍ଷେପ କରିବାର ଜୋର ନାହିଁ । 'ଲୋଟା ଅସରପା ଉପରେ କାଣୀ-ବରାଡ଼ିର ଦୌରାତ୍ମ୍ୟ ପରି' କେତେକ ବିନିର୍ବ୍ୟୟ ହେଉଥିବା ସଦନୁଷ୍ଠାନାତ୍ମକ ମଠ-ମନ୍ଦିର-ସମ୍ପତ୍ତି ଯଦୁମଣି ପଦ୍ୟାନୁସାରେ 'ଦେଲ ଯାହା ନେଲ ତାହା, ଏଥିକୁ କିପାଇଁ ମହାଦାତାପଣେ ପତାକା ବାନ୍ଧିଛ ହେ' ଅଧିକାଂଶ ଧୋବଲଠକ ଗିଳିବେ, କିନ୍ତୁ ମାତ୍ର ଅନ୍ୟ କାର୍ଯ୍ୟରେ ଲାଗିପାରେ । ଅନ୍ୟ କିଛି ସଦନୁଷ୍ଠାନ ଯେ ହେବ ତାହା ତ ସମ୍ଭବ ନୁହେ । 'ହିଣ୍ଡିକା ମାରି ବଣି ପୋଷିବା ପରି' ନିର୍ବାହ

ସାଧାରଣଙ୍କ ଉପରେ ପ୍ରକାରାନ୍ତରେ କର ବସିଲେ, କେତେକ ଧୋବଲଠକ ଗିଳିବେ, 'ବୁଣିଲି ଓଶୋଇଶ, ପାଇଲି ବିଂଶ; ବାପ-ପୁଅ ଦୁହେଁ କୁଣ୍ଡିଆ-କୁଣ୍ଡେଇ ଅଜ ଗଉଣୀଏ କାହୁଁ ଅଇଲ ?' ପରି ଯାହା କିଛି ହୋଇପାରେ ତା ମା ଗଙ୍ଗା ଜାଣେ । ( ପ୍ରକୃତ ପ୍ରତିକାର ନିବେଦନ ପୁସ୍ତକରେ ନିହିତ ) । ଇହ-ଜନ୍ମକୃତ ସବିଶେଷ ପାପ-ପୁଣ୍ୟର ଫଳ ଇହଜନ୍ମରେ ବା ଜନ୍ମଜନ୍ମାନ୍ତରେ ନିଶ୍ଚୟ ଭୋଗ କରିବାକୁ ହେବ । ଏ ଭାବ ହୃଦୟରେ ଜାଗ୍ରତ ଓ ଦୃଢ଼ୀଭୂତ ନ ହେଲେ ବର୍ତ୍ତମାନ ବିଧର୍ମୀ ବିଦେଶୀୟମାନେ ଯେପରି ଅତି ଉତ୍କଟ ବିପ୍ଳବରେ ମାତିଛନ୍ତି, ସମୟାନୁସାରେ ଭାରତୀୟମାନଙ୍କ ମଧ୍ୟରେ ତାହା ଘଟିବ ନାହିଁ କି ? କଂଗ୍ରେସ ନେତା ବା ଗୁଳକମାନଙ୍କ ହୃଦୟରେ ସେ ଭାବ ଜାଗ୍ରତ ବା ପ୍ରଚୁର ହେଉଛି କି ? କେତେକ ନେତା ଭାରତୀୟଙ୍କ ଭୌତିକ-ଉନ୍ନତିକର-କାର୍ଯ୍ୟନିରତ ଥିଲେହେଁ ସନାତନଧର୍ମ-ଶାସ୍ତ୍ରୋକ୍ତ ବିଶ୍ୱାସଶୂନ୍ୟ ଓ ଅଧିକାଂଶଙ୍କର ହୃଦୟ ମଳିନତା ଏବଂ ସ୍ୱାର୍ଥପରତା ହେତୁ 'ଦୁଇ ନାବେ ଗୋଡ଼ ଦିଆ' ପରି ହୋଇ ଗୋପବନ୍ଧୁଙ୍କ ପରି କେହି ଉଠୁଚି ପାରୁଛନ୍ତି କି ? ଭୋଜରାଜାଙ୍କ ସଭାରେ ବ୍ରହ୍ମରାକ୍ଷସ ପ୍ରଶ୍ନ ଯଥା—"ତତଃ କିଂ, ତତଃ କିଂ, ତତଃ କିଂ, ତତଃ କିଂ ।" କାଳୀଦାସଙ୍କ ଉତ୍ତର ଯଥା—

"ରସାଢ଼୍ୟପୁଂମାନ୍ ଭାରତୀଭାବହୀନଃ<br>
ସୁ-ସଙ୍ଗୀତ ସଙ୍ଗୀ ସ୍ୱରେଣ ପ୍ରହୀଣଃ ।<br>
ଦରିଦ୍ରୋଽଭିମାନୀ ଧନୀ କୃପଣଦାନୀ<br>
ତତଃ କିଂ ତତଃ କିଂ ତତଃ କିଂ ତତଃ କିଂ ।"

ରୂପବାନ୍ ରସିକ କିନ୍ତୁ ମୂର୍ଖ, ଉତ୍ତମ ସଙ୍ଗୀତ-ସଙ୍ଗୀ କିନ୍ତୁ ଘଗଡ଼ାସ୍ୱର, ଦରିଦ୍ର—ଅଭିମାନୀ, ଧନୀ ଅଥଚ ଅଦାନୀ ହେଲେ ସବୁ ଅକାରଣ ବା ବ୍ୟର୍ଥ । ସେହିପରି ଆଉ ଥରେ ପ୍ରଶ୍ନ ଯଥା— "ସା କିଂ ସା କିଂ ସ କିଂ ସ କିଂ ।" ଉତ୍ତର—

"ଯା ଲୋଭାଦ୍ ଯାପରଦ୍ରୋହାଦ୍ ଯୋଽପାତ୍ରେ ଯଃ ପରାର୍ଥକଃ ।
ମୈତ୍ରିଲକ୍ଷ୍ମୀବ୍ୟୟଃ କ୍ଲେଶଃ ସା କିଂ ସା କିଂ ସ କିଂ ସ କିଂ ॥"

'ଲୋଭବଶରେ ମିତ୍ରତା, ପରର ଅନିଷ୍ଟପାଇଁ ଧନ ଓ ସମୟ ବ୍ୟୟ, ଅପାତ୍ରରେ ଦାନ, ପରପାଇଁ ପାପ-କ୍ଳେଶ ଭୋଗ ଅନୁଚିତ ।'

ବର୍ତ୍ତମାନ ଭାରତୀୟଙ୍କର କର୍ତ୍ତବ୍ୟ କର୍ମ ହେଉଛି 'କାନ୍ଦୁଥିବ, ଯାହା ପାଉଥିବ, ତାହା ବାନ୍ଧୁଥିବ ।' ସମସ୍ତ ବିଷୟରେ ଯେ ସାମାନ୍ୟକୁ ଏବଂ ପରଂପରାଗତ ବିଧିବିଧାନକୁ ହେୟ ଜ୍ଞାନ କରି କେବଳ ବଡ଼କୁ ଆଶା କରେ ତାହାର ଉନ୍ନତି ହୋଇ ନ ପାରେ । "ଅତୋ ଭ୍ରଷ୍ଟସ୍ତତୋ ଭ୍ରଷ୍ଟଃ ।"

ସାଧାରଣଙ୍କ ଶ୍ରେୟ ବାହାନାରେ ଯାହା କିଛି ହୁଏ, ଯଥା; ବିଦ୍ୟାଶିକ୍ଷା, ସ୍ୱାସ୍ଥ୍ୟ, ଜଳାଶୟ, ବନ୍ଧ ପ୍ରଭୃତି ତାହା ତ 'ତେଲଅ-ମୁଣ୍ଡରେ ତେଲ ପର ।' ପୁଣି ଯେ ଜମିରେ ହେବ ତାକୁ ମାଲିକ ବିନା ପଇସାରେ ବିକିଦେଇ ଖଜଣା ପ୍ରଭୃତି ସେ କାଳକାଳକୁ ଦେଉଥିବ; କିନ୍ତୁ ତହିଁର ଜଳ-ଫଳ ପ୍ରଭୃତିରେ ହାତ ଦେଇପାରିବ ନାହିଁ । ଖର୍ଚ୍ଚ ପାଇଁ ଉପରୁ ଯାହା ମଞ୍ଜୁର ହୁଏ ସ୍ଥାନୀୟ ଲୋକେ ତ ଭାଗ ଦିଅନ୍ତି । ଏ ସବୁଥିରୁ ପରଗୁଳକ ଓ ଭିତରିଆ କଣ୍ଟ୍ରାକ୍ଟରେ ପ୍ରଭୃତି ଧୋବଲଠକ ଅଧିକାଂଶ ଗିଳନ୍ତି । କାର୍ଯ୍ୟ ଯାହା ହୁଏ ତା ମା ଗଙ୍ଗା ଜାଣେ । ବିଶେଷତଃ ବିଭକ୍ତାତ୍ମକ ସାମ୍ପ୍ରଦାୟିକ ଭାଗବଣ୍ଟା-ବିଭକ୍ତ-ଆଇନ ଯଥା ଅଳ୍ପସଂଖ୍ୟକ ପେଟପୂରି ଖାଇବେ, ଅନ୍ୟମାନେ ଅଧାଗ୍ରାସ । ସୁତରାଂ ଉପଯୁକ୍ତ ଯୋଗ୍ୟତାନୁଯାୟୀ ବ୍ୟକ୍ତିବିଶେଷ କାର୍ଯ୍ୟକ୍ଷେତ୍ରରେ ନିଯୁକ୍ତ ଓ ପୁରସ୍କୃତ ସର୍ବତୋଭାବେ ବିଧେୟ ।

ଚକ୍ର ମଧ୍ୟରେ ସବିଶେଷ ଶ୍ରମଦ୍ୱାରା ହାଡ଼ବାଡ଼ ହେଉ ଖଣ୍ଡିଏ ଖଣ୍ଡିଏ କିଆରିରେ ଏକ ପ୍ରକାର କୃଷି ଭଲ ଦେଖାଯାଏ;

କିନ୍ତୁ ଗୈାବର୍ଦ୍ଧନପାକ ଯାଉଛି ତା । ଅନୁମାନ ଅନୁଯାୟୀ ମିଳିମିଶି ସ୍ଥଳବିଶେଷରେ ଗୋଟିଏ ଗୋଟିଏ ଗରିବଙ୍କ ହୋଇଥିଲେ, ଏକତମାମ ସମସ୍ତଙ୍କର ଅପେକ୍ଷାକୃତ ଅଳ୍ପାୟାସରେ ପ୍ରତିବର୍ଷ ବେଶ୍ କୃଷି ଅଦାୟ ହେଉଥାନ୍ତା । ଧୋଇ-ମରୁଡ଼ିଙ୍କ ଓ ଅନ୍ୟ ଫସଲକୁ ଉପକାର ମଧ୍ୟ ହେଉଥାନ୍ତା । ରାଜ୍ୟପାଳନ ସମ୍ବନ୍ଧରେ ରାଜା ମଙ୍ଗୁଆଳ, ପ୍ରଜା ବାହକ । ବାହକ ବାହୁଛନ୍ତି କିନ୍ତୁ ଉପଯୁକ୍ତ ମଙ୍ଗୁଆଳ ଅଭାବ ହେତୁ ପବନ ବ୍ୟତିକ୍ରମରେ ନାବ ଏଣେତେଣେ ଗତ କରୁଛି । ଚୋର ଓ ମର୍କଟାଦିଙ୍କ ଦୌରାତ୍ମ୍ୟରେ ଅଧିକାଂଶ ପନିପରିବା ହୋଇପାରୁ ନାହିଁ । କେହି କଲେ ନଷ୍ଟ ହୋଇଯାଉଛି । ନିବାରଣ ସକାଶେ ଉପରୁ ଉହା ଶୁଣାଯାଏ, ଲୋକବିଶେଷ ଆପତ୍ତି କରିବାରୁ ପ୍ରତିକାର ହୋଇପାରୁ ନାହିଁ । କିନ୍ତୁ ସେହିମାନଙ୍କ ଆପତ୍ତି ସତ୍ତ୍ୱେ ମଠ-ମନ୍ଦିର ସମ୍ବନ୍ଧେ ବିପରୀତ ହେଉ ନାହିଁ କି ? ଓହୋ ସଦ୍‌ବ୍ୟୟ ବନ୍ଦ ହୋଇ ଟଙ୍କା ଅଦାୟ ହେବ ପରି ? ରଇତି-ଜମିରୁ ଜମିଦାର ସତ୍ତ୍ୱ ଉଠିଯିବାରୁ ଅଭାବବେଳେ ବନ୍ଧାଛନ୍ଦା ପରିବର୍ତ୍ତରେ 'ରୋକ୍ଷମ ତ ପଡ଼ିବ ନାହିଁ, ସୁତରାଂ ସମୟକ୍ରମେ ସେତିକି ଟଙ୍କାରେ ତେତିକି ଜମି କିଣିନେବା' ଭାବ କବଳର ସୀମା ନାହିଁ । (ମାନବ ଅଭାବଗ୍ରସ୍ତର ସଭାବ କେବେ ହୁଏ କି ?) ଅତଃ ରଇତ ଜମିଶୂନ୍ୟ; ସର୍କାରର ବିଶେଷ ଲାଭ । (ନିବେଦନ ଦ୍ରଷ୍ଟବ୍ୟ ) ।

ବିଶେଷତଃ ଜଣେ ସ୍ୱାଧୀନଚେତା ବ୍ୟକ୍ତି ଦଶ-ପଚାଶ ବା ବହୁସଂଖ୍ୟକ ଦେଶ-ପ୍ରଦେଶ ଶୃଙ୍ଖଳାରେ ଶାସନ ପାଳନ କରିପାରେ; କିନ୍ତୁ ଗୋଟିଏ ଦେଶର ସମସ୍ତ ଲୋକ ଅନ୍ୟ ଗୋଟିଏ ଦେଶ ବା ପ୍ରଦେଶସ୍ଥ ଲୋକଙ୍କୁ ଶୃଙ୍ଖଳାରେ ଶାସନ ପାଳନ କରି ନ ପାରନ୍ତି । ତତଃ ଭାରତୀୟମାନେ ସବୁ ପ୍ରକାର ଅଶାନ୍ତି, ଅବନତି ଓ ଦରିଦ୍ରତା ଦୋଷରେ ବିଶୃଙ୍ଖଳାବିଶତଃ ନାନାପ୍ରକାର ଦୁଃଖ ସହି ହାଇଁପାଇଁ ହୋଇ ଷଡୁଛନ୍ତି ।

ଏ ସବୁର ଏକମାତ୍ର ପ୍ରତିକାର ସନାତନଧର୍ମ ଶାସ୍ତ୍ରୋକ୍ତ ବିଧିବିଧାନ ଓ କ୍ରିୟାକଳାପରେ ନିୟମିତ ଭାବେ ଚଳିଲେ ସବୁ ସୁଖ ଓ ଶାନ୍ତି ମିଳିବ; ମଧ୍ୟ ବର୍ଣ୍ଣଗତ ବା ଜାତିଗତ ବ୍ୟବସ୍ଥାରେ ବେକାର ଅବସ୍ଥା ଘଟିବ ନାହିଁ । ବର୍ତ୍ତମାନ ବ୍ରିଟିଶ୍-ବାହୁଚ୍ଛାୟାରେ ଭାରତ ନିର୍ଭୟ ଥିଲେହେଁ (ଈଶ୍ୱର ନ କରନ୍ତୁ) ଯେତେବେଳେ ତାଙ୍କ ଦେଶରେ ଅନ୍ୟାନ୍ୟ ବିପ୍ଳବମାନେ ବିଭ୍ରାଟ ଲଗାଇଦେବେ, ସେତେବେଳେ ସେ ନିଜ ଦେଶକୁ ସମ୍ଭାଳିବେ ନା ଏ ଦେଶକୁ ସମ୍ଭାଳିବେ ? ଭାରତ ସ୍ୱାଧୀନ ହୋଇ ବିଲାତପରି ନୂତନ ଧରଣର ଯୁଦ୍ଧ-କୌଶଳକ୍ଷମ ହୋଇ ସମାନ କ୍ଷମତାରେ ମିଳିମିଶି ଚଳୁଥିଲେ, ଅନ୍ୟ ବିପ୍ଳବୀ-ରାଜଶକ୍ତି ବିଲାତ ବା ଭାରତକୁ ଶତ୍ରୁଦୃଷ୍ଟିରେ ଚାହିଁ ପାରନ୍ତେ କି ? ଅତଃ ପୂର୍ବରୁ ସାବଧାନ ହେବା ସମୁଚିତ । ବର୍ତ୍ତମାନ ଭାରତୀୟଙ୍କର କର୍ତ୍ତବ୍ୟ ହେଉଛି ବିଦେଶୀୟ-ବିଭ୍ରାଟ ସମାଧାନ ପୂର୍ବରୁ ଦେଶ-କାଳ-ପାତ୍ରକୁ ଅନୁମାନ କରି ବିଦେଶୀୟ କଳକୌଶଳାନୁଯାୟୀ ଯୁଦ୍ଧବିଦ୍ୟାରେ ଭାରତୀୟଙ୍କୁ ଶିକ୍ଷିତ କରାଇ ଜାଗ୍ରତ ରହିବା । ସେ ପର୍ଯ୍ୟନ୍ତ ନନ୍‌କୋପରେସନ୍ ବର୍ତ୍ତମାନ ପରି ବା ଅଳ୍ପରେ ବିଚକ୍ଷଣ ଭାବରେ ପ୍ରୟୋଗ ହେବା ଉଚିତ ।

ଅସହଯୋଗ ଯେ ଆମ ଦେଶରେ ନ ଥିଲା ତାହା ନୁହେ । ସେ ହେଉଛି ସନାତନ ଧର୍ମର ତୀକ୍ଷ୍ଣ ମମତାତ୍ମକ ରକ୍ତଗତ-ସ୍ୱଭାବ । ଅନ୍ୟାଚ୍ଛ ଓ ଅମାନିଆ ହେତୁ ଗୃହେ ଗୃହେ, ଗ୍ରାମେ ଗ୍ରାମେ, ସ୍ୱ ସ୍ୱ ଗୋଷ୍ଠିରେ, ପ୍ରଦେଶେ ୨ ଏକଘରିକିଆ ବାଡ଼ ବାଡ଼ ନିଆଁ ପାଣି ରୋକ, ସମ୍ଭାଷଣ-ବର୍ଜିତ ପ୍ରଭୃତି ବରାବର ଥିଲା. ବର୍ତ୍ତମାନ ମଧ୍ୟ ହିନ୍ଦୁମାନଙ୍କ ସମାଜରେ ବରାବର ଚଳୁଛି; କିନ୍ତୁ ବ୍ୟାପକ-ଭାବରେ ନ ଥିଲା । ସନାତନ-ଧର୍ମ-ନିରତ ରକ୍ତଗତସମ୍ଭୂତ ମହାତ୍ମା ଗାନ୍ଧୀ ନିଜର ସାଧନା ଓ ଆଧୁନିକ ପ୍ରଚଳିତ କୂଟାତ୍ମକ ରାଜନୈତିକ-ଚାତୁରୀ

କୌଶଳରେ ବ୍ୟାପକଭାବରେ ତାହା ଚଳାଇ ପାରିଛନ୍ତି । ତତଃ ସେ ବିଷୟରେ ସେ ମହାତ୍ମା ପଦବାଚ୍ୟ । ସେ ଭାରତୀୟଙ୍କ ଶ୍ରେୟ ସକାଶେ କୌଣସି ରାଜପ୍ରତିନିଧିଙ୍କଠାରେ ଯାହା ଦାବି କରିଥିଲେ ; ମଧ୍ୟ କହିଥିଲେ କି ଏହା ନ ହେଲେ ମୁଁ ଏପରି ଏକ ପ୍ରଥା ବାହାର କରିବି ଯଦ୍ୱାରା ଜଗତରେ ମହାବିଭ୍ରାଟ ଘଟିବ । ତତଃ ଅସହଯୋଗ ହୋଇ ଜଗତର ଅନ୍ୟାନ୍ୟ କେତେକ ଦେଶ-ପ୍ରଦେଶରେ ଏବଂ ଅଗ୍ନିକି ବାୟୁ ସହାୟ ପରି ନୂଆ-ଆଇନ ସାହାଯ୍ୟଦ୍ୱାରା ଭାରତର ସମସ୍ତ ଦେଶ ପ୍ରଦେଶସ୍ଥ ଘରେ ଘରେ, ଗ୍ରାମେ ଗ୍ରାମେ, ମଠ-ମନ୍ଦିର, ରାଜା-ମହାରାଜା, ଜମିଦାର-ମକଦ୍ଦମ-ପ୍ରଜା, ପତି-ପତ୍ନୀ, ପିତା-ପୁତ୍ର, ଶିକ୍ଷକ-ଛାତ୍ର ବା ଗୁରୁ-ଶିଷ୍ୟ, କୃଷକ-ମୂଲିଆ, କାରଖାନାଦାର-ଶ୍ରମିକ, ଖାଉନ୍ଦ-ଚାକର, ସେବ୍ୟ-ସେବକ, ଭାଇ-ଭାଇ, ଶାଶୁ-ଶ୍ୱଶୁର, ମାତା-ଦୁହିତା, ବନ୍ଧୁ-ବାନ୍ଧବ, ଇଷ୍ଟ-ମିତ୍ର, ଉଚ୍ଚ-ନୀଚ, ଦୋକାନୀ-ଗ୍ରାହକ ପ୍ରଭୃତି ସମସ୍ତେ ବିଭ୍ରାଟରେ ମାତି ଅଶାନ୍ତିରୂପ-ତପ୍ତାନଳରେ ସନ୍ତପ୍ତ ହୋଇ ଜଳୁଛନ୍ତି । କିନ୍ତୁ ଗାନ୍ଧିଙ୍କର ଯେ ଅତୁଳନୀୟ ଶକ୍ତି ତଦ୍ଦ୍ୱାରା ସନାତନ-ଧର୍ମ-ବିଧି ଓ ସାଂସାରିକ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟ ଶୃଙ୍ଖଳାରେ ସମାଧାନ ନ ହୋଇ ଉପରୋକ୍ତ କ୍ରିୟା ଓ ସନାତନ-ଧର୍ମଗତ ବିଧିବିଧାନରେ ଯେ ବିଭ୍ରାଟ ଘଟୁଛି ତାହା ସଙ୍ଗତ ବୋଲି ବୋଧ ହେଉ ନାହିଁ । ଭିତରେ କପଟ ଅଛି କି ? କିନ୍ତୁ 'କପଟକୁ ଚପଟ ସାଙ୍ଗିକି ମାଙ୍ଗି' । ତତଃ କ୍ଷୋଭ ହେଉଛି । ବର୍ତ୍ତମାନ କୃଷିକର୍ମ ପ୍ରଭୃତି ସାଧାରଣ କାର୍ଯ୍ୟର ସାଧକ ବା ଶ୍ରମିକ ଓ କୃଷକ ପ୍ରଭୃତିଙ୍କ ମଧ୍ୟରେ ମେଖଡ଼ ପଶିବାରୁ ଯେପରି ବିଶୃଙ୍ଖଳା ଏବଂ କାର୍ଯ୍ୟ ସାଧନରେ ଢିଲା ଦେଖାଯାଏ ତାହା ଜଗତ ପକ୍ଷରେ ଅତି ଅନିଷ୍ଟକର ଏବଂ ଅବନତିର କାରଣ ବୋଲି ଅନୁମାନ ହୁଏ ।

ସେ ଯାହା ହେଉ ବଳାତ୍କାର ବା ଅଗତ୍ୟା ହେତୁ ଧର୍ମାନ୍ତରିତ ବିଧର୍ମୀ-ବଂଶଧରମାନେ ସନାତନ-ଧର୍ମଗତ-ରକ୍ତ-ସମ୍ବନ୍ଧ ହେତୁ ଭାରତୀୟ ଭୌତିକ-ଉନ୍ନତି ସକାଶେ କଂଗ୍ରେସରେ ଯୋଗ ଦେଇଥିଲେହେଁ ଇନ୍ଦ୍ରଯୁଲ୍ଲଳସରେ ଧର୍ମାନ୍ତରିତ ହୋଇଥିବା ବଂଶଧରମାନେ ଏବଂ ସନାତନ-ଧର୍ମ-ବିଦ୍ୱେଷୀ ବା ଅବିଶ୍ୱାସୀ ଦାମ୍ଭିକମାନେ ନିଜ ସଚ୍ଛଳାବସ୍ଥା ହେତୁ ସାଧାରଣଙ୍କ ଦୁରବସ୍ଥାକୁ ଭ୍ରୂକ୍ଷେପ ନ କରି ଜଗନ୍ମାନ୍ୟ ମହାତ୍ମା ଗାନ୍ଧି ଆଉ ଭାରତୀୟ ଭୌତିକ-ହିତୈଷୀ ବହୁସଂଖ୍ୟକ ପ୍ରତିଭାଶାଳୀ ମହତ୍ ମହତ୍ ବ୍ୟକ୍ତିମାନଙ୍କର ଚେଷ୍ଟାକୁ ଚେଡ଼ି କଂଗ୍ରେସରେ ଯୋଗ ଦେଉ ନାହାନ୍ତି । ତତଃ ବର୍ତ୍ତମାନ ରାଜନୀତି ଅନୁସାରେ ଭାରତୀୟଙ୍କର ଯେତେ ବଡ଼ ଭୌତିକ-ଉନ୍ନତି ହୁଅନ୍ତୁ ତାହା ହୋଇପାରୁ ନାହିଁ । ଅତଃ କଙ୍କଡ଼ାକୁ ଗୋଲପାଣି ସ୍ୱାହିଲ୍ଲପରି ଉପରର ମତକୁ ପୁଷ୍ଟ କରୁଛି । ଯଥା—'ନିଗୁଣ-ଚଙ୍କୁ କରେ ଧରି, ମୃଗୀ ନଚୁଏ ନରହରି ।' (ଭା: ୧୧ଶ) । ସେ ଯାହାହେଉ ସେମାନେ ସାଧାରଣଙ୍କ ହିତାକାଂକ୍ଷୀ ହୋଇ ନ ପାରନ୍ତି । ତାଙ୍କର ପ୍ରଥମ ବିଦ୍ୱେଷ ହିନ୍ଦୁ-ସାଧାରଣଙ୍କ ଉପରେ (ପୂର୍ବ ଦୌରାତ୍ମ୍ୟକୁ ଅନୁସନ୍ଧାନ କରାଯାଉ) । ପରେ ସ୍ୱ-ସମ୍ପ୍ରଦା-ନିରୀହଙ୍କ ଉପରେ ହେବାଇ ହେବ । ଜନ୍ମାନ୍ତରୀନଭକ୍ତମାନେ କ୍ରୂର ପଶୁ ବା ସ୍ୱକୁଲାର୍ଭକଙ୍କ ପରି ଯେ ବଳିଷ୍ଠ ହେବ ସେ ଅଜାତେନ୍ଦ୍ରିୟ-ଲାଳସାରେ ସ୍ୱ-ଗୋଷ୍ଠୀୟଙ୍କୁ ଯବତରେ ରଖି ନିଜେ ମୋହାତ୍ମକ ସୁଖରେ ଚଳିବା ସ୍ୱଭାବସିଦ୍ଧ । ବିଧର୍ମୀ ଓ ଅହଂବାଦୀମାନେ ଅସହ-ଯୋଗର ମାହାତ୍ମ୍ୟ ଯେ ବୁଝିପାରିବେ ତାହା ସମ୍ଭବ ନୁହେ । ଆଉ କେତେକ ସନାତନଧର୍ମୀ-ସମ୍ଭୂତମାନେ ଅତି ସ୍ୱଚ୍ଛ ଓ ଅତି ପବିତ୍ର ଏବଂ ଇହ-ପର ଶ୍ରେୟସ୍କର ସେହି ସନାତନଧର୍ମୀସ୍ୱକ ପୂର୍ବପ୍ରଚଳିତ ବିଧିରେ ଭୂଷି ପୂରାଇବାକୁ ଯେ ଉଦ୍ୟତ ହେଉଛନ୍ତି ତାହା ଅତି ଉନ୍ନତ ଭ୍ରମ ନୁହେ କି ?

ଜନ୍ମାନ୍ତରବିଶ୍ୱାସୀ ହିନ୍ଦୁ ଦେହ ଓ ଦେହୀର ଉନ୍ନତି ସକାଶେ ଜ୍ଞାନମୟ-କୋଷର ନିୟନ୍ତ୍ରଣରେ ପ୍ରାଣମୟ-କୋଷକୁ ଆୟତ୍ତ କରି କର୍ମେନ୍ଦ୍ରିୟଙ୍କଦ୍ୱାରା ଦେହ ଓ ଦେହୀର ଉନ୍ନତିକର ସମସ୍ତ କାର୍ଯ୍ୟ ଶୃଙ୍ଖଳାରେ କରିଥାନ୍ତି । ଇତରମାନେ କେବଳ ଦେହର ଉନ୍ନତି ସକାଶେ ପ୍ରାଣମୟ-କୋଷର ସ୍ୱାଭାବିକ ନିୟନ୍ତ୍ରଣରେ କର୍ମେନ୍ଦ୍ରିୟଙ୍କଦ୍ୱାରା ସମସ୍ତ କାର୍ଯ୍ୟ କରିଥାନ୍ତି । ଜ୍ଞାନ ଚକ୍ଷୁରେ ଆଲୋଚନା କଲେ ତାହା ପଗଲାମି ବା ତର୍ଯକ-ଯୋନିଜାତି ପରି । ଧନବଳ, ଦୈହିକବଳ, କ୍ଷମତାଦି ଯାହାର ଅଧିକ ସେ ଅନ୍ୟାନ୍ୟଙ୍କୁ ବଞ୍ଚିତ କରି ତୁଚ୍ଛ ପଞ୍ଚେନ୍ଦ୍ରିୟର କୁତ୍ସିତ-ଭୋଗରେ ମୋହିତ ହୋଇ ଅଧୋଗତି ଲଭିବା ନିଶ୍ଚିତ । ଯଥା—କୁରଙ୍ଗ, ମାତଙ୍ଗ, ପତଙ୍ଗ, ଭୃଙ୍ଗ, ମୀନ ପ୍ରତ୍ୟେକ ଯଥାକ୍ରମରେ ସୁ-ସ୍ୱର, ସ୍ପର୍ଶ, ରୂପ, ରସ, ଗନ୍ଧ ଏହି ପଞ୍ଚଇନ୍ଦ୍ରିୟ-ବିଷୟମାନଙ୍କ ମଧ୍ୟରୁ ଗୋଟିଏ ଗୋଟିଏ ବିଷୟର ବଶବର୍ତ୍ତୀ ହୋଇ ବଧ-ବନ୍ଧନ ହୋଇଥାନ୍ତି । ସୁତରାଂ ଏହି ସବୁ ପଞ୍ଚେନ୍ଦ୍ରିୟ-ବିଷୟସେବୀ ଏକ ମନୁଷ୍ୟ ଏହି ସବୁ ବିଷୟର ବଶବର୍ତ୍ତୀ ହେଲେ ତାହାର ଉଦ୍ଧାର ହୋଇପାରେ କି ? ଅତଃ ଏହି ସବୁ ଇନ୍ଦ୍ରିୟମାନଙ୍କୁ ଆୟତ୍ତ କରି ସାବଧାନରେ ସମୁପଯୁକ୍ତ ବିଷୟ ଭୋଗ କରିବା ସମୁଚିତ ବା ବୁଦ୍ଧିମାନ ବ୍ୟକ୍ତିର କର୍ତ୍ତବ୍ୟ ।

"କୁରଙ୍ଗ-ମାତଙ୍ଗ-ପତଙ୍ଗ-ଭୃଙ୍ଗା-
ମୀନା ହତାଃ ପଞ୍ଚଭିରେବ ପଞ୍ଚ ।
ଏକଃ ପ୍ରମାଦୀ ସ କଥଂ ନ ହନ୍ୟତେ
ଯଃ ସେବତେ ପଞ୍ଚଭିରେବ ପଞ୍ଚ ॥"

---

## କଂଗ୍ରେସର ବିଶୃଙ୍ଖଳତା

ଭାରତୀୟଙ୍କ ଉନ୍ନତ-କଳ୍ପନାରେ ଗଠିତ କଂଗ୍ରେସ-ସମ୍ବନ୍ଧୀୟ ଅସହଯୋଗାଦିର ଉଦ୍ଭାବନକର୍ତ୍ତା ବା ସର୍ବପ୍ରଧାନ ନାୟକ ମହାତ୍ମା ଗାନ୍ଧୀ ଏବଂ ଅନ୍ୟ କେତେକ ସମଦର୍ଶୀ ପ୍ରତିଭାଶାଳୀ-ସାହାଯ୍ୟକାରୀଙ୍କ ସହଯୋଗ ଓ ନିୟନ୍ତ୍ରଣଦ୍ୱାରା ଅଧିକାଂଶ ଭାରତୀୟମାନେ ଲୋଭବଶରୁ କଂଗ୍ରେସର ନେତା ଏବଂ ମେମ୍ବର ହୋଇ କଂଗ୍ରେସରେ ଯୋଗ ଦେଇଥିଲେହେଁ ସନାତନଧର୍ମ ଦୃଢ଼-ବିଶ୍ୱାସ ଓ କ୍ରିୟାକଳାପର ବ୍ୟତିକ୍ରମରୁ ନାନା ପ୍ରକାର କୁଚିନ୍ତିତ ଏବଂ ଫେଞ୍ଚିକାମୀ ଘଟୁଅଛି । ତନ୍ମଧ୍ୟରେ କେତେକ ସ୍ୱାର୍ଥତ୍ୟାଗୀ ଥିଲେହେଁ ଅଧିକାଂଶ ଭିତରେ ଭିତରେ ବୁଦ୍ଧି ନିଜର ଠେକ ଓ ସ୍ୱାର୍ଥସାଧନ ଏବଂ ସ୍ୱ ସ୍ୱ ପ୍ରଦେଶର ସବିଶେଷ ସୁଖ୍ୟାତି, ଆଧିପତ୍ୟ ଓ ସୁବିଧା ନିମନ୍ତେ କପଟାତ୍ମକ କାର୍ଯ୍ୟ କରୁ ନାହାନ୍ତି କି ? ମହାତ୍ମାଦି ସମଦର୍ଶୀମାନେ ତାହା ସବୁ ଜାଣିପାରି ସଦୁପଦେଶ ଦେଲେହେଁ ସେମାନେ ତାହା ମାନି ଚଳିବାର ଦେଖାଯାଉ ନାହିଁ । ପୂର୍ବେ ସନାତନଧର୍ମର ବ୍ୟତିକ୍ରମ ଓ ସାମ୍ପ୍ରଦାୟିକ ମତ ହେତୁ ଏହିପରି ଗୃହବିବାଦ ଘଟି ଭାରତ ପରାଧୀନ ହୋଇଅଛି । ସେ ଯାହା ହେଉ ବିଭିନ୍ନ ମତରେ ଉଦ୍ଦେଶ୍ୟ ବା ସ୍ୱାଧୀନତା ଶୀଘ୍ର ସାଧନର ସମ୍ଭାବନା ଥିଲେହେ ବିଭାଟ ଓ ବିଗିଡ଼ିବାର ସମ୍ଭାବନା ଅଛି । ଅତଏବ ସାବଧାନ ।

କଂଗ୍ରେସ-ଗ୍ରାହକମାନେ ଗାନ୍ଧିଙ୍କର ଗୋଟିଏ ମାତ୍ର ଆଜ୍ଞା ( ନିବେଦନ ପୁସ୍ତକାନୁଯାୟୀ ) ଗ୍ରାମ-ସମିତି ଗଠନ କରି ସେହି ନିୟମକୁ ପାଳନ କରିଥିଲେ ଭାରତ ସ୍ୱାଧୀନ ହୋଇ ସାରନ୍ତାଣି । ବର୍ତ୍ତମାନ ମଧ୍ୟ ତାହା କଲେ ବର୍ଷକ ମଧ୍ୟରେ ସଫଳ ହେବା ସମ୍ଭାବନା । ସାଧାରଣ ଲୋକେ ଯଦି ଥାନା ଓ କଚେରୀକି ନ ଯାନ୍ତେ, ରାଜକର୍ମଚାରୀ ଓ ପୁଲିଶ କଣ କରନ୍ତେ ?

ସୁତରାଂ ଜଗତରେ ଯେ କୌଣସି ସାମାନ୍ୟ କାର୍ଯ୍ୟକୁ ବା ସାମାନ୍ୟ ପଦାର୍ଥକୁ ହେୟ ଜ୍ଞାନ କରି କେବଳ ମହତକୁ ଆଶା କଲେ ସବୁ ବିଶୃଙ୍ଖଳ ବା ନଷ୍ଟ ହୋଇଥାଏ । "ଅତୋ ଭ୍ରଷ୍ଟ-ସ୍ତତୋ ଭ୍ରଷ୍ଟଃ" । ପ୍ରକୃତିର ନିୟମାନୁସାରେ କାଳର ଗତି ପରି ସାଂସାରିକ ସୁଖ ଦୁଃଖାଦି ସମସ୍ତ କାର୍ଯ୍ୟର ପରିବର୍ତ୍ତନ ଘଟିବା ନିଶ୍ଚୟ । "ସୁଖସ୍ୟାନନ୍ତରଂ ଦୁଃଖଂ ଦୁଃଖସ୍ୟାନନ୍ତରଂ ସୁଖଂ । ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ" । "ଦେହି-ନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରାଂ" । "ପୁନରପି ଜନନଂ ପୁନରପି ମରଣଂ ପୁନରପି ଗର୍ଭନିବାସଂ" । ଭଗବଦାଜ୍ଞା ଧର୍ମଶାସ୍ତ୍ରୋକ୍ତ ବିଧିନିଷେଧ ପ୍ରତି ଜାଗ୍ରତ ରହିବା ସର୍ବତୋଭାବେ ବିଧେୟ । "ଧର୍ମୋ ରକ୍ଷତି ଧାର୍ମିକଂ" ।

"ଅନାୟକା ବିନଶ୍ୟନ୍ତି ନଶ୍ୟନ୍ତି ବହୁନାୟକାଃ ।
ସ୍ତ୍ରୀନାୟକା ବିନଶ୍ୟନ୍ତି ନଶ୍ୟନ୍ତି ଶିଶୁନାୟକାଃ ॥
କ୍ଷଣେ ରୁଷ୍ଟଂ କ୍ଷଣେ ତୁଷ୍ଟଂ ତୁଷ୍ଟଂ ରୁଷ୍ଟଂ କ୍ଷଣେ କ୍ଷଣେ ।
ଅବ୍ୟବସ୍ଥିତଚିତ୍ତସ୍ୟ ପ୍ରସାଦୋଽପି ଭୟଂକରଃ ॥"

ନିଷ୍କଂଟାଗୀତ ନେତା ଗୋପବନ୍ଧୁ ଦାଶ ଓ ମଧୁସୂଦନ ଦାସ । ଭାରତର ଅଧିକାଂଶ ପ୍ରଦେଶରେ ଭାରତୀୟଙ୍କର ଏବଂ ସ୍ୱ ସ୍ୱ ଅଞ୍ଚଳସ୍ଥ ଅଧିବାସିଙ୍କର ଭୌତିକ-ଉନ୍ନତି ସକାଶେ ପ୍ରତ୍ୟେକ ପ୍ରଦେଶସ୍ଥ କେତେକ ସ୍ୱାର୍ଥତ୍ୟାଗୀ ପ୍ରାଣପ୍ରାୟସ୍ଥିତ ହୋଇ ଲାଗିଛନ୍ତି । ଉତ୍କଳ ପ୍ରଦେଶରେ ସେହିପରି ନିଷ୍କଂଟାଗୀତ ଦୁଇ ଜଣ ଯଥା—ଉତ୍କଳମଣି ଗୋପବନ୍ଧୁ ଦାଶ ଓ କୁଳବୃଦ୍ଧ ମଧୁସୂଦନ ଦାସ ଥିଲେ । ତାଙ୍କ ସହକର୍ମୀମାନେ ତାଙ୍କ ପରେ ତାଙ୍କ ମୃତାହ ଦିବସରେ ଏବଂ ଅନ୍ୟାନ୍ୟ ସମୟରେ ମଧ୍ୟ ଉପରଠାଉରିଆ ଭାବରେ ସଭା ସମିତି କରି ଏବଂ ସମ୍ବାଦପତ୍ରରେ ଲୋକ-ଦେଖାଣିଆ ଭାବେ ବୋବାଳି ଛାଡୁଛନ୍ତି ମାତ୍ର । ଭିତର ମଳିନାମୟ ହେତୁ ତାଙ୍କ ଆଚରିତ ସଦ୍‌ଗୁଣାବଳମ୍ବୀ କେହି

ଜଣେ ହୋଇ ପାରିଛନ୍ତି କି ? ଅଧୁନାତନ ଶିକ୍ଷାନୁଯାୟୀ ତାଙ୍କ ସମକକ୍ଷ ଓ ତତୋଽଧିକ ଶିକ୍ଷିତ କଂଗ୍ରେସରେ ଯୋଗ ଦେଇ ନାହାନ୍ତି କି ? ହେଲେହେଁ ନିଖିଳ-ଭାରତ-କଂଗ୍ରେସ-ସଭାରେ କିମ୍ବା କାର୍ଯ୍ୟପରିଷଦ୍‌ମାନଙ୍କ ସମିତିରେ ଭାରତ ସକାଶେ ବା ଖଣ୍ଡ ଖଣ୍ଡ ଛିନ୍ନଭିନ୍ନ ଉତ୍କଳର ବ୍ୟତିକ୍ରମ ବା ଦୁରବସ୍ଥା ଓ ଅଭାବ ସମ୍ବନ୍ଧରେ ପଦେ ମାତ୍ର ବକ୍ତବ୍ୟ ବା ଆପତ୍ତି ପ୍ରକାଶ ପାଇଥାଏ କି ? କିନ୍ତୁ ଗୋପବନ୍ଧୁ ଉତ୍କଳର ଅଭାବ ସମ୍ବନ୍ଧରେ ଦେଶୀୟ ହାକିମଙ୍କ ହେୟଜ୍ଞାନ ଦେଖି ତଦ୍‌ବିରୁଦ୍ଧରେ ଖାସ୍ ଲାଟଙ୍କୁ ଉତ୍କଳକୁ ଆଣିପାରିଥିଲେ । ଉତ୍କଳର ବ୍ୟତିକ୍ରମ ପରିବର୍ତ୍ତନ ସକାଶେ ଯେ ସବୁ ମୂଳଭିତ୍ତି ପକାଉଥିଲେ ବିଧାତା ସହିଲା ନାହିଁ । "ହା ହତୋସ୍ମି" । ବିଲାତ-ଫେରନ୍ତା ଗନ୍ଧ ଥିଲେହେଁ ସ୍ୱକୀୟ-ସମ୍ବନ୍ଧଶୂନ୍ୟ କୁଳବୃଦ୍ଧ ମଧୁବାବୁ ସମସ୍ତ ଉତ୍କଳୀୟଙ୍କ ମଧ୍ୟରେ ସର୍ବାଧିକ୍ୟ ବା ବହୁଲକ୍ଷ ମଧ୍ୟ ଧନକେ ଲକ୍ଷ ଲକ୍ଷ ଆୟ କରି ଉତ୍କଳୀୟଙ୍କ ହିତ ସକାଶେ ଅକାତରେ ବ୍ୟୟ କରୁଥିଲେ । ଶ୍ରୀଜଗନ୍ନାଥଙ୍କଠାରେ ଦୃଢ଼ବିଶ୍ୱାସ ହେତୁ ବହୁ ବ୍ୟୟ କରି ସର୍କାର ବିରୁଦ୍ଧରେ ଏଠାରୁ ବିଲାତ ପର୍ଯ୍ୟନ୍ତ ଲଢ଼ି ବିଧର୍ମୀ-ସର୍କାର ହାତରୁ ଜଗନ୍ନାଥଙ୍କ ଦେଉଳକୁ ଉଦ୍ଧାର କରି ଜଗନ୍ନାଥଙ୍କ ନାମ ଓ ମାହାତ୍ମ୍ୟ ବିଦେଶର ବଡ଼ ବଡ଼ ନେତା ଏପରି କି ସମ୍ରାଟ ସପ୍ତମ ଏଡ଼୍‌ୱାର୍ଡ଼ଙ୍କ ସହିତ ଚର୍ଚ୍ଚାଦ୍ୱାରା ଉତ୍କଳର ଓ ଜଗନ୍ନାଥଙ୍କର ମାହାତ୍ମ୍ୟ ପ୍ରକଟ କରିଥିଲେ । ଜଗନ୍ନାଥଙ୍କ ନୀତି ବା ବ୍ୟତିକ୍ରମ ବା ବିରୁଦ୍ଧ ବିଷୟ ଶୁଣିବା ମାତ୍ରେ ତତ୍‌କ୍ଷଣାତ୍ ମୁଣ୍ଡ ପକାଉଥିଲେ । ତାଙ୍କର କୌଣସି ଆତ୍ମୀୟ ଗୁପ୍ତଭାବେ ଦେଉଳରେ ପ୍ରବେଶ କରିଥିବାର ଜାଣିପାରି ଯଥୋଚିତ ନାସ୍ତି କଠିନ କଡ଼ାଦଣ୍ଡ ଦେଇଥିଲେ । ତାଙ୍କ ବିବେକରେ ସେପରି କଡ଼ାଦଣ୍ଡ କାହାକୁ ଦେଇ ନ ଥିଲେ । ଏହାପରି ବହୁକାର୍ଯ୍ୟ ଓ ଉତ୍କଳ-ସମ୍ମିଳନୀ ପ୍ରଭୃତି ବହୁସଂଖ୍ୟକ ହିତକର କାର୍ଯ୍ୟ

କରି ଯାଇଛନ୍ତି । ବର୍ତ୍ତମାନ ନେତାମାନେ ଏ ସପକ୍ଷରେ ନା ବିପକ୍ଷରେ ? କେତେକ ସହକର୍ମିଙ୍କ ସହ ଲୋପ ପାଉଥିବା ଓଡ଼ିଆଭାଷା ଓ ପ୍ରଦେଶକୁ ସାହସ ଓ ନାନା ପ୍ରକାର ଯତ୍ନଦ୍ୱାରା ବଜାୟ ବା ସ୍ୱତନ୍ତ୍ର ରଖିଥିବା ଏବଂ ଦୃଶ୍ୟମାନ ସମୁନ୍ନତକର କାର୍ଯ୍ୟର ମୂଳଭିତ୍ତି ସ୍ଥାପନ ଓ ଦୃଢ଼ କରିଥିବା ଅନ୍ୟାନ୍ୟ-ମାନଙ୍କର ନାମ ଆଦୌ ପଡ଼ୁ ନାହିଁ । ଅଭି କେତେକ ପୂର୍ବ-ନେତା ବ୍ରିଟିଶଗୀତ ଓ ଶାସନାନଭିଜ୍ଞ ଏବଂ ଭାବୀ-ବୈଷୟିକ ଉଦାସୀନତା ଓ ଆଧ୍ୟାତ୍ମିକ-ଭକ୍ତି-ଭାବାନ୍ବିତମାନେ ଚିର-ବନ୍ୟାବାଧା ପୀଡ଼ିତ ଭୟ ହେତୁ ଓଡ଼ିଶାର ଚିରସ୍ଥାୟୀ ବନ୍ଦୋବସ୍ତ ସମ୍ବନ୍ଧରେ ବାଧା ଦେଇଥିବାରୁ ଥରକୁ ଥର ବନ୍ଦୋବସ୍ତ ହୋଇ ଚତୁର୍ଗୁଣ କର ବୃଦ୍ଧିଦ୍ୱାରା ଉତ୍କଳୀୟମାନେ ଚିପିହୋଇ ଦରିଦ୍ରତାରେ ପଡ଼ୁଥିବାର ପ୍ରତିକାର ତ ନାହିଁ । ଅଭି ଯାହାର କୌଣସି ପ୍ରକାର ପ୍ରତିକାର ହୋଇ ନ ପାରେ ସେ ଆଧ୍ୟାତ୍ମିକ-ଭାବ ଯାହା ଥିଲା ବର୍ତ୍ତମାନର ନେତାମାନେ ତାକୁ ସମୂଳେ ଧ୍ୱଂସ କରିବାକୁ ପ୍ରାଣପ୍ରାୟଶ୍ଚିତ ହୋଇ ଯାହା ଲଗିଛନ୍ତି; ଯତଃ ଭାବୀ-ବଂଶଧରମାନେ ମ୍ଳେଚ୍ଛ ବିନା କୌଣସି କୁଳ ନ ପାଇ ଚିରସନ୍ତପ୍ତ ହେବେ ନାହିଁ କି ? ସେ ଯାହା ହେଉ ବର୍ତ୍ତମାନ ନେତାଙ୍କର ଗତି କେଉଁଆଡ଼େ ? ଅତଃ ସାବଧାନ ! ଏମାନଙ୍କ ମଧ୍ୟରୁ କେତେକ ଭୌତିକ-ଉନ୍ନତକର କାର୍ଯ୍ୟ କରୁଥିଲେହେଁ ଭିତର ଧର୍ମଦ୍ୱେଷ ଓ ସ୍ୱାର୍ଥପୂର୍ଣ୍ଣ ହେତୁ ଗୋପବନ୍ଧୁଙ୍କ ପରି ଉତ୍ତୁରି ପାରୁ ନାହାନ୍ତି କିମ୍ବା ସମୁଚିତ କାର୍ଯ୍ୟ ହୋଇପାରୁ ନାହିଁ । ବିଶେଷତଃ ପରଂପରା-ପ୍ରଚଳିତ ସନାତନ-ଧର୍ମ-କ୍ରିୟାର ବିରୋଧ ହେତୁ ପ୍ରକୃତ ସ୍ୱଭାବ ଆସି ନ ପାରେ । ବରଂ ଅଧିକାଂଶଙ୍କର ଅଭିପ୍ରାୟ ଯେ ସନାତନ ଧର୍ମ-ଶାସ୍ତ୍ରୋକ୍ତ ପୂର୍ବ-ପ୍ରଚଳିତ-ବିଧି ସମୂଳେ ଧ୍ୱଂସ ହେଉ, ଆମ୍ଭ ପରେ ଗୋପବନ୍ଧୁଙ୍କ ବିରହ ପରି ଆମ୍ଭପାଇଁ ଲୋକେ ହୋ ହୋ ହେଲେ ଆମ୍ଭେ କୃତାର୍ଥ ହୋଇଯିବୁଁ ।

ଦେଶ-କାଳ-ପାତ୍ର ନେଇ ଅଗତ୍ୟା-ଭାବେ ଗୋପବନ୍ଧୁ ଯଦ୍ୟପି ବ୍ୟକ୍ତିଗତ ଭାବରେ କୌଣସି ବ୍ୟତିକ୍ରମାତ୍ମକ କାର୍ଯ୍ୟ କରି ଥାଇପାରିଥାନ୍ତି କିନ୍ତୁ ସାଧାରଣତଃ ହିନ୍ଦୁ-ଧର୍ମୋକ୍ତ କୌଣସି ବ୍ୟତିକ୍ରମାତ୍ମକ କର୍ମ ଆଚରଣ କରିଥିବା ବା ସମ୍ପାଦପତ୍ର କିମ୍ବା ସଭାସମିତିରେ ପ୍ରଚାର କରିଥିବା ସ୍ମରଣ ହେଉ ନାହିଁ । ଉପାସନାଦି କେତେକ କୌଳିକ-କର୍ମନିରତ ଥିଲେ । ଧର୍ମ-ଶାସ୍ତ୍ରୋକ୍ତ-ବିଧି ବ୍ୟତିକ୍ରମ ଓ ସ୍ତ୍ରୀ-ସ୍ୱାଧୀନତାଦି ମତର ବିରୋଧି ଥିଲେ । ଭାଗବତାଦି ଭକ୍ତିଶାସ୍ତ୍ର ନିଜେ ପଠନ କରୁଥିଲେ ଏବଂ ପଠନ ଶ୍ରବଣ ପାଇଁ ଅନ୍ୟକୁ ଉତ୍ସାହ ଓ ଉପଦେଶ ଦେଉଥିଲେ, ଷଡ଼୍‌ରିପୁଜେତା ଥିଲେ । ନିଜର ଶ୍ରେଷ୍ଠ, ପୌରୁଷ, ପ୍ରଶଂସା, ସୁଖ୍ୟାତି ଲଭିବା ଆଶା ତାଙ୍କ ହୃଦୟରେ ସ୍ଥାନ ପାଇ ନ ଥିଲା । ସମସ୍ତଙ୍କଠାରେ ସମତା-ଭାବ ଥିଲେହେଁ ସ୍ୱ-କୁଳାନୁଯାୟୀ ବ୍ୟକ୍ତି-ବିଶେଷଙ୍କୁ ସମୁଚିତ ଅଭିବାଦନାଦି କରୁଥିଲେ । ଧୋବା-ମଣ୍ଡାଖିଆ ପରି ନୋହିଁ ସମୁଚିତ ଓ ସଙ୍କୁଚିତ ଭାବରେ ଚଳି ଦେଶପାଇଁ ଓ ଦଶପାଇଁ ସର୍ବଦା ବିକଳ ହେଉଥିଲେ । ତାଙ୍କର ଉତ୍ତମ କବିତା-ଶକ୍ତି ଥିଲା, ସେ ସମୁଚିତ ଦାତା ଥିଲେ । ବହୁ ବିଭବାତ୍ମକ 'ସମାଜ ପ୍ରେସ' ସତ୍ତ୍ୱ ସହ ସବୁ ଜିନିଷ ସାଧାରଣ ଲୋକୋପକାର ନିକାଶେ ଏବଂ ଶେଷରେ ସମସ୍ତ ଭୂ-ସମ୍ପତ୍ତି ପ୍ରଭୃତି ଇଷ୍ଟଦେବଙ୍କ ସେବା ପୂଜା ନିକାଶେ ଖଞ୍ଜି ଯାଇଛନ୍ତି । ସେ ଲୋକ ଚିହ୍ନ ଗୁଣ ଚିହ୍ନ ତଦନୁରୂପ ଖାତିର କରୁଥିଲେ । କେତେକ ସାମ୍ପ୍ରଦାୟିକ ଓ ଦାମ୍ଭିକମାନେ କୌଣସି ପୂଜନୀୟ ବିଗ୍ରହମାନଙ୍କୁ ଏକାନ୍ତ ସାକ୍ଷାତରେ ଯଥୋପଯୁକ୍ତ ନମସ୍କାରାଦି ମାନ୍ୟ କରିଥାନ୍ତି; କିନ୍ତୁ ନାମଯାଦା ବ୍ୟକ୍ତି ବା ସ୍ୱ-ଗୋଷ୍ଠୀୟ ମେଳରେ ସାକ୍ଷାତ ହେଲେ ଅହଂମନ୍ୟ ଭାବ ନେଇ ସମୁଚିତ ମାନ୍ୟ କରିବାକୁ କୁଣ୍ଠିତ ହୋଇଥାନ୍ତି । ଗୋପବନ୍ଧୁ ସେପରି ନ ଥାଇ

ସର୍ବଦା ଯଥୋପଯୁକ୍ତ ମାନ୍ୟାଦି କରୁଥିଲେ । ତାହାର ଭିତର ସମସରସା । ବର୍ତ୍ତମାନ ସେ ଧରଣର ଜଣେ କେହି ଅଛନ୍ତି କି ? ବିଶେଷତଃ କେତେକ ସ୍ୱାର୍ଥପର ପ୍ରତିଭାଶାଳୀ ବ୍ୟକ୍ତି ପରଂପରା-ପ୍ରଚଳିତ ଧର୍ମକ୍ରିୟାତ୍ମକ ସତ୍କାର୍ଯ୍ୟର ବିପରୀତାଚରଣ ଓ ବିପରୀତ-ମତକୁ ପ୍ରଚାର କରି ଆପଣାଙ୍କୁଏଁ ପାଳ ପକେଇ ଉଚ୍ଚ ହେବାଟା ସଙ୍ଗତ ବୋଧ ହେଉ ନାହିଁ ।

ଆର୍ଯ୍ୟ-ସନ୍ତାନମାନେ ନିଜ ସମ୍ପତ୍ତିକୁ ହେୟ ଜ୍ଞାନରେ ଆଦୌ ଦେଖୁ ନାହାନ୍ତି, କିନ୍ତୁ ବିଦେଶୀୟମାନେ ତାହାର ତତ୍ତ୍ୱ ଅନୁସନ୍ଧାନ କରି ପ୍ରକାଶ କଲେ ଶ୍ରଦ୍ଧାରେ ଶୁଣୁଛନ୍ତି ମାତ୍ର; କିନ୍ତୁ ଚର୍ଚ୍ଚା ବା କାର୍ଯ୍ୟରେ ପରିଣତ କରୁ ନାହାନ୍ତି । ବ୍ୟକ୍ତି-ବିଶେଷ ବା ଖାଦ୍ୟାଦି ସ୍ପର୍ଶ ଓ ଅଶନର ଦୁର୍ଗୁଣତା ଆର୍ଯ୍ୟଶାସ୍ତ୍ରରୁ ଜାଣିପାରି ବିଦେଶୀୟମାନେ ଅନୁସନ୍ଧାନଦ୍ୱାରା ଦୋଷ ସାବ୍ୟସ୍ତ କରୁଛନ୍ତି; କିନ୍ତୁ କେତେକ ଆର୍ଯ୍ୟ-ସନ୍ତାନ ସେ ବିଧିକୁ ଲଙ୍ଘନ କରି ବିପରୀତ ବା ଯଥେଚ୍ଛାଚାର କରୁଛନ୍ତି । ଧୃଷ୍ଟତାରୁ ଯାହା ଯାହା ବିଗୁଡ଼ିଛି ସମୟାନୁସାରେ ପରିବର୍ତ୍ତନ ହୋଇପାରେ, କିନ୍ତୁ ସମ୍ପୂର୍ଣ୍ଣ ବିଶୁଦ୍ଧ ହୋଇପାରିବେ ନାହିଁ । ଯଥା—କୌଣସି ହିତୈଷୀ ଅମାନିଆ-ଧୃଷ୍ଟ-ବାଳକକୁ ନିଆଁରେ ପଶିବାକୁ ମନା କଲେ ତା ନ ମାନି ସେ ନିଆଁରେ ପଶିଲେ ଫୋଟକା ପରେ ଚେଙ୍ଗ ପାଇ ପରେ ସାବଧାନ ହେଲେହେଁ ପୋଡ଼ିଯିବା ଦାଗ ବା ବିକୃତ-ଚିହ୍ନ ଯେପରି କାଳକାଳକୁ ରହିଥାଏ, ସେହିପରି ବିପଥଗାମୀ ସନାତନୀମାନେ ସନାତନଧର୍ମ-ଶାସ୍ତ୍ରୋକ୍ତ ପରଂପରା-ପ୍ରଚଳିତର ବିକୃତ-ଫଳ ଚେଙ୍ଗିଲେ ସମୟାନୁସାରେ ତହିଁରୁ ବିରତ ହୋଇପାରନ୍ତି; କିନ୍ତୁ ସମୁନ୍ନତକର ସ୍ୱଚ୍ଛ-ନିର୍ମଳ-ପବିତ୍ର ହୋଇପାରିବେ ନାହିଁ । ଯେ ବିଶୁଦ୍ଧ ଥିବେ ସେ ସମୁନ୍ନତ ହେବା ନିଶ୍ଚୟ । ଆଜିକାଲି ଅଧିକାଂଶ ନବ୍ୟ-ସଭ୍ୟ ବିଦେଶୀ-ବିଧର୍ମୀ-କୁତ୍ସିତ-କୁହୁକରେ ମୋହିତ ହୋଇ ଅତି ଉଳ୍ଟ

କ୍ରିୟାକୁ ଅନୁକରଣଦ୍ୱାରା ମନ୍ତ୍ର ଥିଲେହେଁ ଅର୍ଯ୍ୟରକ୍ତାତ୍ମକ ପରଂପରାଗତ ବାସନାବଳରୁ ସମୂଳେ ଛାଡ଼ିପାରୁ ନାହାନ୍ତି । ଅତଃ ସଂଶୟାପନ୍ନ ବା ଦୋଳାୟମାନ । ଯତଃ ଇହ-ପରସୁଖ ଓ ସଦ୍‌ଗତି ନଦାରଦ । "ଅତୋ ଭ୍ରଷ୍ଟସ୍ତତୋ ଭ୍ରଷ୍ଟଃ ।"

"ଅଜ୍ଞଶ୍ଚାଶ୍ରଦ୍ଦଧାନଶ୍ଚ ସଂଶୟାତ୍ମାବିନଶ୍ୟତି ।
ନାୟଂ ଲୋକୋଽସ୍ତି ନ ପରୋ ନ ସୁଖଂ ସଂଶୟାତ୍ମନଃ ॥"
୪୦।୪ ଅଃ ଗୀତା

'ପରଂପରାଗତ ଜନ୍ମୋପଷ୍ଟ ସଂଯତ' ପ୍ରଧାନ । ଯେପରି ବିଭିନ୍ନ ଧାତୁ-ଦ୍ରବ୍ୟାଦି ତରଳି ଏକତ୍ର ମିଶିଗଲେ ସ୍ୱତନ୍ତ୍ର ହୋଇ ନ ପାରେ, ସେହିପରି ବିଭିନ୍ନ ବର୍ଣ୍ଣଗତ ରଜବୀର୍ଯ୍ୟଜାତ ଖେଚଡ଼-ସନ୍ତାନ ସମ୍ମତ ପ୍ରକ୍ରିୟାଦ୍ୱାରା ସମ୍ୟକ୍ ପ୍ରକାରେ ସ୍ୱତନ୍ତ୍ର ହୋଇ ନ ପାରନ୍ତି । ବିଶେଷ ଦୁଃଖର ବିଷୟ ଭାରତର ବିଭିନ୍ନ ପ୍ରଦେଶୀୟ ସନାତନୀଙ୍କ ମଧ୍ୟରେ ସର୍ବପ୍ରଧାନ ଥିବା ଉତ୍କଳୀୟମାନେ ଅନ୍ୟାନ୍ୟ ପ୍ରଦେଶୀୟଙ୍କ ସଙ୍ଖୁଡ଼-ସିଦ୍ଧାନ୍ନ ସ୍ପର୍ଶ କରୁ ନ ଥିଲେ । କିନ୍ତୁ ଅନ୍ୟାନ୍ୟମାନେ ଓଡ଼ିଆଙ୍କ ସଙ୍ଖୁଡ଼-ସିଦ୍ଧାନ୍ନ ବରାବର ଖାଉଥିଲେ । ସେହି ଉତ୍କଳୀୟଙ୍କ ମଧ୍ୟରୁ ବର୍ତ୍ତମାନ କେତେକ ବିକୃତ ହେବା ଅନୁମାନ ହୁଏ । ତନ୍ମଧ୍ୟରେ କଠୋର ନିୟମାବଦ୍ଧ ଧର୍ମନେତା କେତେକ ବ୍ରାହ୍ମଣ-ବଂଶୀୟ ଆଗୁଁସାର ହେବା ଅତି କ୍ଷୋଭର ବିଷୟ । ଯତଃ 'ଅତି ନିୟମାବଦ୍ଧ ପବିତ୍ରତା ହେତୁ ଭଗବାନଙ୍କର ଭୋଜନସ୍ଥାନ ଉତ୍କଳସ୍ଥ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପ୍ରତ୍ୟକ୍ଷ ପ୍ରମାଣ ।' ( ନିବେଦନ ପୁସ୍ତକାନ୍ତର୍ଗତ ଭଗବାନଙ୍କର ଅଷ୍ଟ-କ୍ରିୟାସ୍ଥାନ ଦ୍ରଷ୍ଟବ୍ୟ ) ।

ବିଶେଷତଃ ଅଧୁନା ନବ୍ୟସଭ୍ୟମାନେ କୌଣସି ବିଷୟର ତତ୍ତ୍ୱ ଅନୁସନ୍ଧାନ କରୁ ନାହାନ୍ତି । ଯତଃ ଜଗତରେ ବଡ଼ କିଏ ? ଏହାର ତତ୍ତ୍ୱ ଯଥା,—ସବୁଠାରୁ ମେରୁପର୍ବତ

ବଡ଼, ସେ ପୃଥିବୀର ମସ୍ତକମଣି ସ୍ୱରୂପ, ପୃଥିବୀ ସମୁଦ୍ର ମଧ୍ୟରେ ଗୋଟିଏ ଦ୍ୱୀପ ପରି, ସାତ ସମୁଦ୍ର ଜଳଯାକ ଗଣ୍ଡୂଷରେ ଧାରଣ କରିଥିବା ଅଗସ୍ତି ଋଷି, ସେ ମଧ୍ୟ ଆକାଶରେ ଗୋଟିଏ ପ୍ରଦୀପ ପରି, ଆକାଶ ବାମନଙ୍କର ଏକ ପାଦରେ ଆବୃତ, ସେ ପାଦପଦ୍ମ ଭଗବଦ୍ଭକ୍ତଙ୍କର ହୃଦୟରେ ସ୍ଥିତ । ଅତଏବ ବଡ଼ କିଏ ନିରୂପଣ କରାଯାଉ ।

"ମେରୁର୍ନାମ ମହୀଧରଃ ସ ଚ ଧରାଭୂଷାମଣିର୍ଦ୍ଦୃଶ୍ୟତେ ।
ସପ୍ତଦ୍ୱୀପ ମହୋଦଧେଷ୍ଟ ମୁନିନା ଗଣ୍ଡୂଷ ମାତ୍ରଂ ପୟଃ ॥
ଆକାଶେ ସ ଚ ଭାତି ଦୀପବଦହୋ ବିଷ୍ଣୋସ୍ତଦେକଂ ପଦଂ ।
ସତ୍ତ୍ୱେକୋ ହୃଦ ବର୍ତ୍ତତେ ତବ ପୁନସ୍ତ୍ୱତ୍ତୋଽସ୍ତି କୋଽନ୍ୟୋ
ମହାନ୍ ॥"

ସେ ଯାହାହେଉ ଅଧୁନା ଅଧିକାଂଶ ନାମଯାଦାମାନେ ଭୌତିକ-ଦେହ ଓ ଦେଶର ତତ୍ତ୍ୱ ଏବଂ ଉନ୍ନତିକର ବିଷୟରେ ପରାଂମୁଖ ବା ପରଲୋପର ହୋ ହୋ ହୋଇ ବ୍ୟତିକ୍ରମ କରୁଛନ୍ତି । ଯତଃ ହିନ୍ଦୁଧର୍ମ ସମ୍ବନ୍ଧରେ ଏବଂ କଂଗ୍ରେସ ଉଦ୍ଦେଶ୍ୟ ସମ୍ବନ୍ଧରେ ଯେ ସବୁ ନାନା ପ୍ରକାର ବଭ୍ରାଟ ଘଟୁଛି, ତାହା ସବୁ ଗାନ୍ଧୀ ଜାଣୁଥିବାର ଅନୁମାନ ହେଉ ନାହିଁ । ତାଙ୍କ ପାଖଲୋକେ "ଭଗବାନ୍ ଭୂତଗାଂ ଗତଃ" ପରି ବୁଝାଇ ଦେଉଥିବା ଅନୁମାନ ହୁଏ । ପ୍ରକୃତ ବିଷୟ ସେ ଜାଣିଲେ ପସ୍ତେଇବେ । କିନ୍ତୁ ଭାରତୀୟଙ୍କ ପ୍ରଥମ-ସାଧନା, ଯଥା— ସନାତନଧର୍ମର କର୍ମଯୋଗ ସାଧନାରେ ପବିତ୍ର ନ କରାଇ ଶେଷତତ୍ତ୍ୱ ଉପଦେଶ ଦେଇ ପ୍ରଥମରୁ ସେ ବଗାଡ଼ୁଛନ୍ତି । ଭାରତର ସର୍ବପ୍ରଧାନ ଉଦ୍ଦେଶ୍ୟ ଏକମାତ୍ର ଭୌତିକ ଉନ୍ନତି ଆକାଂକ୍ଷା କଂଗ୍ରେସର ଅସହଯୋଗପ୍ରଥା ଉପମାକୁ ଆଲୋଚନା କରାଯାଉ । ଯଥା—ଉପରେ ନାନା ପ୍ରକାର ବୃକ୍ଷ-ଲତା-କଣ୍ଟକାଦି ସମାଚ୍ଛନ୍ନ, ତଳ ମୃତ୍ତିକା ଏ ସବୁର ଚେରଦ୍ୱାରା ଆବଦ୍ଧ,

ମଧ୍ୟଭାଗ ନାନା-ପ୍ରକାର ବନ୍ୟଜନ୍ତୁ ସମାକୀର୍ଣ୍ଣ-କ୍ଷେତ୍ରରେ କୌଣସି ଉପାଦେୟ ବୀଜ ବପନ କରି ଜଳ ସେଚନାଦି କଲେ ମଧ୍ୟ ଯେପରି ବୃକ୍ଷ ବର୍ଦ୍ଧନ ବା ଫଳଲାଭ ଦୁରୂହ; ସେହିପରି ଷଡ଼ରିପୁ-ବଶୀଭୂତ ରାଗଦ୍ୱେଷାଦି ଦାମ୍ଭିକତାହଂକାର ଏବଂ ସତ୍ସାଧନା-ଶୂନ୍ୟ ଅଧିକାଂଶ ଭାରତୀୟଙ୍କ ଅପବିତ୍ର ଓ କଳୁଷାତ୍ମକ ହୃଦୟ-କ୍ଷେତ୍ରରେ ମହାତ୍ମା ଗାନ୍ଧୀ ସନାତନଧର୍ମର ସର୍ବୋଚ୍ଚସ୍ତର ତତ୍ତ୍ୱର ବ୍ୟତିକ୍ରମାତ୍ମକ ଉପଦେଶ ଏବଂ ଅସହଯୋଗରୂପ ମହତ୍‌ବୀଜ ବପନ କରି ନାନା ପ୍ରକାର ଭୌତିକ-ଉନ୍ନତିକର ଉପଦେଶ ଦେବାରୁ ଅଧିକାଂଶ ଭାରତୀୟ ମୋହବଶରୁ ତାହା ଆଦରି-ନେଲେ ସିନା; କିନ୍ତୁ ତାହା ପ୍ରକୃତ କାର୍ଯ୍ୟକାରୀ ହୋଇ ନ ପାରି ନାନା ପ୍ରକାର ବିଭ୍ରାଟ ଘଟୁ ନାହିଁ କି ? ସୁତରାଂ ଉପରୋକ୍ତ ବନ୍ୟ-ଭୂମିରୁ ବୃକ୍ଷାଦି ସମସ୍ତ ଉତ୍ପାଟନ ଓ ସମ୍ପୁର୍ଣ୍ଣଯୁକ୍ତ କର୍ଷଣଦ୍ୱାରା ଆଗ ଉପଯୁକ୍ତ କରି ଉପାଦେୟ ବୀଜ ବପନ କଲେ ଯେପରି ଫଳଲାଭାଦି ହେବା ନିଶ୍ଚୟ, ସେହିପରି ଆଗ ସମ୍ମତ ସଦ୍ଧର୍ମାତ୍ମକ ସତ୍‌କ୍ରିୟା ଓ ସତ୍‌ଶିକ୍ଷାଦ୍ୱାରା ଭାରତୀୟଙ୍କୁ ଉପଯୁକ୍ତ ଓ ପବିତ୍ର କରାଇ ଏ ମହତ୍ ବିଷୟରେ ପ୍ରବୃତ୍ତ କରାଇବାର ଉଚିତ ଥିଲା । ଇହଜନ୍ମ-କୃତ ପାପ-ପୁଣ୍ୟର କୁ-ସୁ-ଫଳ ଜନ୍ମାନ୍ତରେ ନିଶ୍ଚୟ ଭୋଗ କରିବାକୁ ହେବ; ଏ ବିଶ୍ୱାସ ହୃଦୟରେ ଦୃଢ଼ୀଭୂତ ବା ଜାଗ୍ରତ ନ ହେଲେ ସମାଜ ବା ଜଗତ ଶୃଙ୍ଖଳାରେ ଚଳି ନ ପାରେ । ସନାତନ-ଧର୍ମ-ଶାସ୍ତ୍ରୋକ୍ତ ବିଧିରେ ପବିତ୍ର ରହି ତଦୁକ୍ତ କ୍ରିୟାକଳାପ ସବିଧିରେ ସାଧନ ନ କଲେ ହୃଦୟରେ ସେ ବିଶ୍ୱାସ ଜାତ ହୋଇ ନ ପାରେ; ମଧ୍ୟ ସଦ୍‌ଗତି ରୁଦ୍ଧ । ଅତଃ ଶୃଙ୍ଖଳା ହୋଇପାରୁ ନାହିଁ । 'ବାପ ପୁଅ ଦୁହେଁ ରାତି ଅନିଦ୍ରା, ଘୁମୁରି ବା ମୃଗୁରି ଗାଣ୍ଡି ମେଲା ।' ଗାନ୍ଧୀ ବା ପ୍ରତିଭାଶାଳୀ ନେତାଙ୍କର ସେହି ଦଶା ନୁହେ କି ?

"ଅଜ୍ଞସ୍ୟାର୍ଦ୍ଧବୁଦ୍ଧସ୍ୟାଗ୍ରେ ସର୍ବଂ ବ୍ରହ୍ମେତି ଯୋ ବଦେତ୍ ।
ମହାନିରୟ-ଜାଲେଷୁ ସ ତେନ ବିନିଯୋଜିତଃ ॥"

ଭଗବତ୍ତତ୍ତ୍ୱ ହେଉ ବା ସାଂସାରିକ ବିଷୟ ହେଉ ଦେଶ-କାଳ-ପାତ୍ର ନେଇ ସାଧିତ ହେଲେ ସିଦ୍ଧି ହୋଇଥାଏ । ବ୍ୟତିକ୍ରମରେ କଦାଚ ହୋଇ ନ ପାରେ । ଯତଃ

"ତସ୍ୟୈବାହଂ ମମୈବାସୌ ସ ଏବାହମିତି ତ୍ରିଧା ।
ଭଗବଚ୍ଛରଣତ୍ୱଂ ସ୍ୟାତ୍ସାଧନାଭ୍ୟାସପାକତଃ ॥"

ଅର୍ଥାତ୍ ମୁଁ ଭଗବାନଙ୍କର, ମୋର ଭଗବାନ୍, ମୁଁ ଭଗବାନ୍ । ସାଧନ, ଅଭ୍ୟାସ, ପରିପାକରେ ସିଦ୍ଧ ହୋଇଥାଏ । ୧ମ—ମୁଁ ଭଗବାନଙ୍କର । ଯଥା—ପ୍ରଭୋ ! ତୁମ୍ଭର ମୋର ଭେଦ ନ ଥିଲେହେଁ ତୁମ୍ଭେ ସମୁଦ୍ର ପରି ମୁଁ ତରଙ୍ଗ ପରି । ସାଂସାରିକ ବିଷୟ ଯଥା—ଜଗତସ୍ଥ ସମସ୍ତେ ଏକ ଉପାଦାନସମ୍ଭୂତ ହେଲେହେଁ ବିଗୁଣ ବ୍ୟତିକ୍ରମ, ଶାସ୍ତ୍ରବିରୁଦ୍ଧାଚରଣ-ରକ୍ତଗତ-ସ୍ୱଭାବ ନେଇ କାମାଦି ରିପୁବଶୀଭୂତ:ସମ୍ଭୋଗଜ ଅଉ ପରଂପରାଗତ ସବଧି-ସମ୍ଭୋଗଜମାନେ ବା ସମସ୍ତେ ପ୍ରତ୍ୟେକ ଭିନ୍ନ ଭିନ୍ନ; ତନ୍ମଧ୍ୟରେ ମୁଁ ଗୋଟିଏ । ଅତଃ

"ସତ୍ୟପି ଭେଦାପଗମେ ନାଥ ତବାହଂ ନ ମାମକୀନସ୍ତ୍ୱଂ ।
ସମୁଦ୍ରୋ ହି ତରଙ୍ଗଃ କ୍ୱଚନ ସମୁଦ୍ରୋ ନ ତାରଙ୍ଗଃ ।"

ଏ ଭାବ ସନାତନଧର୍ମାନ୍ତର୍ଗତ କର୍ମଯୋଗଦ୍ୱାରା ସାଧନ ହୋଇଥାଏ । ସାଂସାରିକ ସମୁଚିତ କର୍ମସାଧନା ପ୍ରତ୍ୟେକ ଭିନ୍ନ ଭିନ୍ନ । ଦ୍ୱିତୀୟ—ମୋର ଭଗବାନ୍ । ଯଥା—ଭଗବାନ୍ ମୋର ସର୍ବସ୍ୱ, ସେ ମୋ ହୃଦୟରେ ଅବସ୍ଥିତ ବା ବରାବର ବିଦ୍ୟମାନ୍ । ସାଂସାରିକ ଯଥା—ସମସ୍ତେ ଓ ସବୁ କାର୍ଯ୍ୟ ଭଗବାନଙ୍କର ବା ମୋର । ମୋର ଅସ୍ତିତ୍ୱ ନାହିଁ । ମୁଁ ଯାହା କରୁଛି ସବୁ ଭଗବାନଙ୍କ କାର୍ଯ୍ୟ ।

"ହସ୍ତମୁତ୍କ୍ଷିପ୍ୟ ଯାତୋଽସି ବଲାତ୍ କୃଷ୍ଣ ଗରୀୟସଃ ।
ହୃଦୟାଦ୍ୟଦି ନିର୍ଯାସି ପୌରୁଷଂ ଗଣୟାମି ତେ ॥"

ଶଅସ୍ତ୍ର—ମୁଁ ଭଗବାନ୍ । "ସୋଽହଂ ଅହଂ ବ୍ରହ୍ମାସ୍ମି, ସର୍ବଂଖଲ୍ୱିଦଂ ବ୍ରହ୍ମ, ସକଳମିଦମହଞ୍ଚ ବାସୁଦେବଃ, ପରମ ପୁଂମାନ୍ ସ ଏକଃ ।" ସବୁ ଭଗବାନ୍‌ମୟ । ସମସ୍ତେ ମୋଠାରେ ବା ଭଗବାନଙ୍କଠାରେ ଅବସ୍ଥିତ । ବିଷାକ୍ତ-ଦୁଷ୍ଟସର୍ପ ଫଣା ଟେକି ଆଗରେ ଥିଲେ ଲୋକ ଯେପରି ଜାଗ୍ରତ ଥାଏ, ଜ୍ଞାନିମାନେ ସମସ୍ତଙ୍କୁ ଭଗବନ୍ମୟ ମଣି ଜାଗ୍ରତ ଥାନ୍ତି । କିନ୍ତୁ ପ୍ରଥମୋକ୍ତ ଭୟାତୁର, ଦ୍ୱିତୀୟ ପ୍ରେମାନନ୍ଦମୟ । "ଜ୍ଞାତୃ-ଜ୍ଞାନାଦି-କଳ୍ପନା-ପେକ୍ଷୟାଽଦ୍ୱିତୀୟ-ବସ୍ତୁନି, ତଦାକାରାକାରିତାୟା ବୁଦ୍ଧିବୃତ୍ତେରତି-ତରାମେକୀଭାବେନାବସ୍ଥାନଂ । ତଦାକାରାକାରିତ ଲବଣା-ନବଭାସେନ ଜଳମାତ୍ରାବଭାସବତ୍ ( ବେଦାନ୍ତସାର )।" ସାଂସାରିକ କାର୍ଯ୍ୟ କିଛି ନାହିଁ । କିନ୍ତୁ ଗାନ୍ଧୀ କଣ କଲେ ? ପରଂପରା ପ୍ରଚଳିତ ଭାରତୀୟ ଶ୍ରୁତି-ସ୍ମୃତି-ପୁରାଣୋକ୍ତ ବିଧି-ବିଧାନ କିଛି ନୁହେ ବୋଲି ପ୍ରଚାରଦ୍ୱାରା କର୍ମଯୋଗର ବିରୋଧାତ୍ମକ ଉପଦେଶ ଦେଇ ଏବଂ ଜ୍ଞାନସ୍ତରର ସର୍ବଶେଷ ଭାବ ଅର୍ଥାତ୍ ସମସ୍ତେ ଏକଜାତି ପ୍ରଭୃତି ବ୍ୟତିକ୍ରମାତ୍ମକ ମାର୍ଗରେ ଯେ ଚଳାଇଲେ, ବିଦେଶୀ-ବିଧର୍ମି-ଶିକ୍ଷିତ ପ୍ରତାପଶାଳୀ ଓ ପ୍ରତିଭା-ଶାଳୀମାନେ ଭୁଲିଗଲେ ସିନା; ତାହା ହେଉଛି କଂଗ୍ରେସୀୟଙ୍କ ମଧ୍ୟରେ ବିଭ୍ରାଟର ମୂଳ-କାରଣ । ଆର୍ଯ୍ୟରକ୍ତଗତ-ସମ୍ଭୂତମାନେ ଏକତ୍ର ହୋଇ ଏବଂ ସମୁପଯୁକ୍ତ ଶିକ୍ଷାଦ୍ୱାରା ଏକମନ ହୋଇ ଉଦ୍ଦେଶ୍ୟ କାର୍ଯ୍ୟ କରିଥିଲେ ଅନ୍ୟାନ୍ୟମାନେ କିଛି କରି-ପାରିଥାନ୍ତେ କି ? ବିଭିନ୍ନ ରକ୍ତଗତ-ସମ୍ଭୂତ ବିରୁଦ୍ଧ ବା ବିପରୀତ ମତାବଲମ୍ବିମାନଙ୍କ ଏକ ନିୟମରେ ଚଳାଇବା ବିଭ୍ରାଟର ଅନ୍ୟତମ କାରଣ । ପ୍ରକୃତିଗତ ପ୍ରବାହକୁ ଉଲଟାଇବା ମନୁଷ୍ୟର ସାଧ୍ୟାତୀତ । ମୂଳ-ନିୟମର କିଛି ବ୍ୟତିକ୍ରମକୁ ସହିଜଡ଼ା ଯାଇପାରେ ମାତ୍ର, ସେ ଯାହା ହେଉ ଗାନ୍ଧୀ 'ନଈରେ ହଜାଇ ପୋଖରୀରେ ଖୋଜିଲା ପରି' ବର୍ତ୍ତମାନ ବ୍ୟସ୍ତ ହୋଇ ଯାହା

କହୁଛନ୍ତି ତାକୁ ଅଧିକାଂଶ ପୂର୍ବପର ନ ମାନିବାରୁ ଉଦ୍ଦେଶ୍ୟ-କାର୍ଯ୍ୟ ନିଷ୍ଫଳ ପରି ଅନୁମାନ ହୁଏ । ବିଶେଷତଃ କେତେକ ଆର୍ଯ୍ୟ ବା ସନାତନୀରକ୍ତଗତ ବଂଶଧରଙ୍କ ଭାବ ଓ ମନ ବ୍ୟତିକ୍ରମ ହୋଇଗଲା ମାତ୍ର । "ଅତୋ ଭ୍ରଷ୍ଟସ୍ତତୋ ଭ୍ରଷ୍ଟଃ ।" ଅନ୍ୟାନ୍ୟ ବିଧର୍ମୀମାନେ ଆର୍ଯ୍ୟ ବା ସନାତନୀ-ରକ୍ତଗତ-ବଂଶଧରଙ୍କ ସଙ୍ଗରେ କଦାଚ ମିଶି ନ ପାରନ୍ତି ମଧ୍ୟ କାଳ-କାଳକୁ ମିଶିବେ ନାହିଁ । ତେଣୁ ଏବେ ଆର୍ଯ୍ୟତ୍ୱ ଓ ଭାରତୀୟଙ୍କ ମାହାତ୍ମ୍ୟ ଏବଂ କୀର୍ତ୍ତି ସମୂଳେ ଲୋପ କରି ବିଦେଶୀ-ବିଧର୍ମୀ-ବ୍ୟତିକ୍ରମ-କ୍ରିୟା ଅବଲମ୍ବନଦ୍ୱାରା ତାଙ୍କ ଶିଷ୍ୟ ବନିବାର ଯୋଗାଡ଼ ଲାଗିଛି । ତାହା ସମ୍ୟକ୍ ପ୍ରକାରେ ହୋଇ ନ ପାରେ । କେବଳ ଭାରତୀୟ ଆର୍ଯ୍ୟ ବା ସନାତନୀ-ସଂଖ୍ୟା କମିଯିବ ମାତ୍ର । ଭ୍ରଷ୍ଟାର୍ଯ୍ୟମାନେ 'ଗାନ୍ଧୀଧର୍ମୀ' ବୋଲି ଖ୍ୟାତ ହେବା ସମ୍ଭାବନା ।

ମନୁଙ୍କଠାରୁ ମାନବତ୍ୱ ସିଦ୍ଧ । ତତଃ ମନୁସଂହିତୋକ୍ତ ଶାସନପାଳନାଦି ବିଧି-ବ୍ୟବସ୍ଥା ମାନବ ପକ୍ଷରେ ଯଥୋପଯୁକ୍ତ ଉପାଦେୟ । ତାର ବ୍ୟତିକ୍ରମରୁ ଜଗତରେ ନାନା ପ୍ରକାର ବିଭ୍ରାଟ ଲାଗିଛି । ବିଶେଷତଃ ଭାରତୀୟଙ୍କ ସକାଶେ ମହାଭାରତୋକ୍ତ ହେଉଛି ସର୍ବୋତ୍ତମ ଉନ୍ନତିକର ହିତୋପଦେଶ ଓ ଆଲୋକପ୍ରଦ ଇତିହାସ । ତହିଁ ମଧ୍ୟରେ ନାନା ପ୍ରକାର ତତ୍ତ୍ୱ ଓ କ୍ରିୟାକଳାପର ପ୍ରତ୍ୟକ୍ଷ ଘଟନା ଉଲ୍ଲେଖ ହୋଇଥିଲେହେଁ ରାଜା-ପ୍ରଜା-ସମ୍ବନ୍ଧ ଓ ଗୃହସ୍ଥାଶ୍ରମୀ ପକ୍ଷରେ ସମୁଚିତ ମୀମାଂସା ଶାନ୍ତିପର୍ବରେ ନିହିତ । ତଦାଚରଣରୁ ତାର ଧକ୍କା ବା ଜୋରରେ ଭାରତ ବହୁକାଳ ସୁଶୃଙ୍ଖଳିତ ଓ ସ୍ୱାଧୀନ ଥାଇ ଜଗତରେ ଟେକ ଦେଖାଇ ଆସିଥିଲା । କ୍ରମେ କ୍ରମେ ତାହାର ବ୍ୟତିକ୍ରମରୁ ବହୁକାଳ ପରାଧୀନ ଓ ସତ୍ତ୍ୱାର୍ଥଶୂନ୍ୟ ହୋଇ ବର୍ତ୍ତମାନ ବିଦେଶୀୟ ଏବଂ ସ୍ୱଦେଶୀୟ-ନୀତି ଅବଲମ୍ବନରେ ସ୍ୱାଧୀନତାକୁ ଉନ୍ମୁଖ ହେଉଛି । କିନ୍ତୁ ମହାଭାରତୋକ୍ତ ନୀତି'

ଶୃଙ୍ଖଳା ଓ ଧର୍ମଭାବକୁ ଛାଡ଼ି ଯଦି ବିଧର୍ମୀ-ନୀତିକି କେବଳ ଅବଲମ୍ବନ କରାଯାଏ, ତେବେ "ଅତୋ ଭ୍ରଷ୍ଟସ୍ତତୋ ଭ୍ରଷ୍ଟଃ" ବିଶୃଙ୍ଖଳିତ ହୋଇ ଭାରତୀୟମାନେ ଅତି ପ୍ରପୀଡ଼ିତ ଓ ଭ୍ରଷ୍ଟ ହୋଇଯିବେ; ଅତଃ ସାବଧାନ ।

କେତେକ ଗଡ଼ଜାତ ରାଜନ୍ୟବର୍ଗ ଓ ବଡ଼ ବଡ଼ ଜମିଦାର ଏବଂ ଧନୀ ମହାଜନଙ୍କ ସାହାଯ୍ୟରେ କେତେକ ସାଧାରଣ ହିତକର ଓ ଉନ୍ନତିକର କାର୍ଯ୍ୟ ବରାବର ହେଉଥିଲା । ବର୍ତ୍ତମାନ ନାନା ପ୍ରକାର ବିଭ୍ରାଟହେତୁ ସେମାନଙ୍କର ସବିଶେଷ ଅସୁ ବିଧା ଓ ବାଜେ ଖରଚର ଉପକ୍ରମ ହେଉଛି । କେବଳ ଯେଉଁମାନଙ୍କର ବିଦେଶୀ-ଜିନିସ ଓ ବିଦେଶରେ ବ୍ୟୟ ହେଉଥିଲା ତାହା ଅବରୁଦ୍ଧ କରିବା ଉଚିତ ଥିଲା; କିନ୍ତୁ କଂଗ୍ରେସ-ସର୍କାର ଓ ବିଖେଡ଼ଦାର ଏବଂ ସାମ୍ୟବାଦୀମାନେ 'ଉହି ଉହି ଯାଉ-ଅଟକାଳୀ ପାଖେଇ ପାଖେଇ ନ ଖାଇ ମଝିରେ ହାତ ପୂରେଇ ଘାଣ୍ଟିଲେ ପାଣି ଫାଟିଯିବା ପରି' ସବୁ ଉନ୍ନତିକର କାର୍ଯ୍ୟ ବନ୍ଦ ଓ ସବୁ ବିପ୍ଳବ ଘଟୁଛି । ଇଂରେଜମାନଙ୍କ ଶୃଙ୍ଖଳାକୁ ଅନୁମାନ କରାଯାଉ । ବିଶେଷତଃ ଆର୍ଯ୍ୟଭୂମିରେ ଅନାର୍ଯ୍ୟକ୍ରିୟା ସବୁ ଗୋଳମାଳର କାରଣ । ଏହା ନିରାଟ ସତ୍ୟ । ଯାହା କଲେ ଦେଶ ଅଳ୍ପାୟାସରେ ସ୍ୱାଧୀନ ହୁଅନ୍ତା ଆଉ ସାଧାରଣଙ୍କର ଇହ-ପରକାଳ ଉନ୍ନତ ହୁଅନ୍ତା, ଦାମ୍ଭିକତା ହେତୁ ସେ ମାର୍ଗ ଦିଶୁ ନାହିଁ । ସନାତନଧର୍ମର ବ୍ୟତିକ୍ରମ ଘଟିଥିଲେହେଁ ପରଂପରା-ଗତ ହିନ୍ଦୁ-ରକ୍ତ-ସମ୍ଭୂତମାନେ ଅଭାବଗ୍ରସ୍ତହେତୁ କଂଗ୍ରେସ-ମୁଖ-ପତ୍ର ଓ କଷ୍ଟସହିଷ୍ଣୁ-କଂଗ୍ରେସୀଙ୍କ ପ୍ରଚାରିତ ଉନ୍ନତିକର ଆଶାରେ ଆଶାନ୍ୱିତ ହୋଇ କେତେକ କଂଗ୍ରେସ-ମେମ୍ବର ହୋଇ କଂଗ୍ରେସ ଆଡ଼କୁ ଢଳିପଡ଼ିଲେ ସିନା ! ବର୍ତ୍ତମାନ ତାହା କିଛି ନ ଦେଖି ବ୍ୟର୍ଥମନୋରଥ ଏବଂ ଅଧିକ-ସଂଖ୍ୟକ ହିନ୍ଦୁ 'ହିନ୍ଦୁ ଧର୍ମର' ବିପରୀତ-କ୍ରିୟା ଦେଖି ଏବେ କେତେକ

ପସ୍ତ୍ରେଇବାର ଅନୁମାନ ହୁଏ । କାର୍ଯ୍ୟ-ସାଧନ ସଂଶୟ ସ୍ଥଳେ ସମ୍ପୂର୍ଣ୍ଣ-ସିଦ୍ଧିର ଆଶା ଦେବା ଅନୁଚିତ । ତାହା 'ବୁଭୁକ୍ଷିତ କ୍ଷୁଧାର୍ତ୍ତଙ୍କୁ ଉତ୍ତମ-ଖାଦ୍ୟ ଦେବାର ଆଶା ଦେଖାଇ ନିରାଶ କରିବା ପରି' । ବିଶେଷତଃ ଆଜିକାଲି ଅଧିକାଂଶ ମୁଖମାଧୁର୍ଯ୍ୟ ଧୋବଲଣ୍ଠକ ପଣ୍ଡାଓପଯୁକ୍ତ ଶକ୍ତି ଥିଲେହେଁ ଯେ କୌଣସି ପ୍ରାର୍ଥିକୁ ନୈରାଶ୍ୟ ବାକ୍ୟ ନ କହି କୁଟିଳ ଦାମ୍ଭିକତାରେ ଆକାଂକ୍ଷିତ କରି ପରେ ନିରାଶ କରିଥାନ୍ତି । ପ୍ରାଣୀର ଆଶାଜନକ ଦୁଃଖ ଯନ୍ତ୍ରଣାର ପାପଭାଗୀ ହୋଇ ପରକାଳରେ ତନ୍ନିମିତ୍ତ ଯମଯନ୍ତ୍ରଣା ଭୋଗ କରିବା ତ ନିଶ୍ଚୟ; ମଧ୍ୟ ତଦ୍ଦ୍ୱାରା ପ୍ରାର୍ଥିର ଓ ଜଗତର ମହତ୍ କ୍ଷତି ହୋଇଥାଏ । ଶକ୍ତ୍ୟନୁସାରେ ଦାନ ବା କାର୍ଯ୍ୟ ସାଧନ କରିଦେବା ବା ପ୍ରଥମରୁ ନିରାଶ କରିଦେବା ଉଚିତ । ଆଶାର୍ଥୀ ବାରବାର ବ୍ୟସ୍ତ କଲେ କେବଳ ଯୋଡ଼ିଏ ଅକ୍ଷର 'ନାହିଁ' ବ୍ୟତୀତ ଆଳାପ ନଦାରଦ । "ଆଶା ହି ପରମଂ ଦୁଃଖଂ ନୈରାଶ୍ୟଂ ପରମଂ ସୁଖଂ ।"

ସନାତନୀ ସୁଖଶାନ୍ତି ଓ ବିପ୍ଳବର ନିର୍ଯାସ :—ସନାତନଧର୍ମ-ଶାସ୍ତ୍ରୋକ୍ତ ପରଂପରା-ପ୍ରଚଳିତ-କ୍ରିୟା-କଳାପର ସମୁଚିତ ଜାଗ୍ରତ ନ କରାଇ କଂଗ୍ରେସ-ସର୍କାର ଓ ସାମ୍ୟବାଦୀ ପ୍ରଭୃତି ରାଜା, ଜମିଦାର, ମକଦ୍ଦମ, ପ୍ରଜା, ସାଉ, ଖାତକ, କୃଷକ, ଶ୍ରମିକ ଓ ମଠ-ମନ୍ଦିରାଦି ମଧ୍ୟରେ ଶୃଙ୍ଖଳାସମାଧାନ ନ କରାଇବାରୁ ଯେପରି ଗୋଳମାଳ ଓ ବିଭ୍ରାଟର ସୃଷ୍ଟି ହୋଇଛି; ସମସ୍ଥାନଯାୟୀ କଂଗ୍ରେସୀମାନଙ୍କ ମଧ୍ୟରେ ଏବଂ ଦେଶ, ପ୍ରଦେଶ, ଜିଲ୍ଲା, ଗ୍ରାମ ଓ ନିଜ ନିଜ ମଧ୍ୟରେ ନାନା ପ୍ରକାର ଦଳଗତ ଏବଂ ସାମ୍ପ୍ରଦାୟିକ ମେଖିଡ଼ ପଶି ଉତ୍କଟ ବିଭ୍ରାଟ ଓ ଅମାନୁଷିକ କାର୍ଯ୍ୟ ନିଶ୍ଚୟ ଘଟିବ । ଅଦ୍ୟରୁ କଂଗ୍ରେସୀମାନଙ୍କ ମଧ୍ୟରେ ତାହାର ସୂଚନା ମିଳିଲାଣି । ଧର୍ମ-ଶୃଙ୍ଖଳା ନ ଥିବାରୁ ସାମ୍ପ୍ରଦାୟିକ ଭାବ ନେଇ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଯେ ବିଭ୍ରାଟ ଘଟୁଛି, ବ୍ରିଟିଶ ସର୍କାର

ହେତୁ ବା କଂଗ୍ରେସ ସର୍କାର ହେତୁ ନିବାରଣ କରି ପାରୁଛନ୍ତି କି ? ଇହ-ଜନ୍ମକୃତ ପାପ ଓ ପୁଣ୍ୟର ଫଳ ଇହ ଜନ୍ମରେ ବା ଜନ୍ମଜନ୍ମାନ୍ତରେ ନିଷ୍ଚୟ ଭୋଗ କରିବାକୁ ହେବ; ଏ ଭାବ ହୃଦୟରେ ଜାଗ୍ରତ ନ ହେଲେ ଜଗତ ଶୃଙ୍ଖଳାରେ କଦାଚ ଚଳି ନ ପାରେ । ଏହା ନିଷ୍ଚୟ, ମହାସତ୍ୟ ।

ଗୋଟିଏ ବିଷୟକୁ ଅନୁସନ୍ଧାନ କରାଯାଉ । ଆମ୍ଭମାନଙ୍କର ଏହି ଭୌତିକ ଅନୁନ୍ନତ ଦେଶ-ପ୍ରଦେଶରେ ଯେ ଖ୍ୟାତନାମା ଓ ସ୍ୱଚ୍ଛଳାବସ୍ଥାପନ୍ନ ଲୋକମାନେ କିମ୍ବା ତଦ୍ରୂପ ନ ହେଲେହେଁ ଯେଉଁମାନେ ଅପେକ୍ଷାକୃତ ଶାନ୍ତି-ସୁଖରେ ଚଳନ୍ତି, ସେମାନଙ୍କର ପିତୃ-ପିତାମହାଦି ଅବସ୍ଥାନୁଯାୟୀ ଦୁର୍ବୃତ୍ତି, ଦୁଃସାଧକ, ଦୁରନୁଷ୍ଠାନରତ, ପରପୀଡ଼କ, ପରବିତ୍ତାକାଂକ୍ଷୀ ଥିଲେ କି ? ଅତି ଯତେନ୍ଦ୍ରିୟ, ପବିତ୍ରାତ୍ମା, ନିଷିଦ୍ଧାଶନ-ରହିତ, ନିଷ୍କପଟୀ, କୌଳିକ-ସତ୍‌କ୍ରିୟାନିଷ୍ଠ, ନୈଷ୍ଠିକ ଏବଂ ଧର୍ମଭୀରୁ ନ ଥିଲେ କି ? "ପୁନେ ଯଶସି ତୋୟେଷୁ ବଶୁଦ୍ଧାନାଂ ବିଶୁଦ୍ଧିତା" । ଏତଦ୍‌ବ୍ୟତୀତ ବଂଶଧରମାନେ ବଡ଼ାଠାମ୍ଭକ ଖ୍ୟାତନାମା ଓ ବିତ୍ତଶାଳୀ ହେଲେହେଁ ସର୍ବଦା ସନ୍ତପ୍ତ ଓ ଅଶାନ୍ତିରେ ଘାଣ୍ଟି ହେଉ ନାହାନ୍ତି କି ? ଯାହାହେଉ ସର୍ବପ୍ରଧାନ ପ୍ରତିକାର ହେଉଛି ପରଂପରାଗତ ଧର୍ମଶାସ୍ତ୍ରୋକ୍ତ ବିଧିବିଧାନ ଅନୁଯାୟୀ ସତ୍‌କ୍ରିୟାରେ ରହି ବିପତ୍ତି-ସମୟରେ ସନାତନ ସୃଷ୍ଟିକର୍ତ୍ତାଙ୍କ ଅର୍ଦ୍ଧରେ ନିବେଦନ କଲେ ସେ ଗୁଣାତ୍ମକ-ଶରୀର ଧାରଣ କରି ପ୍ରତିକ୍ରିୟାଦ୍ୱାରା ବା ଦେଶ-କାଳ-ପାତ୍ରାନୁଯାୟୀ ବିପକ୍ଷର ଅନ୍ତଃକରଣରେ ସମୁଚିତ ଶକ୍ତି ସଂଚାର କରାଇ ସର୍ବତୋଭାବେ ରକ୍ଷା କରିବେଇ କରିବେ । ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ଏହା ହେଉଛି ସର୍ବପ୍ରଧାନ ଉପାୟ ( ଭାରତୀୟ ଐତିହାସିକ-ପୁରାଣ ଦ୍ରଷ୍ଟବ୍ୟ )। ଅତି ସୃଷ୍ଟିକର୍ତ୍ତାନଭିଜ୍ଞ ସନାତନେତର ବିଦେଶୀୟମାନେ ସାଂସାରିକ ଶୃଙ୍ଖଳାକୁ ଦୃଢ଼ଭାବେ ମାନି ଆଗରୁ ଚଳି ଆସୁଥିବାରୁ ପୂର୍ବେ

ସେ ଦେଶରେ ଅଳ୍ପକାଳ ପରେ ତେତେ ବିପ୍ଳବ ନ ଥିଲେହେଁ ଭଗବତ୍ପ୍ରାନଭକ୍ତି ଓ ସନାତନଧର୍ମ-ଶାସ୍ତ୍ରୋକ୍ତ କ୍ରିୟା-କଳାପର ବିପରୀତାଚରଣ ଆଉ ଇହଜନ୍ମରେ ବା ଶରୀର ପତନ ପରେ କୁ-ସୁ-କର୍ମର ଫଳ ଭୋଗ କରିବା ଅବିଶ୍ୱାସରୁ ସେ ଶୃଙ୍ଖଳା ଚିରସ୍ଥାୟୀ ନୋହି ବିପ୍ଳବରେ ପରିଣତ ହୋଇଛି । ଏହା ନିଷ୍ଟୟ ନିଷ୍ଟୟ ମହାସତ୍ୟ ( ସେ ସବୁ ଦେଶର ପୂର୍ବ ଇତିହାସ ଦ୍ରଷ୍ଟବ୍ୟ ) । ଅତଃ ହେ ସନାତନୀ ବଂଶୋଦ୍ଭବମାନେ ! ସାବଧାନ ! ସାବଧାନ !

---

## ସର୍ବଶ୍ରେଷ୍ଠ ମନ୍ତବ୍ୟ

ସାଧାରଣଙ୍କୁ ନିବେଦନ, ଭାରତୀୟଙ୍କର ଓ ନିଜର ସର୍ବବିଧ ଉନ୍ନତି ଏବଂ ସ୍ୱାଧୀନତା ହାସଲକୁ ଯଦି ଆଶା କରାଯାଏ, ତେବେ ପ୍ରତ୍ୟେକ ପ୍ରଦେଶର ଭୂମିକର ଓ ଆଉ ଯେତେ ପ୍ରକାର ଟିକସାଦି ସମସ୍ତଙ୍କଠାରୁ ସବିଧି ସମାନ ତ ଆଦାୟ ହୋଇଥାଏ । ଅର୍ଥାତ୍ ନ୍ୟୂନସଂଖ୍ୟା ବା ବହୁସଂଖ୍ୟାରୁ ବେଶୀ କମି ଅଦାୟ ତ ହେଉ ନାହିଁ ( ଯାହା କି ସାଧାରଣଙ୍କ ସକାଶେ ବ୍ୟୟ ହେଉଛି )। ତେବେ ଯେଉଁ ସମ୍ପ୍ରଦାୟରୁ ଯେତେ ଆଦାୟ ହୁଏ, ତାହା ଯଦି ସମ୍ପ୍ରଦାନୁଯାୟୀ ଶିକ୍ଷା, ସ୍ୱାସ୍ଥ୍ୟ ପ୍ରଭୃତିରେ ବ୍ୟୟ କରାଯାଏ ତେବେ କୌଣସି ଗୋଳମାଳର ସମ୍ଭବ ହୁଅନ୍ତା କି ? ଆଉ ସର୍କାର-ଚାକିରୀ ସମ୍ବନ୍ଧରେ ବହୁ ବେତନାତ୍ମକ ଗ୍ରେଡ଼ ପ୍ରଥା ଉଠିଯାଇ ସାଂସାରିକ ପ୍ରତ୍ୟେକ ଲୋକର ହାରାହାରି ଆୟ ଅପେକ୍ଷା କିଛି କିଛି ବେଶୀ ବା କୁଟୁମ୍ବ ସଂଖ୍ୟାନୁଯାୟୀ ବେତନ ନିରୂପଣ ଉଚିତ । ବିଶେଷତଃ ଦକ୍ଷତା ଓ ବିଶ୍ୱାସ ନେଇ ପୁରସ୍କୃତ ହେବା ଉଚିତ । ସମୁଚିତ ବାଜେ ଖର୍ଚ୍ଚ ଓ ଚତୁର୍ଥାଂଶ ଅଧିକ ପାଇବା ଉଚିତ । ଏତଦ୍‌ବ୍ୟତୀତ ଯେ ସାମ୍ପ୍ରଦାୟିକ ଭାଗବଣ୍ଟା ପ୍ରଭୃତି ଅନୁପଯୁକ୍ତ ଆଇନ

ହେଉଛି, ସେ ସବୁ ବଭ୍ରାଟ ଓ ଗୋଳମାଳର ମୂଳକାରଣ । ତତଃ ଉପରମତ 'କଙ୍କଡ଼ାକୁ ଗୋଲପାଣି ସ୍ୱାହୁଲ ପରି' ହେଉ ନାହିଁ କ ? 'ନିର୍ଗୁଣ ରଙ୍କୁ କରେ ଧର, ମୃଗୀ ନଗୁଏ ନରହର ।' ଯ୍ୱଃ । ଭାରତୀୟମାନେ ମହୋପକାରୀ ବଦ୍ୟା ନ ପଢ଼ି ବହୁ ବେତନ-ଅଶାରେ ପ୍ରାୟ ସମସ୍ତେ ସର୍କାରର କାମ ହାସଲେପଯୋଗୀ ଶିକ୍ଷାରେ ମଜ୍ଜିଛନ୍ତି । ( ଗ୍ରାହକଙ୍କ ଅଧିକ କାହୁଁ ଅସିବ ? ) ନ ଯୁଟିଲେ ଅକର୍ମୀ ସଂଖ୍ୟା ବଢ଼ି ନାନା ବଭ୍ରାଟ ଲଗିଛି । ଅନ୍ୟାନ୍ୟ ଧନାଢ଼୍ୟ ଦେଶରେ ରାଜକର୍ମଗ୍ରାହୀ ପ୍ରଭୃତ ସେ ସବୁ ଦେଶସ୍ଥ ସାଧାରଣଙ୍କ ଆୟ ଅପେକ୍ଷା ଯେତେ ଗୁଣ ବେତନ ପାନ୍ତି, ଅମ୍ଭ ଧନ-ସଙ୍କଳ ଗରିବ ଭାରତରେ ରାଜକର୍ମଗ୍ରାହୀମାନେ ଭାରତୀୟଙ୍କ ଆୟର ଶତ ଶତ ସହସ୍ର ସହସ୍ର ଗୁଣ ଅଧିକ ପାଇଥାନ୍ତି । ତତଃ ଭାରତୀୟମାନେ କଳ୍‌ବଳ୍, ହାଁ ହାଁ, ଅସ୍ଥି କଙ୍କାଳମାଳା । ତନ୍ମଧ୍ୟରେ ଓଡ଼ିଆ ଶ୍ରେଷ୍ଠତମ । ସନାତନଧର୍ମ-ଶାସ୍ତ୍ରୋକ୍ତ ପରଂ-ପରାଗତ ବର୍ଣ୍ଣ-ଜାତି-ପାଙ୍କ ନେଇ ଯଥୋପଯୁକ୍ତ କାର୍ଯ୍ୟ ନିର-ତରେ ଚଳିଲେ କେହି ଅକର୍ମୀ ନ ହୋଇ ସମସ୍ତେ ଯଥୋପଯୁକ୍ତ ଭାବେ ଆନନ୍ଦ ଓ ଶାନ୍ତିରେ ଚଳିବା ନିଶ୍ଚୟ । ସର୍କାରୀ-ବହୁବେତନ-ବଧି ସବୁ ଅଶାନ୍ତି ଓ ଅବନତିର ମୂଳ କାରଣ । ଉଦ୍‌ବୃତ୍ତ ଅର୍ଥ ସାଧାରଣ କାର୍ଯ୍ୟରେ ଲଗିଲେ ଭାରତୀୟ ସମସ୍ତଙ୍କର କେତେ ଶ୍ରେୟ ନୁହନ୍ତା କ ? "ଏକକ୍ରିୟା-ଦ୍ୱ୍ୟର୍ଥକରୀ ବହୁବଃ ।" ସର୍କାରୀ କାର୍ଯ୍ୟଗ୍ରାହକ ପ୍ରଭୃତ ବହୁବେତନ-ଭୋଗୀ ମାନେହିଁ ଅଧିକାଂଶ ଏ ବଧିକି ନାପସନ୍ଦ ବା ପଗଲମୀ କହିପାରନ୍ତି । ଯେଉଁମାନେ କ ତଳକୁ ବା ସାଧାରଣଙ୍କୁ ଆଦୌ ନ ଚାହିଁ କେବଳ ବହୁ-ବିତ୍ତଶାଳୀଙ୍କି ଚାହୁଁଥିବାରୁ ସଦ୍‌ବୁଦ୍ଧି ଓ ଶାନ୍ତି ନ ଲଭି ସଦା ଦରିଦ୍ରତାତ୍ମକ-ସନ୍ତାପାନଳରେ ଜର୍ଜ୍ଜରିତ । ଯତଃ

"ଅଧୋଽଧଃ ପଶ୍ୟତଃ କସ୍ୟ ମହିମା ନୋପଚୀୟତେ ।
ଉପର୍ଯ୍ୟୁପରି ପଶ୍ୟନ୍ତଃ ସର୍ବ ଏବ ଦରିଦ୍ରତି ॥"

ବର୍ତ୍ତମାନ ଅଧିକାଂଶ ତଳସ୍ତରକୁ ନ ଗ୍ରହିଁ ଲୋଭବଶତଃ ସବୁ ବିଷୟରେ କେବଳ ଉପରକୁ ଗ୍ରହୁଁଥିବା ଅର୍ଥାତ୍ ସର୍ବ-ପ୍ରଧାନ ବା ଉଚ୍ଚସ୍ଥ ହେବାକୁ ବିକୃତାତ୍ମକ ମନ-ବଚନ-କର୍ତ୍ତବ୍ୟ ସହ ମଜ୍ଜି ଥିବାରୁ ସବୁପ୍ରକାର ବିଭ୍ରାଟ "ନମନ୍ତି ଗୁଣିନୋ ଜନାଃ" ବା 'ତର୍ଜ୍-ତଉଲ୍ ସାନ ବଡ଼କୁ, ଯେ ବଡ଼ ହୁଏ ସେ ଲଏଁ ତଳକୁ' ଓ ଅଧୋଗତ ହେଉଛନ୍ତି । ସବିଧି-ସଂସ୍କାର-ଦ୍ୱିଜତ୍ୱ ଓ ସମୁଚିତ ସତ୍କର୍ମ ବିନା ଶେଷସ୍ତର ବ୍ରାହ୍ମଣତ୍ୱ ( ଭଗବାନ୍ କହିଥିଲେ ଜଗତସ୍ଥ ସମସ୍ତେ ଦେବତାଙ୍କର ଅଧୀନ, ଦେବତାମାନେ ମନ୍ତ୍ରର ଅଧୀନ, ମନ୍ତ୍ର ବ୍ରାହ୍ମଣର ଅଧୀନ; ଅତଃ ବ୍ରାହ୍ମଣ ମୋର ଦେବତା "ଦୈବାଧୀନା ଜଗତ୍ସର୍ବେ ମନ୍ତ୍ରାଧୀନାଶ୍ଚ ଦେବତାଃ । ତନ୍ମନ୍ତ୍ରା ବ୍ରାହ୍ମଣାଧୀନା ବ୍ରାହ୍ମଣା ମମ ଦେବତାଃ ।" ତତଃ ସମୁଚିତ କ୍ରିୟାଦ୍ୱାରା ବ୍ରାହ୍ମଣ-ବଂଶୀୟଙ୍କ-ଠାରେ ଯଦି ବ୍ରହ୍ମତ୍ୱ ଜାଗ୍ରତ ହୁଅନ୍ତା ତେବେ କୌଣସି ବିପ୍ଳବ ବା ଅନର୍ଥ ଘଟନ୍ତା କି ? ବର୍ତ୍ତମାନ ଅଧିକାଂଶ ବ୍ରାହ୍ମଣ-ବଂଶୀୟଙ୍କ ଆଚରଣକୁ ଭାବିଲେ କ୍ଷୋଭ ଆସେ ); ସ୍ମାର୍ତ୍ତ ପରିପାକ ବିନା ମା-ପେଟରୁ ପଢ଼ି ପରମାର୍ଥ, ଅଦ୍ୱୈତ, ବିଶିଷ୍ଟାଦ୍ୱୈତ; କନା ଖଣ୍ଡେ କଉପୁନୀ ମାରି କାଠମାଳୀ ଗୋଛାଏ ବାନ୍ଧି ଶୈବ ବିନା ବୈଷ୍ଣବ ( ସୃଷ୍ଟି ସୃଷ୍ଟା ପୂର୍ବେ ଅନାଦି-ଅନନ୍ତ-ଅବ୍ୟକ୍ତ-ଅନିର୍ଦ୍ଦେଶ୍ୟ-ସନାତନ ବା ଚୈତନ୍ୟ ଯେ ଥିଲେ ଗୁଣମୟସୃଷ୍ଟି ଉପକ୍ରମ ସକାଶେ ତାଙ୍କଠାରୁ ବେଦର ବୀଜାତ୍ମକ-ସଙ୍କେତ ନାଦ ବା ଶବ୍ଦ ଅର୍ଦ୍ଧମାତ୍ରାତ୍ମକ; ତ୍ର୍ୟକ୍ଷର-ସମନ୍ୱିତ-ଏକାକ୍ଷର ପ୍ରଣବ "ଓଁ"=ଅ-ଉ-ମ, ଯଥା; ଅ=ବିଷ୍ଣୁ, ଉ=ଶିବ, ମ=ବ୍ରହ୍ମା; ଅର୍ଦ୍ଧମାତ୍ରା=ବିନ୍ଦ୍ୱର୍ଦ୍ଧ ଚନ୍ଦ୍ରାକାରଂ ଚତୁର୍ଥଂ ଅବ୍ୟକ୍ତଂ ଶାନ୍ତଂ ଶିବଂ ଅଦ୍ୱୈତଂ ବ୍ରହ୍ମ—ସୃଷ୍ଟି-ସର୍ଜନ-ପାଳନ-ସଂହାର ସକାଶେ ସର୍ବଶେଷ ଗୁଣାତ୍ମକ ତ୍ରି-ମୂର୍ତ୍ତି ଧାରଣ କରିଥିଲେ । "ଅକାରେଣ ଜଗତ୍ପାତା ସଂହର୍ତ୍ତାସ୍ୟାଦୁକାରତଃ । ମକାରେଣ ଜଗତ୍ସ୍ରଷ୍ଟା ପ୍ରଣବାର୍ଥ

ଉଦାହୃତଃ" । ସେ ତ୍ର୍ୟକ୍ଷରାତ୍ମକ ତ୍ରିମୂର୍ତ୍ତି ଏକ । ଯାହାଙ୍କଠାରୁ ନାମରୂପାତ୍ମକ ସମସ୍ତ ଜଗତ ଏବଂ ବେଦାଦି ସମସ୍ତ ଧର୍ମଶାସ୍ତ୍ର ଓ ବିଧି ବିଧାନାଦି କ୍ଷରୁଛନ୍ତି । ଏ ପ୍ରଣବ ବା ଏକାକ୍ଷର "ଓଁ" ବା ପ୍ରାଣାୟାମ ବିନା ସନାତନ ଧର୍ମାତ୍ମକ ଦେବ-ପିତୃ-ପୂଜା ପ୍ରଭୃତି କୌଣସି କର୍ମାଦି ଏବଂ ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ସ୍ତବ, କବଚାଦି ପଠନ, ସ୍ମରଣ, ଜପ, ସତ୍ସାଧନାଦି ହୋଇ ନ ପାରେ । ତ୍ର୍ୟକ୍ଷରରୁ ଗୋଟିଏ ଅକ୍ଷର ଛାଡ଼ିଲେ ଯେପରି ପ୍ରଣବ ବୋଲାଇ ନ ପାରେ ଆଉ ପ୍ରଣବ ବିନା କୌଣସି ଧର୍ମ୍ମ-କାର୍ଯ୍ୟ ହୋଇ ନ ପାରେ ସେହିପରି ଉପରୋକ୍ତ ତ୍ରିଦେବରୁ ଜଣଙ୍କୁ ଛାଡ଼ିଲେ କୌଣସି ଧର୍ମ୍ମକର୍ମ ସିଦ୍ଧ ହୋଇ ନ ପାରେ । ତତଃ ସଂସ୍କାରାତ୍ମକ ସଦ୍ଧର୍ମ-ସାଧକ ମାନଙ୍କର ପ୍ରାତ୍ୟହିକ ଅବଶ୍ୟ ବାଞ୍ଛିତାଚରଣାନୁଷ୍ଠାନ ସନ୍ଧ୍ୟାନ୍ତର୍ଗତ ସର୍ବପ୍ରଧାନ ଯୋଗାତ୍ମକ ଷଷ୍ଠ୍ୟକ୍ଷର ସମନ୍ୱିତ ମନ୍ତ୍ର=ପ୍ରାଣାୟାମ-ସାଧନରେ ନାଭି-ହୃଦୟ-ଲଲାଟ-ଚକ୍ର-ପଦ୍ମରେ ଯଥାକ୍ରମେ ବ୍ରହ୍ମା-ବିଷ୍ଣୁ-ଶିବ ତ୍ରିମୂର୍ତ୍ତିଙ୍କୁ ଧ୍ୟାନ କରାଯାଇଥାଏ । ଅତଃ "ପ୍ରଣବଃ ସର୍ବବେଦେଷୁ, ଗିରାମସ୍ମ୍ୟେକମକ୍ଷରଂ, ରୁଦ୍ରାଣାଂ ଶଙ୍କରଶ୍ଚାସ୍ମି, ଧାତାହଂ ବିଶ୍ୱତୋ ମୁଖଃ । ବୃଷ୍ଣୀନାଂ ବାସୁଦେବୋଽସ୍ମି ।" ଗୀତା । ସେ ତ୍ରି-ଦେବ ଏକ । କେତେକ ଅଜ୍ଞ ତାଙ୍କଠାରେ ଭେଦଭାବ କରଥାନ୍ତି । ତତଃ ଜଗତରେ ସନାତନଧର୍ମର ବିଶୃଙ୍ଖଳା ଘଟୁଛି) । ସେ ଯାହାହେଉ କଂଗ୍ରେସୀପ୍ରମାନେ ସମୁପଯୁକ୍ତ ଶିକ୍ଷା ଓ ତଳସ୍ତର କାର୍ଯ୍ୟସାଧନ ବିନା ସ୍ୱାଧୀନତା ବା ଦେଶୋଦ୍ଧାର ଚେଷ୍ଟା, ପ୍ରକୃତ ଚାଷ କର୍ଷଣ ବିନା ଭୂ-ମାତାଠାରୁ ଯଥେଚ୍ଛା ଶସ୍ୟ ଓ ପ୍ରକୃତ ପାଳନ ବିନା ଗୋ-ମାତାଠାରୁ ସୁ-ସାର କ୍ଷୀରାଦି, ବୃକ୍ଷ ରୋପଣ ଓ ପାଳନ ବିନା ସୁମିଷ୍ଟ ଫଳାଶା, ସନାତନଧର୍ମଶାସ୍ତ୍ରୋକ୍ତ ବର୍ଣ୍ଣାଶ୍ରମାନୁଷ୍ଠାନାତ୍ମକ ସାକାରୋପାସନା ବିନା ଶେଷସ୍ତର ଅଭେଦ ଅଣାକାର ଉପଦେଶ ଓ ପ୍ରଚାର, ସମୁଚିତ ଧନୁର୍ବେଦାତ୍ମକ-ମନ୍ତ୍ର ସ୍ମରଣ

ବିନା ଶସ୍ତ୍ରାସ୍ତ୍ର ପ୍ରୟୋଗ, ଦେବ-ପିତୃ-ଋଣ ପରିଶୋଧ-କିମ୍ବା ବିନା ମୌରସୀ ବା ପିତୃ-ସମ୍ପତ୍ତିରେ ଅଧିକାର—(ବର୍ତ୍ତମାନ କେତେକ ନବ୍ୟସଭ୍ୟଙ୍କ ମତକୁ ଅନୁମାନ କଲେ ସବିଶେଷ କୌଣସି କୌଣସି ବିଧର୍ମିଙ୍କ ପର ପିତାର ନାମ ପରିଚୟରେ ଲଜ୍ଜା ବା ଅପମାନର ଅସମ୍ଭବ ନୁହେଁ) ଇତ୍ୟାଦି ଇତ୍ୟାଦି । ଅତଃ କୌଣସି ବିଷୟ ସୁସାଧ୍ୟ ହୋଇ ନ ପାରି ସବୁ ପ୍ରକାର ବିଭ୍ରାଟ ଘଟୁଛି ।

ସେ ଯାହାହେଉ, ପୂର୍ବେ ଭାରତର ଶାସକ-ପାଳକମାନେ କେବଳ କେତେକ ଜମିର ଷଷ୍ଠାଂଶ ଭୂମିକର କେତେକ ପ୍ରଜାଙ୍କଠାରୁ ଅଦାୟ କରି ସାଧାରଣଙ୍କ ଉନ୍ନତି ସକାଶେ ଜଳାଶୟ, ପୋଲ୍, ବନ୍ଧ ପ୍ରଭୃତି ଚିରସ୍ଥାୟୀ ବା ବହୁକାଳସ୍ଥାୟୀ କୀର୍ତ୍ତିମାନ ସୁକୌଶଳ-ଜନକ-ଶକ୍ତିଦ୍ୱାରା କରୁଥିଲେ । ବର୍ତ୍ତମାନ ତନ୍ମଧ୍ୟରୁ କେତେକ ବିଦ୍ୟମାନ ଓ କେତେକର ସଞ୍ଜ୍ଞାମାତ୍ର ଦେଖାଯାଏ । ଏବେ ଢେର ଭୂମିକର ଓ ଅନ୍ୟାନ୍ୟ ଅସଂଖ୍ୟ କର ଏବଂ ଟିକସାଦି ବହୁ ପରିମାଣରେ ଅଦାୟ ହୋଇ ଉପରୋକ୍ତ କାର୍ଯ୍ୟ ପରିବର୍ତ୍ତରେ ମୋଟା ମୋଟା ବେତନ ସୃଷ୍ଟିଦ୍ୱାରା ଅଧିକାଂଶ ବା ପ୍ରାୟ ସମସ୍ତ ବିଦେଶକୁ ଗୁଲୁଛି । କେବଳ ଲଭ ସକାଶେ କେତେକ ରେଲ୍ ଓ କେନାଲ୍ ପ୍ରଭୃତିରେ ଲାଗିଥାଏ । ବିଶେଷତଃ ଭାରତ-ବାହାରର ଶ୍ରେୟ ସକାଶେ ସୈନ୍ୟ-ବିଭାଗ ପ୍ରଭୃତିରେ ଅଧିକାଂଶ ବ୍ୟୟ ହୋଇଥାଏ । ତେଣୁ ଭାରତ ଖାଙ୍କା ଓ ଭାରତୀୟମାନେ କଳବଲ ଏବଂ ଅସ୍ଥିକଙ୍କାଳମାଳା । ଅତଃ ଆଇନ ସଂଶୋଧନ ଗୃହ । ରାଜସର୍କାର ହେଉ ବା ଯେ କୌଣସି ବିଭାଗ ହେଉ ପ୍ରଥମରେ ଉପରଶ୍ରେଣୀ କାର୍ଯ୍ୟରେ ନିଯୁକ୍ତ ନୋହି ପ୍ରତ୍ୟେକ ବିଭାଗର ସର୍ବ ନିମ୍ନ କାର୍ଯ୍ୟରେ ଉପରୋକ୍ତ ନିର୍ଦ୍ଦିଷ୍ଟ ବେତନାନୁଯାୟୀ ନିଯୁକ୍ତ ହେଲେ କର୍ମଗୁଣ ଦକ୍ଷତା ଲଭି କ୍ରମଶଃ ଉପରକୁ ଉଠିଲେ "ଭବନ୍ତି ବିଜ୍ଞତମଃ କ୍ରମଶୋ ଜନଃ" ସବୁ ବିଷୟରେ ସୁଦକ୍ଷ ହେବେ । ଫଳରେ ସୁଶୃଙ୍ଖଳା ସହିତ

କାର୍ଯ୍ୟ ନିର୍ବାହ ହେବ; ଖର୍ଚ୍ଚ ମଧ୍ୟ କମ ହେବ । ଏହାର ବ୍ୟତିକ୍ରମ ସବୁ ବିଭ୍ରାଟର ମୂଳ-କାରଣ । ହିନ୍ଦୁ-ଶାସନ ସମୟରେ ଏହିପରି ଶୃଙ୍ଖଳା ଥିବାରୁ ରାଜା-ପ୍ରଜା ପିତା-ପୁତ୍ର ପରି ଓ ରାଜକାର୍ଯ୍ୟ ଭକ୍ତି-ବିଶ୍ୱାସ-ସ୍ନେହରେ ନିର୍ବାହ ହେଉଥିଲା । ତତଃ ଜଗତ ସୁଶୃଙ୍ଖଳା ଏବଂ ଆନନ୍ଦମୟ ଥିଲା । ସୈନ୍ୟ-ବିଭାଗରେ କୁଟୁମ୍ବାନୁଯାୟୀ ଅର୍ଥ ସାହାଯ୍ୟ ଶୁଣା ଅଛି ।

ଯେ କୌଣସି ଧର୍ମାବଲମ୍ବୀ ହେଲେହେଁ ନିଜ ନିଜ ଦେହର ଓ ଦେହାନ୍ତେ ଦେହୀର ଉନ୍ନତିପାଇଁ ସ୍ୱ ସ୍ୱ ଧର୍ମ-ଶାସ୍ତ୍ରୋକ୍ତ ଉପଦେଶରେ ଦୃଢ଼ବିଶ୍ୱାସ ରଖି ଏବଂ ତଦୁକ୍ତ ନିୟମାନୁଯାୟୀ ଧର୍ମାଚରଣ କଲେ ଆଉ ଯେ କୌଣସି ଲୋକପ୍ରତି ବ୍ୟର୍ଥ ବାକ୍‌ବିତଣ୍ଡା ଓ ଅନିଷ୍ଟ ନ କରି ରାଜନୈତିକ ଶୃଙ୍ଖଳା ଏବଂ ଭାରତର ସ୍ୱାଧୀନତା ସକାଶେ ସାମ୍ପ୍ରଦାୟିକ ଭାବ ଓ ଧର୍ମଗତ ଭାବ ଏବଂ ନିଜର ଦାମ୍ଭିକତା ଠେକକୁ ହୃଦୟରୁ ନିକାଳି କରି ପରସ୍ପର ଶ୍ରେୟ ପ୍ରତି ଲକ୍ଷ ରଖି, ଯାହାଦ୍ୱାରା ଯେଉଁ କାର୍ଯ୍ୟ ଉତ୍ତମରୂପେ ସାଧିତ ହୋଇପାରିବ ସାଧାରଣଙ୍କ ଚଳିବା ମୁତାବକ ସବିଶେଷ ସାମାନ୍ୟ ବେଶୀ ବେତନରେ ତାକୁ ସେ କାର୍ଯ୍ୟରେ ନିଯୁକ୍ତ ଓ ସମୁଚିତ ସାହାଯ୍ୟ କଲେ ଏବଂ ଏକ ମନ ପ୍ରାଣରେ ବିପକ୍ଷଙ୍କୁ ସମୁଚିତ ନ୍ୟାୟଦ୍ୱାରା ଜୟ ଓ ପରାଭୂତ କରାଯାଇପାରିବ । ଏ ସବୁ କାର୍ଯ୍ୟ ମଧ୍ୟରୁ ଗୋଟିଏ ମାତ୍ର ବ୍ୟତିକ୍ରମ ହେଲେ ସମୁଚିତ ଅଭିଳାଷ ସିଦ୍ଧ ହୋଇ ନ ପାରେ । ଏହାର ସିଦ୍ଧି ସକାଶେ ବିଭିନ୍ନ ସମ୍ପ୍ରଦା ମଧ୍ୟରେ ସ୍ୱ ସ୍ୱ ଧର୍ମ ଶିକ୍ଷା ଆଉ ରାଜନୀତି ପ୍ରଭୃତି ଏବଂ ଆଧୁନିକ ଯୁଦ୍ଧ-କୌଶଳପାଇଁ ସମସ୍ତଙ୍କର ଏକ ଶିକ୍ଷା ସମୁଚିତ ।

"ନାନ୍ୟପନ୍ଥା ବିଦ୍ୟତେ ଅୟନାୟ ।"

ଉକ୍ତ ପୁସ୍ତକଲିଖିତ ଭ୍ରମସବୁକୁ ମନୋଯୋଗସହ ବୁଝି ଓ ସାଧାରଣଙ୍କୁ ଉତ୍ତମରୂପେ ବୁଝାଇ ସତ୍କାର୍ଯ୍ୟକୁ

ସମୁଚିତ ନିୟମରେ ପ୍ରଚ୍ଚର କରାଇ ତଦନୁରୂପ ନିୟମ ବାନ୍ଧି ଦେଇ କଡ଼ାଶାସନ କଲେ ବର୍ତ୍ତମାନର ସମସ୍ତ ଅନିଷ୍ଟକର ବ୍ୟତିକ୍ରମ-ଗ୍ରସ୍ତ ଲୋକଙ୍କ ପିଣ୍ଡ ସତ୍ୟଯୁଗ ସ୍ରୁତ ହୋଇଯାନ୍ତା । ଉତ୍କଳ ତଥା ଭାରତରେ ପ୍ରଚ୍ଚର ହେଲେ କ୍ରମେ କ୍ରମେ ଅନ୍ୟାନ୍ୟ ବିପ୍ଳବ-ଦେଶରେ ପ୍ରଚ୍ଚର ହୋଇ ଜଗତ ଆନନ୍ଦମୟ ଓ ପ୍ରେମମୟ ହୁଅନ୍ତା, ଏହା ସୁସତ୍ୟ । କଂଗ୍ରେସ ଯେତିକି କ୍ଷମତା ପାଇଛି ତାହାର ବଳରେ ସ୍ୱଚ୍ଛନ୍ଦରେ ସାଧିତ ହୋଇପାରିବ । ଯଥା—ପ୍ରଥମତଃ ବାଳକ ବାଳିକାମାନଙ୍କର ବ୍ରହ୍ମଚର୍ଯ୍ୟାଶ୍ରମ, ଶକ୍ତ୍ୟନୁଯାୟୀ ଅଙ୍ଗାଚ୍ଛାଦନାଦି ଆଭରଣ, ଆହାର ବିହାର, ଆଦିରସଶୂନ୍ୟ ଦେହ-ଦେହୀ-ତତ୍ତ୍ୱାତ୍ମକ ପାଠ୍ୟ-ପୁସ୍ତକ, ବ୍ୟାୟାମ ସାଧନା, ଖାଦ୍ୟ-ଶସ୍ୟାଦିର ଉତ୍ପନ୍ନ ଓ ଉନ୍ନତିକର ପାଠ୍ୟ-ପୁସ୍ତକ, ଏତଦନୁକରଣରେ ବାଧ୍ୟତାମୂଳକ ଶିକ୍ଷା, ବାଳିକାଙ୍କ ପାଇଁ ଶିକ୍ଷୟିତ୍ରୀ, ବାଳକଙ୍କ ପାଇଁ ବୋଧା ଶିକ୍ଷକ ଓ ତଦନୁରୂପ ଶିକ୍ଷା । ଶୃଙ୍ଗାରରସ ପରିହାର ପୂର୍ବକ ନିର୍ମଳ ଭଗବତ୍ତତ୍ତ୍ୱାତ୍ମକ କାବ୍ୟ ପୁରାଣାଦି ଶାସ୍ତ୍ର ପାଠ, ଶ୍ରବଣ, ଚର୍ଚ୍ଚା, ସ୍ୱ ସ୍ୱ ଧର୍ମାନୁଯାୟୀ ପାଠ୍ୟ-ପୁସ୍ତକ, ସନାତନୀ ପବିତ୍ରତା ବିଶେଷତଃ ସମୁଚିତ କାଳାନୁଯାୟୀ ଗର୍ଭାଧାନ ବ୍ୟତୀତ ବୃଥା ସହବାସଦ୍ୱାରା ଓଜହାନି, ବିପୁର୍ଣ୍ଣାଦି ଅନିଷ୍ଟକର-ତତ୍ତ୍ୱ ପ୍ରଚ୍ଚର, ସାଧାରଣୀ ପ୍ରଥା ଦୂରୀଭୂତ ବା ଦେଶରୁ ନିକାଳି, ବ୍ୟତିକ୍ରମରେ ଶାସ୍ତ୍ରାନୁଯାୟୀ କଡ଼ାଦଣ୍ଡ । କାମତରୁ ବା ପ୍ରବୃତ୍ତି ଯଦିଓ ମନୋଜ ହେଲେହେଁ ଦର୍ଶନ, ଶ୍ରବଣ, ସଂସର୍ଗଦ୍ୱାରା ବିଷମୟ ମାରାତ୍ମକ ବୃଦ୍ଧି ହୋଇ ମାନବ-ଜାତିର ପତନ ଘଟାଇଥାଏ । "ଇନ୍ଦ୍ରିୟାଣି ମନୋ ବୁଦ୍ଧିରସ୍ୟାଧିଷ୍ଠାନମୁଚ୍ୟତେ ।" ୪୦ । ଅଃ ୩ ଗୀତା । ପ୍ରକୃତି-ପ୍ରଦତ୍ତ ଲାବଣ୍ୟମୟ ସୁସମା-ବିଲେପିତ ପୌଗଣ୍ଡ ବା ଯୌବନୋନ୍ମୁଖାବସ୍ଥା ବା ଯୁବତୀ ଯୁବକାବସ୍ଥାପ୍ରାପ୍ତମାନେ ଚର୍ମାଭରଣାଦି ସଫାଦ୍ୱାରା ଛବି-ଛଟକ-ଚପଳ-ଚତୁରତା

ପ୍ରକାଶ କରି ବାହ୍ୟଭ୍ରମଣଦ୍ୱାରା ପରସ୍ପରକୁ କାମାକର୍ଷଣ ଓ ପ୍ରଲୋଭିତ କରି ମନୋବୃତ୍ତିଙ୍କୁ ସଚଞ୍ଚଳ ଓ ଉତ୍କ୍ରୋତ୍ତେଜିତ ଏବଂ ଶିଥିଳ କରୁଥିବା ଢ଼ଙ୍ଗ ଉଲ୍ଲତକର ବୋଲି ସଙ୍ଗତ ବୋଧ ହେଉ ନାହିଁ। ସେ ଅବସ୍ଥା ହେଉଛି କଠିନ-କଷ୍ଟ-ସହନ ସାଧନାବସ୍ଥା ବା ବ୍ରହ୍ମଚର୍ଯ୍ୟାଶ୍ରମ। ପଣ୍ଡିତଙ୍କ ପୁତ୍ରବଧୂ ପ୍ରବାଦ ଓ ଋଷ୍ୟଶୃଙ୍ଗାଦିଙ୍କ ଚରିତ ସ୍ମରଣୀୟ। ଗୋ-ଗଣାଦିଙ୍କି ଲଗୁଡ଼ାଦି, ଉଦ୍ଧତ-ଯୁବକକୁ ବେତାଘାତ ପରି ଅସଚ୍ଚରିତ୍ର ଓ ଜଗତର ଅନିଷ୍ଟକାରୀ ଏବଂ ଚୌରାଦିଙ୍କି ଯଥୋପଯୁକ୍ତ ସମୁଚିତ କଡ଼ା ରାଜଦଣ୍ଡଦ୍ୱାରା ସବୁ ଶୃଙ୍ଖଳା ଓ ସୁସାଧ୍ୟ ହୋଇଥାଏ। ଆଉ ସୃଷ୍ଟିକର୍ତ୍ତା ଅବତାର ହୋଇ ଶୃଙ୍ଖଳା କରିଥାନ୍ତି। (ଦଣ୍ଡର ଉତ୍ପତ୍ତି ଓ ମାହାତ୍ମ୍ୟ (ମନ୍ୱାଦି ସ୍ମୃତି ଓ ମହାଭାରତରେ ଦ୍ରଷ୍ଟବ୍ୟ) ବର୍ତ୍ତମାନ ଅନିଷ୍ଟକାରଙ୍କି ଯଥୋପଯୁକ୍ତ କଡ଼ା ରାଜଦଣ୍ଡ ପରିବର୍ତ୍ତେ ଯେ ସୁବିଧାଜନକ ସୁଖ ଦିଆ ଯାଉଛି, ତାହା ଜଗତର ଶାନ୍ତିପକ୍ଷରେ ଅତି ଅନିଷ୍ଟକର। ଅତଃ ଜଗତରେ ବିପ୍ଳବ ବଢ଼ୁଛି। ଯାହା ହେଉ ଏହା ସବୁ କାର୍ଯ୍ୟରେ ଶୀଘ୍ର ପରିଣତ ହୋଇ ନ ପାରିଲେହେଁ କ୍ରମେ କ୍ରମେ ୫୦ ବର୍ଷରେ ସମ୍ପୂର୍ଣ୍ଣ ସାଧିତ ହୋଇପାରିବ। "ଈଶ୍ୱରେଚ୍ଛା ବଳୀୟସୀ।"

ଲକ୍ଷ୍ମୀ ଓ ସରସ୍ୱତୀଙ୍କ ଆରାଧନା ଓ ନିୟନ୍ତ୍ରଣଦ୍ୱାରା ଆର୍ଯ୍ୟାବର୍ତ୍ତ ପୁଣ୍ୟଭୂମି ଭାରତମାତା ମା-ଟି ବା ଭୂ-ମାତା ଏବଂ ଗୋ-ମାତା ଲୋକଙ୍କ ଶରୀର ରକ୍ଷା ଓ ପୁଷ୍ଟି ସକାଶେ ଅତି ଉପାଦେୟ ପବିତ୍ର ଆହାର ଦେବେଇ ଦେବେ। ତାହାର ସମୁଚିତ କାର୍ଯ୍ୟ ନ କରି ଆଉ ସନାତନ ଧର୍ମ ସମ୍ବନ୍ଧୀୟ ତତ୍ତ୍ୱ-ଶାସ୍ତ୍ର ଓ ପୁରାଣମାନଙ୍କରେ ଅମୃତମୟ ଅତି ଉତ୍କୃଷ୍ଟ ଉପାଦେୟ-ଭାବାମୃତ ପୂର୍ଣ୍ଣ ହୋଇଛି; ଅମ୍ଭାକୁ ସେ ପ୍ରେମାନନ୍ଦ-ମୟସଲିଳରେ ନ ମଜ୍ଜାଇ ଓ ପାନ ନ କରାଇ ବଣ-ବକୁଅତି, ମଇଳାମୟ-ଧୂଳୀ, ଶୁଖିଲି ଦୁର୍ଗନ୍ଧ ପୋପରା-କାଠକୁ ଆର୍ଯ୍ୟ-

ବଂଶଧରମାନେ ଉତ୍ତରାହରେ ରେକଠୁଥିବାକୁ ଅନୁମାନ କଲେ ଦୁଃଖ ଅସେ । ଅହରହ-ପ୍ରବାହିତା ଗଙ୍ଗାଦି ମହାନଦୀମାନଙ୍କର ପବିତ୍ର ଓ ସ୍ୱାସ୍ଥ୍ୟକର-ଜଳ ପରିବର୍ତ୍ତରେ ମଇଳା-ପଚ୍ଚ-ପୂତିପାଣି-ବ୍ୟବହାରମାନେ ଯେପରି ତଦୋପଯୁକ୍ତ ଶରୀର ଧାରଣ କରିବା ନିଷ୍ଟୟ ଏମାନେ ଜନ୍ମାନ୍ତରରେ ଅସଦ୍‌ଗତି ଲଭିବେଇ ଲଭିବେ । ଅମେରିକା ପ୍ରଭୃତି ଜଡ଼ବିଜ୍ଞାନ ଉନ୍ନତାତ୍ମକ-ଦେଶୀୟ ଦାର୍ଶନିକ ତତ୍ତ୍ୱଜ୍ଞମାନେ ଭାରତ ପ୍ରଚଳିତ ସନାତନ ଧର୍ମାତ୍ମକ ବିଧିବିଧାନ ଓ ସଂସ୍କୃତ-ଭାଷାକୁ ଜଗତରେ ସର୍ବୋତ୍କୃଷ୍ଟ ଶ୍ରେୟ ଓ ମହୋପକାରକ ବୋଲି ପ୍ରତ୍ୟକ୍ଷ ପ୍ରମାଣ କରିଛନ୍ତି । ବର୍ତ୍ତମାନ କୂଟଯୁଦ୍ଧବିଶାରଦ ହିଟଲର ଓ ମୁସୋଲିନୀ ତଦ୍ଦେଶୀୟ ସର୍ବୋତ୍କୃଷ୍ଟ ଦର୍ଶନଶାସ୍ତ୍ରାଦି ତତ୍ତ୍ୱବେତ୍ତା ନିତଶେଙ୍କୁ ଆଧ୍ୟାତ୍ମିକ ଗୁରୁ ବୋଲି ସ୍ୱୀକାର କରୁଥିଲେ । ସେ ନିତଶେ ଶାକ୍ତ ଥିଲେ ଓ ବାଲ୍ୟାବଧି ଶାସ୍ତ୍ରକୀଟ ବୋଲି ଉପାଧି ଲଭିଥିଲେ । ସେ ଅନ୍ୟାନ୍ୟ ଧର୍ମଗ୍ରନ୍ଥ ଓ ତଦୁପଦେଶ ଆଲୋଚନା ପର ଭାରତୀୟ ଧର୍ମବିଧି ଏବଂ ମନୁସଂହିତା ପ୍ରଭୃତି କେତେକ ଶାସ୍ତ୍ରାଲୋଚନା ପର ତାଙ୍କ ଲିଖିତ ପୁସ୍ତକମାନଙ୍କରେ ମତ ପ୍ରକାଶ କରିଛନ୍ତି, ଯଥା—ଅନ୍ୟାନ୍ୟ ସମସ୍ତ ଧର୍ମଶାସ୍ତ୍ର ଓ ତଦୁକ୍ତ ବିଧି ଏବଂ ଉପଦେଶ ଅବର୍ଜନାମୟ; କିନ୍ତୁ ଭାରତୀୟ ବା ହିନ୍ଦୁ ଧର୍ମଶାସ୍ତ୍ର ଓ ତଦୁକ୍ତ ବିଧି ଏବଂ ଉପଦେଶ ଅତି ରାଜନୀତି ପ୍ରଭୃତି ଓ ଗୃହସ୍ଥାଶ୍ରମାତ୍ମକ ଦମ୍ପତି-ବିଧି-ବ୍ୟବସ୍ଥା ମାନବ ପକ୍ଷରେ ଏକମାତ୍ର ଉପାଦେୟ ଓ ସର୍ବପ୍ରଧାନ ଶ୍ରେୟସ୍କର । ତାଙ୍କ ମତରେ ସ୍ତ୍ରୀ ଜାତି ଯଦି ପୁରୁଷକୁ ଭୟ ନ କରେ ତେବେ ଦାମ୍ପତ୍ୟ ସୁଖମୟ ହୋଇ ନ ପାରେ । ଅନ୍ୟାନ୍ୟ ଧର୍ମ-ଶାସ୍ତ୍ରୋକ୍ତ ବିଧି ଓ ଉପଦେଶ ଏବଂ ହିନ୍ଦୁ ଧର୍ମ ଶାସ୍ତ୍ରାନ୍ତର୍ଗତ ମନୁସଂହିତାଦି କେତେକ ଶାସ୍ତ୍ରୋକ୍ତ ପ୍ରତ୍ୟେକ ଉପଦେଶ ଓ ବିଧିବିଧାନକୁ ତୁଳନା କରି ମତ ପ୍ରକାଶ

କରିଛନ୍ତି,—ମନୁଷ୍ୟ ଯଦି ମନୁଷ୍ୟତ୍ୱ ଲଭିବାକୁ ଇଚ୍ଛା କରେ, ତେବେ ବାଇବେଲ୍ ପ୍ରଭୃତି ପରିବର୍ତ୍ତରେ ମନୁସ୍ମୃତି ପ୍ରଭୃତି ପଢ଼ିବା ଓ ତଦୁକ୍ତ ବିଧିରେ ଚଳିବା ସର୍ବତୋଭାବେ କର୍ତ୍ତବ୍ୟ । (ତାଙ୍କ ଲିଖିତ ଶାସ୍ତ୍ରାନ୍ତର୍ଗତ ଅଧିକାଂଶ ଉପଦେଶ ବା ପ୍ରାୟ ସମସ୍ତ ଉପାଦେୟ ମତ ଉକ୍ତ ପୁସ୍ତକରୁ ମିଳିପାରିବ ) ।

ଉତ୍କଳୀୟଙ୍କ ହିତାକାଂକ୍ଷୀ ସର୍ବସମ୍ପ୍ରଦାୟାନ୍ତର୍ଗତ ସମସ୍ତ ପ୍ରତିଭାଶାଳୀ ବିଶିଷ୍ଟ ବ୍ୟକ୍ତି ଓ ନେତାମାନଙ୍କୁ ବିନୀତ ନିବେଦନ କି, ମୋର କାହା ପ୍ରତି ଦ୍ୱେଷ ବା ମୁଖଲିପ୍ସା ନାହିଁ କିମ୍ବା କେହି ମୋର ଅନିଷ୍ଟକାରୀ ନୁହନ୍ତି । ମୁଁ ଅତି ବୃଦ୍ଧ । ସତ୍ୟାପ୍ରିୟ କହିବା ନିଷେଧ ଥିଲେ ହେଁ ମୁଁ ଅତି ବ୍ୟଥିତ ହୋଇ ବିବିଧ ପ୍ରମାଣଦ୍ୱାରା ଯାହା ଜାଣେ ବା ପ୍ରତ୍ୟକ୍ଷ ଦେଖିଛି ଓ ଦେଖୁଛି ତାହା ଏ ପୁସ୍ତକରେ ଲେଖିଛି । ଜଗତରେ କାହାଠାରେ ସବିଶେଷ ମାତ୍ରାମାତ୍ର ଦୋଷ-ଗୁଣ ନ ଥାଇ ନାହିଁ । ହିତୈଷୀ ଦୋଷ ଦେଖାଇଥାଏ । ଅତଃ ଉକ୍ତ ପୁସ୍ତକ ଲିଖିତ କୌଣସି ବିକୃତି ଯଦି କାହାରିଠାରେ ଥାଏ, ତେବେ ଦ୍ୱେଷ ନ ଭାବି ସଂଶୋଧନ କରିବା ଉଚିତ । ସଚ୍ଛଳାବସ୍ଥାପନ୍ନ କେହି କେହି ଚର୍ମାବରଣ ସଫା ରଖି ଠିକ୍ ଏ ହୃଷ୍ଟପୁଷ୍ଟ ଦେଖା ହେଉଥିଲେ ହେଁ କି ସଦର କି ମଫସଲ୍ ସାଧାରଣଙ୍କୁ ପ୍ରତ୍ୟକ୍ଷ ଦେଖାଯାଉ (କେବଳ ପିତା ଚିରରୋଗୀ ବା ବୁଭୁକ୍ଷିତ ବା କୁସ୍ଥାନସେବୀ କିମ୍ବା ବପୁଶାଳୀଦ୍ୱାରା ଜାରଜ ବ୍ୟତୀତ ) ଦେଶ-କାଳ-ପାତ୍ର ଓ ସମଖାଦ୍ୟାଭରଣାତ୍ମକ ସାଧାରଣମାନେ ପିତା ଅପେକ୍ଷା ପୁତ୍ର-ପୌତ୍ରାଦି ବରାବର କ୍ଷୀଣ ଓ କ୍ଷୀଣତର କି ନା ? ସ୍ୱଚ୍ଛ-ହୃଦୟରେ ବିଚାର କଲେ ମନ ନିଶ୍ଚୟ ବିକଳ ହେବାଇ ହେବ । ତତ୍‌ପ୍ରତ୍ୟକ୍ଷରୁ ଅନ୍ତଃକରଣ କ୍ଷୋଭିତ ହୁଅନ୍ତେ ଏଥିରେ ତହିଁର କେତେକ ଆଭାଷ ଦେଇଛି । ଖାଦ୍ୟାଭାବ ଗୌଣପକ୍ଷ । ସେ ଅଭାବ ନ ଥିବା ଓ ସମାନ-ଖାଦ୍ୟାଭରଣ ଥିବା ଲୋକଙ୍କର ପୁତ୍ର

ପୌରାଦିଙ୍କ ଶରୀର ସବିଶେଷ କ୍ଷୀଣତର। ତୁମ୍ଭେମାନେ ବା ଅଧିକାଂଶ ହୃଦୟବାନ୍ ବ୍ୟକ୍ତି ନାନାପ୍ରକାର ପୀଡ଼ା ସହି ମନ-ବଚନ-କର୍ତ୍ତବ୍ୟ ସହ ଲଗିଛ—'ଲୋକେ କପଟ ପେଟ ପୂରାଇ ଖାଇବେ'। ତେବେ ଅଧିକ କଣ ହେବ ? ଆର୍ଯ୍ୟଭୂମିରେ 'ବିଷ-କୀଟ ଓ ଜଳ-ମତ୍ସ୍ୟ ନ୍ୟାୟାନୁଯାୟୀ' ଅଯୋଚିତ କାର୍ଯ୍ୟ ଅର୍ଥାତ୍ ସନାତନ ଧର୍ମଶାସ୍ତ୍ର ସ୍ମୃତି-ପୁରାଣୋକ୍ତ ସମୁଚିତ କାର୍ଯ୍ୟ ନ ହେଲେ ସବୁ କଷ୍ଟ-ସହନ ଓ ପରିଶ୍ରମ ବ୍ୟର୍ଥ। ଅତି ତୁଚ୍ଛ ଦିଇକାଡ଼ା କୁତ୍ସିତ ଲୋକ ଗୃହ, ଗ୍ରାମ, ନଗର ମୂହୁର୍ତ୍ତକେ ପୋଡ଼ି ଦେଇପାରେ ଓ ଅତି ଉପାଦେୟ ବୃକ୍ଷ ହାଣି ଦେଇପାରେ; କିନ୍ତୁ ତାହା ପ୍ରସ୍ତୁତ କରିବାକୁ ବଡ଼ ବଡ଼ କ୍ଷମତାଶାଳୀ ଲୋକଙ୍କୁ ବହୁ ବ୍ୟୟ ଓ କ୍ଳେଶ ସହିବାକୁ ଘଟିଥାଏ। ବିଜାତୀୟ ପ୍ରାଣୀ ମଧ୍ୟରେ ସ୍ନେହ, ମମତା, ଶତ୍ରୁତା ସାମାନ୍ୟ ଦେଖାହେଉଥିଲେହେଁ ସ୍ୱଜାତୀୟ ମଧ୍ୟରେ ବିଶେଷତଃ ମାନବମାନଙ୍କ ମଧ୍ୟରେ ସାମାନ୍ୟ କପଟ-ସ୍ନେହ ଓ ଅତି ଉତ୍କଟ ଶତ୍ରୁତା ବର୍ତ୍ତମାନ ଦେଖାଯାଏ। ଯେଉଁ ପବିତ୍ରତା ହେତୁ ସୃଷ୍ଟିକର୍ତ୍ତାଙ୍କର କ୍ରୀଡ଼ା-ଭୂମି ଭାରତ ବିଶେଷତଃ ତନ୍ମଧ୍ୟରେ ଅତି ପବିତ୍ରତା ଉତ୍କଳରେ ଥିଲା ବର୍ତ୍ତମାନ ସେ ବିଧିର ବିପରୀତାଚରଣ ପତନର କାରଣ। ଅତଃ ସାବଧାନ !

ବିଶେଷତଃ ଖାଦ୍ୟପଦାର୍ଥାଦି ଯେତେ ବ୍ୟବହାରୀୟ ଜିନିସ, ସେ ସବୁରେ କୃତ୍ରିମ ଭେଳ ମିଶିବା, ସାମାନ୍ୟ ଖୁଚୁରା ବିକ୍ରି ବା କାରବାରଠାରୁ ବଡ଼ ବଡ଼ ଦୋକାନ ଗୋଦାମତକ ପ୍ରକୃତ ମୂଲ୍ୟ ଅପେକ୍ଷା ବହୁଗୁଣ ହାଙ୍କି ଲୋକ-ବିଶେଷଙ୍କୁ ଠକି ପ୍ରତିଯୋଗିତାରେ ବାହାଦୁରୀ ଦେଖାଇବା, ଆଉ ସବୁ ବିଭାଗରେ ଲୋକଙ୍କୁ ହଟହଟା ଓ ଫେଞ୍ଚକାମିରେ ପକାଇ ଘୁଷ୍ ନେବା ଇତ୍ୟାଦି ଇତ୍ୟାଦି ଏ ସବୁର ପ୍ରତିକାର ଗୃହୀ। ସନାତନୀ-ସୂଚକ-ଶାସ୍ତ୍ରରେ ଗ୍ରହ-ଚଳନ ଓ ପ୍ରତିବନ୍ଧକ, ଜଳ-

ନାଡ଼ୀ ଏବଂ ମାସ ତିଥି ନକ୍ଷତ୍ର ନେଇ ମେଘ-ପବନ-ନଦୀସ୍ରୋତ ପ୍ରଭୃତି ସୂଚକ-ସମ୍ବନ୍ଧୀୟ ଯେ ସବୁ ଉପଦେଶ ଅଛି, ତାକୁ ଅନୁସନ୍ଧାନ କରି ଗଣନା କଲେ ଭବିଷ୍ୟତ-ବର୍ଷା ବା ପାଳକ ପ୍ରଭୃତି ବରାବର ଆଗରୁ ଜଣା ପଡ଼ୁଥାନ୍ତା । ମାର୍ଗଶୀର-ମାସକୁ ତଦବଧି ବାରମାସର ବର୍ଷା-ସୂଚକ ଅର୍ଥାତ୍ ମାର୍ଗଶୀର କୃଷ୍ଣ ପ୍ରତିପଦା ଲଗାଏତ କ୍ରମଶଃ ପ୍ରତ୍ୟେକ ଅଢ଼େଇ ଅଢ଼େଇ ଦିନରେ ମେଘାଚ୍ଛନ୍ନ ବା ବର୍ଷା ହେଲେ କ୍ରମଶଃ ଯଥାକ୍ରମେ ତଦବଧି ଗୋଟିଏ ଗୋଟିଏ ମାସରେ ବର୍ଷା ହେବା ନିଶ୍ଚୟ । ତେଣୁ ଭଗବାନ୍ କହିଛନ୍ତି "ମାସାନାଂ ମାର୍ଗଶୀର୍ଷୋଽହଂ" । ସମ୍ପ୍ରତି ସମୟର କୁଜ୍‌ଝଟିକା ଷଷ୍ଠ ମାସରେ ବର୍ଷା-ସୂଚକ । ଏହିପରି ନାନା ସୂଚକ ଓ ସଙ୍କେତ ବିଧି ଅଛି । ତାହା ସବୁ ଅନୁସନ୍ଧାନ-ଦ୍ୱାରା ପ୍ରଚୁର ନ ହେବାରୁ କୃଷକମାନେ ବର୍ଷା-ବିଷୟ ଜାଣି ନ ପାରି ବ୍ୟତିକ୍ରମ କର୍ଷଣ ହେତୁ ସବୁ ଅଭାବ ଘଟୁଛି । ଅତଃ ସାବଧାନ !

ଉତ୍କଳ ଜନନୀର ଅଭାଗ୍ୟ ଏପରି ଯେ, ତାର ସନ୍ତାନ-ମାନଙ୍କ ମଧ୍ୟରେ ପ୍ରଧାନତଃ କେତେକ ଦାମ୍ଭିକ-ପ୍ରକୃତିକ ବ୍ରାହ୍ମଣ-କରଣ-ବର୍ଗୀୟ ପ୍ରଭୃତି ସଙ୍କୁଚିତମନା ସାମ୍ପ୍ରଦାୟିକ-ଭାବ ହେତୁ ମେଳ ନ ଥାଇ ବା ଭିତରେ ଭିତରେ ମନାନ୍ତର ହେତୁ ଯାହା କିଛି ଶ୍ରେୟ ସାଧନ ହୋଇପାରନ୍ତା ତାହା ମଧ୍ୟ ହୋଇପାରୁ ନାହିଁ । ମୁସଲମାନଙ୍କ ମଧ୍ୟରେ ଅଧିକାଂଶ ତ ହିନ୍ଦୁଙ୍କର ପରଂପରା ବିରୋଧୀ ଓ ବିପରୀତାଗ୍ରହୀ । ବିଶେଷତଃ ଧର୍ମନେତା ବ୍ରାହ୍ମଣ ବଂଶୀୟଙ୍କ ମଧ୍ୟରେ କେତେକ ଯଥେଚ୍ଛା-ଚାରରତ ଓ ଆପଣା ମଧ୍ୟରେ ସହାନୁଭୂତି ଏବଂ ଏକତା ନ ଥିବାରୁ ଯାହା କି ହେବା ଦୁଃସାଧ୍ୟ ମଧ୍ୟ ହୋଇ ନ ପାରେ ଏବଂ କେତେକ ଅତି ଲୋଲୁପ ହେତୁ ସବୁ ବ୍ୟତିକ୍ରମ ଘଟୁଛି । ଯତଃ

"ଗଜାନାଂ ସ୍ୱଳ୍ପବୁଦ୍ଧିଃ ସ୍ୟାତ୍ ସର୍ପାଣାଂ ବହୁନିଦ୍ରିତା ।
ବ୍ରାହ୍ମଣାନାମସାହିତ୍ୟାତ୍ତେନ ଜୀବନ୍ତି ଜନ୍ତବଃ ॥"

ସେ ଯାହା ହେଉ ସାଧାରଣ ଧର୍ମାଲୋକେ ନାମଖ୍ୟାତି, ମୋହମତ, ଭୟବଶତଃ ବହୁ ବ୍ୟୟ କରୁଥିଲେହେଁ ଅନ୍ୟାନ୍ୟ ସକ୍ତୁଲଜନମାନଙ୍କ ମଧ୍ୟରେ ବର୍ତ୍ତମାନ ମଧ୍ୟ ଧର୍ମନିରତ ଓ ଦାନଶୀଳ କେତେକାଂଶରେ ଥିଲେହେଁ ପରଂପରାଗତ ରକ୍ତସମ୍ବନ୍ଧ ବଶତଃ ଧର୍ମନେତା ବ୍ରାହ୍ମଣ ବଂଶୀୟଙ୍କ ମଧ୍ୟରେ ଦେଶ-କାଳ-ପାତ୍ର ନେଇ ସତ୍କର୍ମନିଷ୍ଠ ଓ ସଦ୍‌ବିଷୟେ ବ୍ୟୟଶୀଳ ଅପେକ୍ଷାକୃତ ସବିଶେଷ ଥିବା ନିଶ୍ଚୟ । ଅଧିକାଂଶ ବ୍ରାହ୍ମଣ-ବଂଶୀୟ ଅଜ୍ଞ ଓ ଭ୍ରଷ୍ଟାଗ୍ରସ୍ତ ହୋଇଥିଲେହେଁ କେତେକ ସମ୍ଭତ ନୈଷ୍ଠିକ ଓ ବିଜ୍ଞ ଥିବା ନିଶ୍ଚୟ । କିନ୍ତୁ ଅନ୍ୟାନ୍ୟ କେତେକ ଅବିବେକୀ ଓ ଅଜ୍ଞ; ମଧ୍ୟ କେତେକ ପ୍ରତାପଶାଳୀ ନାମଯାଦା ବ୍ୟକ୍ତିମାନେ ସମସ୍ତ ବ୍ରାହ୍ମଣବଂଶୀୟଙ୍କୁ ହେୟଜ୍ଞାନ ଓ ବିଦ୍ୱେଷ କରିବା ଯାହା ଅନୁମାନ ହୁଏ; ତତଃ ନିଜର ଅଧୋଗତି ଓ ସ୍ୱବଂଶର ପତନ ହେବା ସମ୍ଭାବନା । "ବ୍ରହ୍ମମନ୍ୟୁ କୁଳକ୍ଷୟଂ ।" ସୁତରାଂ ସଦ୍‌ବିବେକୀ ହିନ୍ଦୁମାନେହିଁ ବିପଥଗାମୀ ବ୍ରାହ୍ମଣ-ବଂଶୀୟଙ୍କୁ ଯଦ୍ୟପିରେଚନାସ୍ତି ଯତ୍ନଦ୍ୱାରା ସତ୍ପଥକୁ ଆକର୍ଷଣ କରିବା ନିଜର ଓ ସ୍ୱବଂଶ ପକ୍ଷରେ ଶ୍ରେୟ ନିଶ୍ଚୟ ।

କେତେକ ଦୁଇ-ନାବେ ଗୋଡ଼-ଦିଆ ଅର୍ଦ୍ଧ-ରକ୍ତଗତ-ସମ୍ଭୂତ ଆଧୁନିକ ସଭ୍ୟମାନେ ମତ ବ୍ୟକ୍ତ କରନ୍ତି, ଅବ୍ୟକ୍ତ-ଅଚିନ୍ତ୍ୟ-ଅରୂପ-ଅନିର୍ଦ୍ଦେଶ୍ୟ ସର୍ବବ୍ୟାପୀ ପରଂବ୍ରହ୍ମଙ୍କୁ ମର୍ତ୍ତି-ବିଶେଷରେ ଆବଦ୍ଧ ମନେ କରି ଉପରୋକ୍ତ ଙ୍କଙ୍କରେ ସ୍ତବ ସତ୍ତ୍ୱେଓ ଆହାର-ନିଦ୍ରା ପ୍ରଭୃତି ମାନବିକ କ୍ରିୟା କରାଇବା ମନର ଦୁର୍ବଳତା ନୁହେ କି ? ତାହାର ଉତ୍ତର, ଯଥା— ଉପରୋକ୍ତ ନିର୍ଗୁଣ ପରଂବ୍ରହ୍ମ ନାମ-ରୂପାତ୍ମକ ସୃଷ୍ଟି ସର୍ଜନା କରି ସାଂସାରିକ କ୍ରୀଡ଼ାର ବ୍ୟତିକ୍ରମ ନିବାରଣାର୍ଥେ ବା

ନିର୍ବାହ ସକାଶେ ମାନବାଦି ଯଥୋପଯୁକ୍ତ ଗୁଣାତ୍ମକ-ଶରୀର ଧାରଣ କରିଥାନ୍ତି । ଅତଃ ଭକ୍ତ ସେହି ନିର୍ଗୁଣ ବ୍ରହ୍ମତ୍ତ୍ୱ ଲଭିବାପାଇଁ ନିର୍ଗୁଣ ନାମୋଚ୍ଚାରଣ ପୂର୍ବକ ତାଙ୍କର ଗୁଣାତ୍ମକ ପ୍ରତିଷ୍ଠିତ ମୂର୍ତ୍ତିରେ ଭକ୍ତିର ପ୍ରଥମାଙ୍କୁର 'ଶ୍ରଦ୍ଧା' ଅର୍ଥାତ୍ ମାତା-ପିତା-ପତି-ପ୍ରଭୃ ପ୍ରଭୃତି ମାନବିକ ସ୍ୱକୀୟ ସମ୍ବନ୍ଧ କରିଥାଏ । ଅତଃ ସ୍ୱକୀୟ-କ୍ରିୟା ତାଙ୍କଠାରେ ଆରୋପଣ କରି ତଦ୍‌ଗତାନ୍ତଃକରଣ ଓ ତନ୍ମୋହମୟ-ପ୍ରେମରେ ମଜ୍ଜିଥାଏ । ଯେପରି ଅତି ଆତ୍ମୀୟ-ସ୍ୱଜନର ସୁଖ-ଦୁଃଖାଦିରେ ସ୍ୱଭାବସିଦ୍ଧ-ମୋହମୟ ଆନନ୍ଦାଦି ଓ ବିଷଣ୍ଣତା ଅନୁଭବ ହୋଇଥାଏ, ମଧ୍ୟ ଯଥୋର୍ଦ୍ଧୋନାସ୍ତି ପ୍ରତିକାରଓ କରାଯାଇଥାଏ । କିନ୍ତୁ ବର୍ତ୍ତମାନ ଯେ ବ୍ୟତିକ୍ରମ କ୍ରିୟା ଦେଖାଯାଏ, ତାହା ନିଜର ଦୋଷ; ବିଧିର ଦୋଷ ନୁହେ । ( ସବିଶେଷ ବିଧି 'ପୁରୁଷୋତ୍ତମ ତତ୍ତ୍ୱରେ' ଦ୍ରଷ୍ଟବ୍ୟ )।

ସେ ଯାହାହେଉ ବର୍ତ୍ତମାନସ୍ଥ ଉଦାର-ଚରିତ ପ୍ରଶାନ୍ତ-ଚେତା ନେତାମାନେ ଯଥୋପଯୁକ୍ତ ଯତ୍ନ ଏବଂ ପରଂପରାଗତ ସନାତନ ଧର୍ମଶାସ୍ତ୍ରୋକ୍ତ କ୍ରିୟାକଳାପ ସାଧନଦ୍ୱାରା ନିଜେ ନିଜେ ଉଦାହରଣ-ସ୍ଥଳସ୍ୱରୂପ ହୋଇ ସାଧାରଣଙ୍କୁ ଯଥୋପ-ଯୁକ୍ତ ସତ୍ପଥକୁ ଆକର୍ଷଣଦ୍ୱାରା ସମୁନ୍ନତ କରାଇ ସ୍ୱ ସ୍ୱ ସୁନାମ କାଳକାଳକୁ ପ୍ରସ୍ତରାଙ୍କିତ କରିବା ବିଧେୟ । "ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ" । ଯେପରି ବଙ୍ଗୀୟ ଈଶ୍ୱରଚନ୍ଦ୍ର ବିଦ୍ୟା-ସାଗର, ଭୂଦେବ, ବ୍ରହ୍ମମୋହନ ପ୍ରଭୃତିଙ୍କ ଯତ୍ନରେ ବଙ୍ଗୀୟମାନେ ଭାରତରେ ଦେହୋନ୍ନତି ସକାଶେ ରାଜନୈତିକ-ପ୍ରଧାନ ସ୍ଥାନ ଅଧିକାର କରିଛନ୍ତି । ତୁମ୍ଭେମାନେ ଦେହ-ଦେହୀ-ଉନ୍ନତାତ୍ମକ କାର୍ଯ୍ୟ କଲେ ଜଗତରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିପାରିବ । ବ୍ରିଟିଶରାଜଙ୍କ ହେୟଜ୍ଞାନାଦି ଏବଂ ପୂର୍ବଉତ୍କଳୀୟ ନେତାଙ୍କ ଉଦାରତା ହେତୁ ଉତ୍କଳ ଖଣ୍ଡ ଖଣ୍ଡ ଓ ଭୂମ୍ୟଧିକାର

ବିଦେଶୀୟଙ୍କ କରଗତ ହୋଇଛି । ବର୍ତ୍ତମାନ ନେତାଙ୍କ ଅସାବଧାନତା, ଅଜ୍ଞାନତା ଓ ଅନ୍ୟ ପ୍ରଦେଶୀୟଙ୍କ କୂଟନୀତି ପ୍ରୟୋଗଦ୍ୱାରା ବର୍ତ୍ତମାନ ମଧ୍ୟ ବାଧା ବା ବ୍ୟତିକ୍ରମ ଘଟୁଛି ଓ ଘଟିପାରେ; ( କେତେକ ଦିନ ତଳେ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ବିଭିନ୍ନ ପ୍ରଦେଶର ସଭ୍ୟମାନେ ନିଜ ନିଜ ପ୍ରଦେଶର ଉନ୍ନତି କାମନା କରି ଭାଷାଗତ ପ୍ରଦେଶ ଗଠନ ସମ୍ପର୍କରେ ପ୍ରସ୍ତାବ କଲାବେଳେ ଉତ୍କଳର ସଭ୍ୟ କିପରି ମୁକାଭିନୟ କରିଥିଲେ ତା ଅନୁସନ୍ଧେୟ ) କିନ୍ତୁ କଂଗ୍ରେସଦ୍ୱାରା କେତେକ ଶ୍ରେୟ ହୋଇ ପାରେ । ସେ ଯାହା ହେଉ ଜଗତରେ ବିଖ୍ୟାତନାମା, ଭାରତୀୟଙ୍କ ହିତାକାଂକ୍ଷୀ, କଂଗ୍ରେସର ପ୍ରଧାନ ନେତା ଓ ପରିଚାଳକ ମହାତ୍ମା ଗାନ୍ଧୀ ବିନ୍ୟାଦି ବାଧା ବଶତଃ ଅନୁର୍ବର ଓଡ଼ିଶା ପ୍ରଦେଶସ୍ଥ ଗରିବ ଓଡ଼ିଆଙ୍କପାଇଁ ସବିଶେଷ ମନ୍ତବ୍ୟ ପ୍ରକାଶ କରିଥିଲେ କି, ଗରିବ ଓଡ଼ିଆମାନେ ଖାଇବାକୁ ଠିକ୍‌ଏ ଘିଅ ପାନ୍ତି ନାହିଁ । କିନ୍ତୁ ମାଣ୍ଡିଆ-ଚିନା-ଘୁଅଁ-ଯାଉରେ ବା 'ଲଟାହରଡ଼' ଅଟକାଳରେ କିମ୍ବା ମଦରଙ୍ଗା-ମୃଠିଶାଗସହ ଘିଅ କିପରି ଖାଇବେ ଏହା ବ୍ୟାଖ୍ୟା କରିପାରି ନାହାନ୍ତି । ନୂଆ ଅଇନରେ ଲୋକେ ଯେ କାଙ୍ଗାଳ ହେଉଛନ୍ତି ତାହା ଅବା ଦେଖୁଛି କିଏ ? ନିଃସ୍ୱ, ନିର୍ବୋଧ ଓଡ଼ିଆଙ୍କୁ ଠକାଠକି କରି ଅନ୍ୟାନ୍ୟମାନେ ସାରି ଶୋଷଣଦ୍ୱାରା ଅନାହାରେ କୁରୁଡ଼ୁଛନ୍ତି; ଓଡ଼ିଆମାନେ ଆପଣା ଆପଣା ଭିତରେ କାମୁଡ଼ା କାମୁଡ଼ି ହୋଇ ବାହାଦୁରୀ ଦେଖାଉଛନ୍ତି ଓ କେତେକଙ୍କୁ ତଳାତଳାନ୍ତି କରୁଛନ୍ତି । ପ୍ରଜା, ଖାତକ ଓ ସାଧାରଣଙ୍କଠାରୁ କର, ସୁଧ, ଲାଭ, ଫିସ, ଘୁଷ ପ୍ରଭୃତି ଅନ୍ୟାୟରେ ଚିପୁଡ଼ି ନେଇ ବିଦେଶକୁ ନିକାଲି କରୁଛନ୍ତି । ସେ ଯାହାହେଉ ଜଗତରେ ବିଶେଷତଃ ଭାରତରେ ସର୍ବଶ୍ରେଷ୍ଠ ଚେକ ଓଡ଼ିଶା ଜଗନ୍ନାଥଙ୍କ ମନ୍ଦିରରେ ଅନ୍ତ୍ୟଜାଦିଙ୍କି ପୂରାଇ ପାରି ନାହାନ୍ତି; ଅତଃ ଗାନ୍ଧିଙ୍କି ଧନ୍ୟବାଦ !

ସେ ଯାହାହେଉ ଅମ୍ଭର ଏହି ଦରିଦ୍ର ଅବନତ-ପ୍ରଦେଶସ୍ଥ ବଣିଶାଳୀଙ୍କ ପାଖରେ ଯେତେ ବିତ୍ତ ଅଛି ଏବଂ ଯେଉଁମାନେ ସବିଶେଷ ଆୟ କରୁଛନ୍ତି, ସେମାନେ ଯଦି ସାଧାରଣ ଭାବରେ ଚଳନ୍ତେ ଏବଂ ଉଦ୍‌ବୃତ୍ତ-ବିତ୍ତ ସମ୍ପ୍ରଯୁକ୍ତ ଲୋକୋପକାରରେ ଅର୍ଥାତ୍ ଉପଯୁକ୍ତ ଲୋକଙ୍କଦ୍ୱାରା ସମ୍ପ୍ରଯୁକ୍ତ କାରଖାନା ପ୍ରଭୃତି ଖୋଲିବାରେ ଲଗାନ୍ତି, ତେବେ ଉତ୍କଳୀୟଙ୍କର ଅଭାବ ଘଟନ୍ତା କି ? ଉତ୍କଳୀୟମାନେ ବିଦେଶରେ କୁଲି ବୋଲି ଅତି ଘୃଣ୍ୟ ଓ ହେୟ ହୁଅନ୍ତେ କି ? ଏତଦ୍ଦ୍ୱାରା ଉଭୟପକ୍ଷର ଶ୍ରେୟ ହୁଅନ୍ତା ନାହିଁ କି ? କିନ୍ତୁ ମନ୍ଦଭାଗ୍ୟ ରାକ୍ଷସୀମାୟାରେ ମୋହିତ ହୋଇ ଯାହାର ଯେତେ ଅଛି ବା ଯେ ଯେତେ ବହୁ ପରିମାଣରେ ପାଉଛନ୍ତି, ସେମାନେ ତଳସ୍ତରକୁ ନ ଗୁହି ତଦଧିକସ୍ଥିତ ଏବଂ ତଦଧିକ ପ୍ରାପ୍ତ ଲୋକକୁ ଠାକ ଗୁହୁଁଥିବାରୁ ନିଜ ବିତ୍ତକୁ ସାମାନ୍ୟ ମଣି ସର୍ବଦା ସନ୍ତପ୍ତ ହେଉଛନ୍ତି ।

"ଅଧୋଧଃ ପଶ୍ୟତଃ କସ୍ୟ ମହିମା ନୋପଚୀୟତେ ।
ଉପର୍ଯ୍ୟୁପରିପଶ୍ୟନ୍ତଃ ସର୍ବ ଏବ ଦରିଦ୍ରତି ॥"

"ସ୍ପୃହୟତି କମଳା ନିରଳସ ଚରିତାୟ ନୀତିବିଦିତାୟ ।
ସା କମଳା ତ୍ୟଜତି କା ? ଦ୍ୱିଜଗୁରୁ ହରିନିନ୍ଦକଂ ଚ ସାଳସ୍ୟଂ ।"

ଯେଉଁମାନେ ବା ଯେଉଁ ସାମ୍ପ୍ରଦାୟିକ କିମ୍ବା ଯେଉଁ ଦେଶୀୟମାନେ ଯେତେ ପରିମାଣରେ ଅଳସ୍ୟ, ଅଭ୍ୟାସ ଓ ଇନ୍ଦ୍ରିୟଲାଳସାତ୍ମକ-ସୁଖରେ ପ୍ରବୃତ୍ତ, ସେ ଇହକାଳ ଭୌତିକ-ଉନ୍ନତି ଏବଂ ପରକାଳ ସଦ୍‌ଗତି-ରହିତ ହୋଇ ଅଧୋଗତି ଲଭିବା ନିଶ୍ଚୟ ।

ଶେଷ-ବକ୍ତବ୍ୟ । କଂଗ୍ରେସୀୟ ହୁଅନ୍ତୁ ବା ବେକଂଗ୍ରେସୀୟ କିମ୍ବା ଯେ କୌଣସି ଧର୍ମାବଲମ୍ବୀ ବା ସମ୍ପ୍ରଦାୟର ହୁଅନ୍ତୁ, କେବଳ ଗୌଣପକ୍ଷ ନିଜର ବା ଆତ୍ମୀୟ ସ୍ୱଜନଙ୍କର ନଶ୍ୱର ସ୍ଥୂଳ-ଶରୀର-ଉନ୍ନତିରେ ଯାହା ମଜ୍ଜିଛନ୍ତି, ସେ ଦେହ ଓ ଅର୍ଥ-

ଦ୍ୱାରା ମହତ୍ କାର୍ଯ୍ୟ ସାଧନ ହୋଇପାରିଲେହେଁ ତାହା ନ କରି ପ୍ରବୃତ୍ତିମାର୍ଗାତ୍ମକ ବହୁ ବ୍ୟୟାଡ଼ମ୍ବର ଅପ୍ରୀତିଜନକ ମୋହମୟ ଇନ୍ଦ୍ରଯୁଲାଲସାରେ ଯାହା ଲଗିଛନ୍ତି ତାହା ବ୍ୟର୍ଥ । ସେ ଶରୀର ଯେତେବେଳେ ହେଲେ ପାଂଶ ବା କୀଟ ବା ବିଷ୍ଠାରେ ପରିଣତ ହେବଇ ହେବ ।

"ଦେବସଂଜ୍ଞିତମପ୍ୟନ୍ତେ କ୍ରିମିବିଡ୍‌ଭସ୍ମସଂଜ୍ଞିତଂ ।
ଭୂତଧ୍ରୁକ୍ ତତ୍‌କୃତେ ସ୍ୱାର୍ଥଂ କିଂ ବେଦ ନିରୟଂ ଯତଃ ॥"

ନଶ୍ୱର-ଦେହ ନରଦେବ, ଭୂଦେବାଦି ନାମରେ ଖ୍ୟାତ ହେଲେହେଁ ପରେ କ୍ରିମି ବା ବିଷ୍ଠା କିମ୍ବା ଭସ୍ମରେ ପରିଣତ ହେବଇ ହେବ । ଯେଉଁ ବ୍ୟକ୍ତି ସେହି ଦେହ ସକାଶେ ଅନ୍ୟକୁ ଧ୍ୱଂସ କରେ ବା ଅନ୍ୟର ଅନିଷ୍ଟ କରେ, ତାହାର ପରିଣାମ ଯେ ନର୍କଗତ ତାହା କଣ ସେ ବିଗ୍ନର କରୁଛି ? ୧୦ ଅଃ ୧୦ ଭା ୧୦ । ସୁତରାଂ ପୂର୍ବୋକ୍ତ ଦେହ-ଦେହୀ-ବିଭାଗାତ୍ମକ ସମସ୍ତ ଦୈବିକ-ବୈଦିକାଦି କର୍ମ ଓ ସନାତନଧର୍ମ-ଶାସ୍ତ୍ରୋକ୍ତ ବିଧିର ବିପରୀତ ସାଂସାରିକ ଅଧିକାଂଶ କାର୍ଯ୍ୟକୁ ମନୋଯୋଗସହି ଆଲୋଚନା କଲେ ତାହା ସବୁ ମହତ୍ ଭ୍ରମ ନୁହେ କି ? ଓଁ ସ୍ୱସ୍ତିଃ ।

ଶୁଭଂ ଭବତୁ, ଶୁଭଂ ଭବତୁ, ଶୁଭଂ ଭବତୁ, ଶୁଭାନି ଭବନ୍ତୁ ।
ଇତିଶ୍ଳୋକ୍ତ ସମର୍ପଣମିତି

---

## ସ୍ୱ-ପରିଚୟ

ମୋହର ପ୍ରବୃଦ୍ଧ ପ୍ରପିତାମହ ନାରାୟଣ ଶତପଥିଙ୍କ ବିଷୟ ତେତେ ଜଣା ନାହିଁ । ସେ ସତ୍ୟବାଦୀ ନିକଟ ଶ୍ରୀରାମଚନ୍ଦ୍ରପୁର ଶାସନ ୨ୟ ଖଣ୍ଡିରେ ବାସ କରୁଥିଲେ । ବୃଦ୍ଧ ପ୍ରପିତାମହ ଭଗବାନ୍ ଶତପଥି ଅଧିକାଂଶ ସମୟ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ରହୁଥିଲେ । ସେ ସମୟର ବଶିଷ୍ଟ ବ୍ୟକ୍ତିମାନେ ତାଙ୍କ

ବଶିଷ୍ଠୋପମ ଲକ୍ଷ କରୁଥିଲେ । ସେ ନିଜର ମାହାତ୍ମ୍ୟ ବଳରେ ଉତ୍କଳାଧୀଶଙ୍କ ରାଜସିଂହାସନରେ ପ୍ରହରେ ବସି ପ୍ରହରାଜୋପାଧି ପାଇଥିଲେ । ସବିଶେଷ କାରଣ ନେଇ ଶିବପୁରାଣୋକ୍ତ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗାନ୍ତର୍ଗତ 'ନାଗେଶଂ ଦାରୁକାବନେ' ନାଗେଶଙ୍କ ପବିତ୍ର ସ୍ଥାନ ଯାହା କି ବର୍ତ୍ତମାନ ବଳରାଶାସନ ନାମରେ ପରିଚିତ, ବୋଧ ହୁଏ ସବିଶେଷ ବିପ୍ଳବ ହେତୁ ଜନଶୂନ୍ୟ ମହାରଣ୍ୟରେ ପରିଣତ ହୋଇଥିଲା । ସେ ନାଗେଶଙ୍କ ନାମ ଝାଡ଼ବାସୀ 'ଝାଡ଼େଶ୍ୱର' ଶିବ, ଦାରୁକାବନ ବଳରୀ ବା ବଳରୀ-ଶାସନ ନାମକ ଗ୍ରାମ ବସାଇ ପବିତ୍ର ସ୍ଥାନ ହେତୁ ବସତି କଲେ । ପ୍ରପିତାମହ ଗୋବିନ୍ଦ ପ୍ରହରାଜଙ୍କୁ ସେ ସମୟର ବ୍ୟକ୍ତିମାନେ ଦୁର୍ବାସୋପମ ଜ୍ଞାନରେ ଭୟ ଓ ଭକ୍ତି କରୁଥିଲେ ଏବଂ ସେ ବାକ୍‌ସିଦ୍ଧ ଥିଲେ । ଯାହାକୁ ଯାହା କହୁଥିଲେ ତାହା ସଙ୍ଗେ ସଙ୍ଗେ ସଫଳ ହେଉଥିଲା । ଅନ୍ୟର ଛାୟା ଉପରେ ପଡ଼ିଗଲେ ସ୍ନାନାଦି କରୁଥିଲେ । ପିତାମହ ବାମଦେବ ପ୍ରହରାଜ ବୈଦିକ-ଦୈବାନୁଷ୍ଠାନ ବଳରେ ଅସଂଖ୍ୟ ଅସାଧ୍ୟ ଓ ଦୁଃସାଧ୍ୟ କାର୍ଯ୍ୟ ସିଦ୍ଧି କରି ସୁଖ୍ୟାତ ଲଭିଥିଲେ । ପିତା ଜଗଦ୍‌ବନ୍ଧୁ ପ୍ରହରାଜ ତଦ୍ରୂପ ଦୈବାନୁଷ୍ଠାନଦ୍ୱାରା ଅନେକ ଦୁଃସାଧ୍ୟ କାର୍ଯ୍ୟ ସିଦ୍ଧ କରୁଥିଲେହେଁ କାଳର ଗତିକି ଅନୁମାନ କରି ନିଜେ ତହିଁରୁ ବିରତ ହେଲେ ମଧ୍ୟ ଅନ୍ୟ ପାଇଁ କର୍ମ କରିବାକୁ ମତେ ବାରଣ କରିଥିଲେ । ସେମାନେ ସତ୍‌କ୍ରିୟାନିଷ୍ଠ ଓ ନିଷିଦ୍ଧାଶନତ୍ୟାଗୀ ଥିଲେ । ଗୋପାଳଘର ଚଲିଦହି କୈବର୍ତ୍ତକୁଟା ଶପିଠକ ଖାଉ ନ ଥିଲେ; ଅପବିତ୍ର ସ୍ଥାନ ମନେ କରି କଟକରେ ଜଳ ସ୍ପର୍ଶ କରି ନ ଥିଲେ ।

ତଦ୍‌ବଂଶଜ ମୁଁ ଅନୁପଯୁକ୍ତ ହେତୁ ଉଦର ପୋଷଣ ସକାଶେ କଟକରେ ବହୁକାଳ କଟାଇଲେହେ ଏକ ପ୍ରକାର ଲୁଚିକରି ଚଳିଆସିଛି । ଇଷ୍ଟଦେବତା ଓ ପିତୃଗଣଙ୍କ କୃପାରୁ ବା

ଜନ୍ମାନ୍ତର ଭାଗ୍ୟରୁ କେତେକ ତୀର୍ଥ ଓ ପବିତ୍ର ସ୍ଥାନକୁ ଯାଇଥିଲି । ପରେ ବଶିଷ୍ଟ ବ୍ୟକ୍ତି ବର୍ଗୀୟ ଶ୍ରୀ ଶ୍ରୀପତି କୁଣ୍ଡୁଙ୍କ ଚୂଳାଇ ଖାସ ରେଲ୍‌ରେ ଭାରତବର୍ଷର ଅଧିକାଂଶ ପ୍ରସିଦ୍ଧ ପବିତ୍ର ସ୍ଥାନ, ଚାରି ଧାମ ଏବଂ ବହୁ ସଂଖ୍ୟକ ତୀର୍ଥରେ ଶରୀରକୁ ବୁଡ଼ାଇ ଓ ବୁଲାଇ ଅଣିଥିଲେହେଁ ସଙ୍କୁଚିତ କାଳ ବଶତଃ ସମୁଚିତ କର୍ମାନୁଷ୍ଠାନାଭାବରୁ ମନ ବୋଧ ହୋଇପାରିଲା ନାହିଁ । ଅଧୁନା ଜୀର୍ଣ୍ଣ-ଶୀର୍ଣ୍ଣ-ଶରୀର-ଇନ୍ଦ୍ରିୟ ଓ ଅର୍ଥବଳ ରହିତ ହେତୁ ହିମାଳୟପୃଷ୍ଠ ସତ୍ୟଯୁଗ ଧାମ ବଦ୍ରିକାଶ୍ରମସ୍ଥ ଶ୍ରୀ ବଦ୍ରିନାରାୟଣାଦିଙ୍କ ଦର୍ଶନାକାଂକ୍ଷା ପୋଷଣରୁ ନିବୃତ୍ତ ହେଲଣି । "ଈଶ୍ୱରେଚ୍ଛା ନିରଙ୍କୁଶା" । ପୁତ୍ରଦ୍ୱୟ ଶ୍ରୀ ରାମକୃଷ୍ଣ ଓ ବାସୁଦେବସହ ନପ୍ତାମାନେ ସନ୍ମାର୍ଗବର୍ତ୍ତୀ ହୁଅନ୍ତୁ—ଏତଦଭିଳାଷୀ ଶରୀର ଆଜି ଯେତେ ଦିନ ରହିବ ଜଗଦୀଶ୍ୱର କୁପଥଗାମୀ ନ କରନ୍ତୁ,—ଏତିକି ମାତ୍ର ପ୍ରାର୍ଥନା ।

"ଅକୃତ୍ୱା ପରସନ୍ତାପଂ ଅଗତ୍ୱା ଖଲମନ୍ଦିରଂ ।
ଅକ୍ଲେଶୟିତ୍ୱା ଚାତ୍ମାନଂ ଯଦଳ୍ପମପି ତଦ୍‌ବହୁଃ ॥"

ବହୁସଂଖ୍ୟକ ବିଶିଷ୍ଟ ବ୍ୟକ୍ତି, ସାଧୁ, ସନ୍ନ୍ୟାସୀ, ଯୋଗୀ, ଜ୍ଞାନୀ ଏବଂ ସଦ୍‌ଗୁରୁଙ୍କ ଉପଦେଶ ଓ କେତେକ ସଚ୍ଛାସ୍ତ୍ରା-ଲୋଚନାରୁ ନିଜ ଧାରଣାରେ ଯାହା ଯାହା ସମୁପଯୁକ୍ତ ବିବେଚନା କରିଥିଲି, ତହିଁରୁ କେତେକ 'ଗୁରୁଶିଷ୍ୟ-ତତ୍ତ୍ୱ ସଂହିତା' ଓ 'ନିବେଦନ' ପୁସ୍ତକରେ ଏବଂ ଉକ୍ତ 'ମହାଭ୍ରମ ଓ ଆତ୍ମୋନ୍ନତି' ପୁସ୍ତକରେ ସନ୍ନିବେଶିତ କରି ପ୍ରକାଶ କଲି । ବିଜ୍ଞବରେଷୁ ।

ଓଁ ଅସତୋ ମାଂ ସଦ୍‌ଗମୟ, ତମସୋ ମାଂ ଜ୍ୟୋତିର୍ଗମୟ, ମୃତ୍ୟୋର୍ମାମୃତଂ ଗମୟ । ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ । ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ଦୁଃଖଭାଗ୍‌ଭବେତ୍ । ଓଁ ଶଂ ନୋ ମିତ୍ରଃ ଶଂ ବରୁଣଃ ଶଂ ନୋ ଭବନ୍ତ୍ୱର୍ଯ୍ୟମା । ଶଂ ନୋ ଇନ୍ଦ୍ରୋ ବୃହସ୍ପତିଃ ଶଂ ନୋ ବିଷ୍ଣୁରୁରୁକ୍ରମଃ । ଓଁ ନମୋ

ବ୍ରହ୍ମଣେ ନମସ୍ତେ ବାୟୋ ! ତ୍ୱମେବ ପ୍ରତ୍ୟକ୍ଷଂ । ବ୍ରହ୍ମ ବଦିଷ୍ୟାମି, ଋତଂ ବଦିଷ୍ୟାମି, ସତ୍ୟଂ ବଦିଷ୍ୟାମି । ତନ୍ମାମବତୁ ତଦ୍‌ବକ୍ତାରମବତୁ ଅବତୁ ମାମବତୁ ବକ୍ତାରଂ । ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ, ତତ୍ସତ୍, ତତ୍ତ୍ୱମସି, ଅହଂ ବ୍ରହ୍ମାସ୍ମି, ସକଳମିଦମହଞ୍ଚ ବାସୁଦେବଃ ପରମପୁମାନ୍ ସ ଏକଃ । ନେତି ନେତି ନେତି ତତ୍ସଦୋଁ । ଓଁ ପୂର୍ଣ୍ଣମିଦଂ ପୂର୍ଣ୍ଣମଦଃ, ପୂର୍ଣ୍ଣାତ୍ ପୂର୍ଣ୍ଣମିହୋଚ୍ୟତେ । ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ । ଚିନ୍ମୟଃ ସଚ୍ଚିଦାନନ୍ଦୋ ନୈବ କିଞ୍ଚିତ୍କରୋମ୍ୟହଂ । ପଶ୍ୟନ୍ ଶୃଣ୍ୱନ୍ ସ୍ପୃଶନ୍ ଜିଘ୍ରନ୍ନଶ୍ନନ୍ ଗଚ୍ଛନ୍ ସ୍ୱପନ୍ ଶ୍ୱସନ୍ ପ୍ରଲପନ୍ ବିସୃଜନ୍ ଗୃହ୍ଣନ୍ନୁନ୍ମିଷନ୍ ନିମିଷନ୍ନପି । ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତେ ମମ ସନ୍ନିଧୌ ।

## ସ୍ୱଗ୍ରାମସ୍ଥ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗାନ୍ତର୍ଗତ ନାଗେଶ୍ୱର

ଏକଦା ମୁନୟଃ ସର୍ବେ ଋଷୟଃ ଶୌନକାଦୟଃ ।
ଗୋଷ୍ଠୀଂ କୃତ୍ୱା ପ୍ରବକ୍ତାରଂ ସୂତଂ ପପ୍ରଚ୍ଛୁରାଦରାତ୍ ॥

ମୁନୟ ଊଚୁଃ

ସୂତଦେବ ମହାପ୍ରାଜ୍ଞ ବ୍ୟାସଶିଷ୍ୟ ସନାତନ ।
ପ୍ରସିଦ୍ଧ ଶିବଲିଙ୍ଗାନି କୁତ୍ର ତିଷ୍ଠନ୍ତି ଭୂତଳେ ।
ତାନି ତତ୍ କଥୟାସ୍ମାକଂ ଶୃଣ୍ୱତାଂ ତ୍ୱଦନୁଗ୍ରହାତ୍ ।

ସୂତ ଉବାଚ

ଶୃଣୁଧ୍ୱଂ ମୁନୟଃ ସର୍ବେ ସର୍ବାଭୀଷ୍ଟଫଳପ୍ରଦଂ ।
ପ୍ରସିଦ୍ଧିଂ ଶିବଲିଙ୍ଗାନାଂ କଥୟାମି ଯଥା ଶ୍ରୁତଂ ।
ସୌରାଷ୍ଟ୍ରେ ସୋମନାଥଂ ଚ ଶ୍ରୀଶୈଳେ ମଲ୍ଲିକାର୍ଜୁନଂ ।
ଉଜ୍ଜୟିନ୍ୟାଂ ମହାକାଳଂ ଓଁକାରମମଲେଶ୍ୱରେ ।
ପରଲ୍ୟାଂ ବୈଦ୍ୟନାଥଂ ଚ ଡାକିନ୍ୟାଂ ଭୀମଶଙ୍କରଂ ।
ସେତୁବନ୍ଧେ ଚ ରାମେଶଂ ନାଗେଶଂ ଦାରୁକାବନେ ।
ବାରାଣସ୍ୟାଂ ତୁ ବିଶ୍ୱେଶଂ ତ୍ର୍ୟମ୍ବକଂ ଗୌତମୀତଟେ ।
ହିମାଳୟେ ତୁ କେଦାରଂ ଘୃଷ୍ଣେଶଂ ଶିବାଳୟେ ।
ଏତାନି ପ୍ରାଚ୍ୟାଂ ସରସ୍ୱତ୍ୟାସ୍ତଟେ ଗୋକର୍ଣ୍ଣକେ ଶ୍ରୁତିଭିଃ ।

ଏକକୋଶାନ୍ତରାଳେ ବୈ ଦାରୁକାବନ ନାମକଂ ॥
ଉତ୍ତରସ୍ୟାଂ ଦିଶି ମର୍ତ୍ତ୍ୟବୈକୁଣ୍ଠାତ୍ ପୁରୁଷୋତ୍ତମାତ୍ ।
ମାର୍ଗପ୍ରମାଣତୋ ଦୂରଂ ତଦ୍‌ଯୋଜନଚତୁଷ୍ଟୟଂ ॥
କୃଷ୍ଣାତ୍ମଜସ୍ୟ ଶାମ୍ବସ୍ୟ ସୂର୍ଯ୍ୟପୂଜନସ୍ଥାନତଃ ।
ଅର୍କକ୍ଷେତ୍ରାତ୍ କୋଣାର୍କାତ୍ ପ୍ରତୀଚ୍ୟାଂ ଯୋଜନତ୍ରୟଂ ।
ଗୟାସୁର-ନାଭିକୁଣ୍ଡାତ୍ ଯାଜପୁରାଖ୍ୟପୀଠତଃ ।
ଅବାଚ୍ୟାଂ ବିରଜାଦେବ୍ୟା ଦୂରଂ ଯୋଜନପଞ୍ଚକଂ ।
ଗଣେଶକ୍ଷେତ୍ରାଦାଗ୍ନେୟ୍ୟାଂ ନାମ୍ନା ମହାବିନାୟକାତ୍ ।
ପ୍ରସିଦ୍ଧଂ ଲୋକବିଖ୍ୟାତଂ ଦୂରଂ ଚ ପଞ୍ଚଯୋଜନଂ ।
ସ୍ୱର୍ଣ୍ଣାଦ୍ରୌ ଲିଙ୍ଗରାଜସ୍ୟ କ୍ଷେତ୍ରାତ୍ ଶ୍ରୀ ଭୁବନେଶ୍ୱରାତ୍ ।
ପୂର୍ବସ୍ୟାଂ ଦିଶି ଯଦ୍ଧାମ ଦୂରଂ ତଦ୍‌ଯୋଜନଦ୍ୱୟଂ ।
ସ୍ଥାନମାସ୍ତେ ମହାପୁଣ୍ୟଂ ସର୍ବତ୍ର ସୁଖଦଂ ନୃଣାଂ ।
କଦମ୍ବବକୁଳାଶୋକବିଲ୍ୱପୁନ୍ନାଗଚମ୍ପକୈଃ ।
ନାନାଜାତିବଲ୍ଲରୀଭିରାକୀର୍ଣ୍ଣମୁପଶୋଭିତଂ ।
ମୃଗାଦିଭିଶ୍ଚ ପଶୁଭିଃ ମୟୂରାଦିସମନ୍ୱିତଂ ।
ତତ୍ର ବିଶ୍ୱେଶ୍ୱରୋ ଦେବୋ ଭକ୍ତାନାମଭୟପ୍ରଦଃ ।
ଭବାନ୍ୟା ସହିତୋ ନିତ୍ୟଂ ନାଗେଶାଖ୍ୟଃ ପ୍ରକୀର୍ତ୍ତିତଃ ।
ଆଲୋଚନା ବିଶେଷେଣାନୁମାନେନ ଚ ନିଶ୍ଚିତଂ ।
ପରତଃ କେନଚିଦ୍ବିଦ୍ଧପୁରୁଷେଣ ମହାତ୍ମନା ।
ନିକାଳଙ୍କେନ ଯୋଗେନ ପ୍ରକାଶିତମିଦଂ ବଚଃ ।
ଗ୍ରାମୋଽୟଂ ଦାରୁକାରଣ୍ୟଂ ନାମ୍ନା ଖ୍ୟାତଃ ପୁରା କିଲ ।
ଅସୌ ଝାଡ଼େଶ୍ୱରୋ ଦେବୋ ନାଗେଶାହ୍ୱଃ ପ୍ରକୀର୍ତ୍ତିତଃ ।
ଅସନ୍ ପୁରା ସତ୍‌କୁଳଜା ବ୍ରାହ୍ମଣା ବେଦପାରଗାଃ ।
ନାଗେଶାରାଧନପରାଃ ଶ୍ରୋତ୍ରିୟା ଦ୍ୱିଜପୁଙ୍ଗବାଃ ।
କଦାଚିତ୍ କାରଣୈର୍ବୁଦ୍ଧ୍ୱା ନିହତାସ୍ତାନ ବିଶ୍ରୁତାଃ ।
ତେଷାମେକତମୋ ବିପ୍ରୋ ଧର୍ମାନ୍ତରବିଗର୍ହିତଃ ।

ଫଙ୍କାରଖ୍ୟାଞ୍ଚ ଧୃତବାନ୍ ଫଙ୍କାରଖାଡଚହ୍ନତଃ ।
ପ୍ରାଚ୍ୟାଂ ତତ୍ସମୀପେ ଧାମ୍ନି ଦେବାଖାତଂ ବିରାଜତଂ ।
ଜନଶୂନ୍ୟାରଣ୍ୟମୟଂ ସ୍ଥାନଂ ତତ୍କାରଣାଦଦଂ ।
ତଦା ପ୍ରଭୃତି ଦେବୋଽୟଂ ଭୂପ୍ରୋଥିତୋ ବଭୂବ ହ ।
ମର୍ତ୍ତ୍ୟସେବାବିରହିତୋ ବିବୁଧୈଃ ପରିସେବିତଃ ।
ବହୁକାଳେ ଗତେ କାଚତ୍ ଗୋପଧେନୁସ୍ତୁ ଗୋଯୂଥାତ୍ ।
ଦୁଗ୍ଧବତୀ ସମାଗତ୍ୟ ଦୁଦୁହେ ଭୂତଳେ ସ୍ୱୟଂ ।
ରର୍କ୍ଷୀ ରକ୍ତୋଧ-ଫଙ୍କାକ୍ଷ୍ୟ ପାଳକୋ ବ୍ୟାକୁଳୋଽଭବତ୍ ।
ପରେହ୍ନ ସ୍ତାମନୁସୃତ୍ୟ ଦଦର୍ଶ କ୍ଷୀରବିଚ୍ୟୁତଂ ।
ଦୁଗ୍ଧଶେଷାଂ ପରିବୃତ୍ୟ ଗୋଯୂଥେ ମିଳିତାଂ ଚ ତାଂ ।
ଏତଦ୍‌ବିଷୟମାକର୍ଣ୍ଣ୍ୟ ଗୋପାଳାନ୍ଗ୍ରାମବାସ୍ତଦା ।
ବିସ୍ମିତସ୍ଥାନ ମିଳିତାସ୍ତଖ୍ନ ସ୍ତତ୍ ସ୍ଥାନମଭ୍ୟୁତଂ ।
ବୃହଲ୍ଲାୟଂ ଦୃଶ୍ୟମାନଂ ଶିବଲିଙ୍ଗଂ ସଶଙ୍କିତଂ ।
ଦୃଷ୍ଟ୍ୱା ପ୍ରୋଫୁଲ୍ଲନୟନାଃ ଫହୃଷ୍ଟା ବଭୂବୁଃ କିଳ ।
ପ୍ରତ୍ୟହଂ ବାରମାନଂ ବୈ ବନ୍ୟଶ୍ୱାପଦଜାତ୍ ଭୟାତ୍ ।
କେନଚିତ୍ ଭକ୍ତିଭାବେନ ସେବାପୂଜାଂ କୃତା ପୁରା ।
ପରତଃ କତିଚିତ୍ ଶିଷ୍ଟା ବ୍ରାହ୍ମଣାଂ ବ୍ରହ୍ମବାଦିନଃ ।
ଆକର୍ଣ୍ଣ୍ୟ ସର୍ବବିଷୟଂ ଯଥାପୂର୍ବଂ ଚ ସେବକାତ୍ ।
ଶିବଲିଙ୍ଗସ୍ୟ ମାହାତ୍ମ୍ୟଂ ତତ୍ତ୍ୱଞ୍ଚ ହୃଦୟଙ୍ଗମଂ ।
ଦେବଦେବସ୍ୟ ପାର୍ଶ୍ୱସ୍ଥାଂ ସ୍ଥଳୀଂ ଦୃଷ୍ଟ୍ୱା ସୁଶୋଭନାଂ ।
ଗତ୍ୱା ବିଜ୍ଞାପୟାମାସୁସ୍ତଦା ଭୂପାଳସନ୍ନିଧୌ ।
ଅନୁଗ୍ରହାଦଧିପତେଗୃହିତ୍ୱା ଦାନମୁତ୍ତମଂ ।
ମୌଦ୍‌ଗଲ୍ୟଭରଦ୍ୱାଜାତ୍ରେୟୌ ତଥା କୌଣ୍ଡିନ୍ୟକାଶ୍ୟପୌ ।
ଚତ୍ୱରେ ବ୍ରାହ୍ମଣାସ୍ତେବୈ ମିଳିତାସ୍ତୁ ପରସ୍ପରଂ ।
ଲବ୍ଧାଂ ଭୂମିଂ ସମୁଦୟାଂ ସମାନାଂଶାଂ ବିଭାଗତଃ ।
କୃତ୍ୱା ତୁ ଚତୁରୋ ଭାଗାନ୍ ଜଗୃହୁସ୍ତେ ବିଚକ୍ଷଣାଃ ।

ଚତୁଃ ପାର୍ଶ୍ୱସ୍ଥିତାଂ ଭୂମିଂ ମହାଦେବସ୍ୟ ସର୍ବତଃ ।
ସନ୍ତ୍ୟନ୍ୟ ସେବକାଧୀନଂ ବିଧାୟ ବିନଯୁକ୍ତ୍ୟ ତାନ୍ ।
ଅନ୍ୟତଃ କସ୍ମତାଭୂମିର୍ଦାପୟିତ୍ୱା ଚ ଭୂପତଃ ।
ସପର୍ଯ୍ୟାଂ ତସ୍ୟ ଦେବସ୍ୟ କାରୟ୍ୟାମାସୁସ୍ତେ ଦ୍ୱିଜାଃ ।
ନିବାସମଗ୍ରତଶ୍ଚକ୍ରେ ଦେବଦେବସ୍ୟ ସନ୍ନିଧୌ ।
ନିତ୍ୟଂ ବ୍ୟାକ୍ଷ୍ୟାଭିଷିଚ୍ୟାଽଷ୍ଟ ପ୍ରାପୁଃ ପରମ ନିବୃତଂ ।
ମହାରଣ୍ୟସ୍ଥିତେଃ ଶମ୍ଭୁର୍ନାମ୍ନା ଝାଡ଼େଶ୍ୱରଃ କଲ ।
ବିଲ୍ଲଶ୍ରୀ ପୂର୍ଣ୍ଣସ୍ଥାନାଦ୍ବୈ ଗ୍ରାମସ୍ୟାସ୍ୟବଭୂବ ହ ।
ବଲ୍ଲଶାସନମିତ ନାମ୍ନା ଖ୍ୟାତ ଧରିତଲେ ।
ଶିବଲିଙ୍ଗସ୍ୟ ବଦନମାଗ୍ନେର୍ଯ୍ୟାଂ ଦିଶି ବନ୍ଧକଂ ।
ଅଗ୍ନେୟେଶ୍ୱର ନାମ୍ନାସୌ କଥ୍ୟତେ ଚେଷ୍ୟତେଽଧୁନା ।
ସାମ୍ପ୍ରତଂ ନିର୍ମଳଂ ସ୍ୱାଦୁଜଲମନ୍ନାନୁ ଭୂୟତେ ।
ବର୍ଷର୍ତ୍ତୌ ଶୀତକାଲେ ଚ ତଥା ଗ୍ରୀଷ୍ମେ ସଦୈବ ହି ।
ଦେବଦେବବିଗ୍ରହସ୍ୟ ଚତୁଃପାର୍ଶ୍ୱେଷୁ ସର୍ବତଃ ।
ଶକ୍ତିମଧ୍ୟଂ ଜଲୈଃ ପୂର୍ଣ୍ଣଂ ଦୃଶ୍ୟତେ ଚ ତତୋଽଧିକଂ ।
ଅଭିଷେକେ ପ୍ରଦତ୍ତଂ ଯଲ୍ଲୀନଂ ଭବତ ନିଶ୍ଚିତଂ ।
ବନ୍ୟାସ୍ୱାଂ ନିମ୍ନଗାବୃଦ୍ଧୌ ଲିଙ୍ଗତୋ ଦୃଶ୍ୟତେ ଝରଃ ।
ତେନୈବ ଗମ୍ଭୀରପୂର୍ଣ୍ଣା ଭବତ ପ୍ରାୟଶଃ ପୁନଃ ।
କଦାଚତ୍ ଶକ୍ତିମଧ୍ୟସ୍ଥ ଜଲଶୂନ୍ୟଂ ଭବେଦ୍ୟଦି ।
ତଦା ଦୃଷ୍ଟ୍ୱା ଭବେଲ୍ଲୋକୈଃ ପରତୋ ବୃଷ୍ଟିରଳ୍ପ ବୈ ।
ବୃଷ୍ଟେଶ୍ୱେଦନ୍ତରାୟୁଷ୍ଟ ଭବେଲ୍ଲୁକ୍ତିକାଥବା ।
ନାଗଃ ସମର୍ପିତଃ କେନ ଭକ୍ତିଭାବେନ ଚେତସା ।
ନିର୍ମିତୋ ହ୍ୟାରକୂଟେନ ସ୍ୱପ୍ନାଦେଶସ୍ତଦା ଭବତ୍ ।
ବିଦ୍ୟତେ ମଦ୍ଦେହେ ନାଗୋ ଦତ୍ତେନାନେନ କିଂ ଫଳଂ ।
ଦିନାତ୍କତପଯ୍ୟାପୃଷ୍ଟାତ୍ ଭଗ୍ନୋଽଭୂତ୍ ସ ତୁ ଖଣ୍ଡିତଃ ।
ବିଶେଷତଃ ସ୍ଥାନମିଦଂ ଗ୍ରୀଷ୍ମେକାଲେଽତଶୀତଳଂ ।

ଶୀତର୍ତ୍ତୌ ଚ ତଥା ଶୀତମିତଚନ୍ଦଂ ହ୍ର ବୋଧତେ ।
ତ୍ରିନେତ୍ରଂ ତ୍ରିଗୁଣାତୀତମୁମାଦେହାର୍ଦ୍ଧଧାରଣଂ ।
ଝାଡ଼େଶ୍ୱରମହଂ ବନ୍ଦେ ଶିବଲିଙ୍ଗଂ ସନାତନଂ ।
ନାଗେଶାଖ୍ୟଂ ବିଶ୍ୱରୂପଂ ଦାରୁକାବନବାସିନଂ ।

ଶିବପୁରାଣୋକ୍ତ ଦ୍ୱାଦଶ-ଜ୍ୟୋତିର୍ଲିଙ୍ଗ ଭାରତବର୍ଷର ସବିଶେଷ ବିଶିଷ୍ଟ ପ୍ରଦେଶ ପବିତ୍ର ସ୍ଥାନମାନଙ୍କରେ ବିରାଜମାନ୍ କରିଅଛନ୍ତି । ତନ୍ମଧ୍ୟରେ ଅତି ପବିତ୍ର ଉତ୍କଳ ପ୍ରଦେଶ ଏକମାତ୍ର ଜ୍ୟୋତିର୍ଲିଙ୍ଗ "ନାଗେଶଂ ଦାରୁକାବନେ" "ନାଗେଶ୍ୱର" ଉପରୋକ୍ତ ବଳରାଣାସନସ୍ଥ ଝାଡ଼େଶ୍ୱରାଖ୍ୟାରେ ବିଦ୍ୟମାନ ।



କଟକ ଦତ୍ତ ପ୍ରେସରେ ଶ୍ରୀ ହରମୋହନ ଦତ୍ତଙ୍କଦ୍ୱାରା
ମେସିନ୍ଯନ୍ତ୍ରେ ମୁଦ୍ରିତ । ୧୯୪୦